ଚତୁର୍ଦ୍ଦଶ ଧର୍ମଗୁରୁ

# ଦଲାଇ ଲାମା



ଡକ୍ଟର ବିମଲେନ୍ଦୁ ମହାନ୍ତି



**Stupa at Chandragiri**

**Inaugurated by His Holiness Dalai Lama on 10th January, 2010**

# ଚତୁର୍ଦ୍ଦଶ ଧର୍ମଗୁରୁ : ଦଲାଇ ଲାମା

ଡକ୍ଟର ବିମଳେନ୍ଦୁ ମହାନ୍ତି



ତଥାଗତ ପବ୍ଲିଶର୍ସ
୪୭, ମଧୁସୂଦନ ନଗର
ଭୁବନେଶ୍ୱର-୭୫୧୦୦୧

# ଚତୁର୍ଦ୍ଦଶ ଧର୍ମଗୁରୁ : ଦଲାଇ ଲାମା

ଲେଖକ :
**ଡକ୍ଟର ବିମଳେନ୍ଦୁ ମହାନ୍ତି**

ପ୍ରକାଶକ:
**ତଥାଗତ ପବ୍ଲିଶର୍ସ**
୪୭, ମଧୁସୂଦନ ନଗର
ଭୁବନେଶ୍ୱର-୭୫୧୦୦୧

ଅକ୍ଷରସଜ୍ଜା :
**ବି.ଏନ୍. ଗ୍ରାଫିକ୍ସ**
ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର-୭୫୧୦୧୫

ମୁଦ୍ରକ :
**ପ୍ରିଣ୍ଟେକ୍ ଅଫ୍‌ସେଟ୍ ପ୍ରା.ଲିଃ.**
ପ୍ଲଟ୍ ନଂ. ଏଫ୍/୬୬/୧ ଓ ଏଫ୍/୬୬/୨
ଚନ୍ଦକା ଶିଳ୍ପାଞ୍ଚଳ, ଭୁବନେଶ୍ୱର-୭୫୧୦୨୪
ଫୋନ୍ : ୦୬୭୪-୨୭୪୦୭୩୭

ପ୍ରକାଶ କାଳ : ନଭେମ୍ବର, ୨୦୧୭

ମୂଲ୍ୟ : ଟ୨୫୦/- ମାତ୍ର



# ଉତ୍ସର୍ଗ

କିଟ୍ ଓ କିସ୍ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତ ସେବା ଓ ତ୍ୟାଗର ଜଣେ ମୂର୍ତ୍ତିମନ୍ତ ପ୍ରତୀକ। ତାଙ୍କର ନିରଳସ, ନିରାଡ଼ମ୍ବର, ଉତ୍ସର୍ଗୀକୃତ ଜୀବନଚର୍ଯ୍ୟା ମୋତେ ବହୁଭାବରେ ଆକୃଷ୍ଟ କରିଛି। ମୋ ଦ୍ୱାରା ସଂପାଦିତ ଇଂରାଜୀ ପୁସ୍ତକ 'ପଦ୍ମସମ୍ଭବ ଅଫ୍ ଉଡ୍ଡୀୟାନ - ଓଡ଼ିଶା' ବହୁଳ ଭାବରେ ପାଠକୀୟ ଆଦୃତି ଲାଭ କରିବା ପରେ ସେ ମୋତେ ଦଲାଇ ଲାମାଙ୍କ ଉପରେ ଓଡ଼ିଆରେ ଏକ ପୁସ୍ତକ ରଚନା କରିବା ପାଇଁ ଉତ୍ସାହିତ କରିଥିଲେ। ମହାମହିମ ଦଲାଇ ଲାମା ଯେଭଳି ନିଜର ଦେଶବାସୀଙ୍କୁ ଭଲପାଇ ସେମାନଙ୍କ ଉନ୍ନତିକଳ୍ପେ କାର୍ଯ୍ୟରତ ଅଛନ୍ତି, ତାଙ୍କ ଜୀବନୀ ଲେଖିଲାବେଳେ ଓଡ଼ିଶାର ଜଣେ ବ୍ୟକ୍ତିଙ୍କ ଚେହେରା ଆଖି ଆଗରେ ନାଚି ଯାଉଛି, ଯେ କି ଦଲାଇ ଲାମାଙ୍କ ଭଳି ରାଜ୍ୟର ଉନ୍ନତି ପାଇଁ ବିଶେଷକରି ଜନଜାତି ଲୋକଙ୍କ ହିତ ପାଇଁ ଆପ୍ରାଣ ଉଦ୍ୟମ କରୁଛନ୍ତି। ଶିକ୍ଷା ଦ୍ୱାରା ବିକାଶ ସମ୍ଭବ ଏହି ମନ୍ତ୍ରକୁ ଜପାମାଳି କରି ଡକ୍ଟର ସାମନ୍ତ କିଟ୍ ଓ କିସ୍ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ବିଶ୍ୱରେ ଅଶେଷ ସମ୍ମାନ ପାଇବାରେ ସମର୍ଥ ହୋଇଛନ୍ତି। ଦୈନନ୍ଦିନ ଜୀବନରେ ବୌଦ୍ଧଧର୍ମର ଦର୍ଶନ ପ୍ରତି ଡକ୍ଟର ସାମନ୍ତଙ୍କର ବିଶେଷ ଶ୍ରଦ୍ଧା ରହିଛି। ଏହି ପୁସ୍ତକଟି ମୁଁ ତାଙ୍କୁ ଉତ୍ସର୍ଗ କରୁଛି।

– ବିମଳେନ୍ଦୁ ମହାନ୍ତି



**Guru Padmasambhava Mahavihar**
**Chandragiri, District-Gajapati, Odisha, India**



# ଲେଖକୀୟ

୧୯୫୯ ମସିହାରେ ମୁଁ ରେଭେନ୍‌ସା ମହାବିଦ୍ୟାଳୟରେ ଇତିହାସର ସ୍ନାତକୋତ୍ତର ଶ୍ରେଣୀରେ ପଢୁଥିଲାବେଳେ ମହାମହିମ ଚତୁର୍ଦ୍ଦଶ ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୋ ନିଜ ଜନ୍ମଭୂମି ତିବ୍‌ବତରୁ ଭାରତକୁ ପଳାଇ ଆସିବା କଥାଟି ପ୍ରାୟ ଅଧିକାଂଶ ସମୟରେ ଚର୍ଚ୍ଚା ହେଉଥିଲା। ୧୯୪୭ ମସିହାରେ ତିବ୍‌ବତୀୟ ପ୍ରତିନିଧିଦଳ ନୂଆଦିଲ୍ଲୀରେ ଅନୁଷ୍ଠିତ ଏସୀୟ ସମ୍ପର୍କ ସମ୍ମିଳନୀରେ ଅଂଶଗ୍ରହଣ କରିଥିଲେ। ଏଥିରେ ଅନ୍ୟାନ୍ୟ ଦେଶ ସହିତ ତିବ୍‌ବତର ଜାତୀୟ ପତାକା ଉତ୍ତୋଳିତ ହୋଇଥିଲା। ୧୯୪୮ ମସିହାରେ ଭାରତ ତିବ୍‌ବତକୁ ସ୍ୱାଧୀନ, ସାର୍ବଭୌମ, ସ୍ୱୟଂଶାସିତ ରାଷ୍ଟ୍ରର ମାନ୍ୟତା ଦେଇଥିଲା। ମାଓ ସେ ତୁଙ୍ଗଙ୍କ ଦ୍ୱାରା ଚୀନ୍‌ରେ କମ୍ୟୁନିଷ୍ଟ ଶାସନ ପ୍ରବର୍ତ୍ତିତ ହେଲାପରେ ଲାଲ୍‌ବାହିନୀ ସେପ୍ଟେମ୍ବର ୧୯୪୯ରେ ତିବ୍‌ବତ ଆକ୍ରମଣ କଲା। ଦୁର୍ଭାଗ୍ୟର କଥା ତିବ୍‌ବତ ସହିତ ପୂର୍ବରୁ ହୋଇଥିବା ସମସ୍ତ ବୁଝାମଣା ସତ୍ତ୍ୱେ ଭାରତ ଚୀନ୍‌ର ସାର୍ବଭୌମତ୍ୱ ମାନିନେଲା। ଜାତିସଂଘରେ ଚୀନ୍‌ର ତିବ୍‌ବତ ଉପରେ ବର୍ବର ଆକ୍ରମଣ କଥା ଉତ୍‌ଥାପିତ ହୋଇଥିଲେ ମଧ୍ୟ ତିବ୍‌ବତ ଜାତିସଂଘର ସଭ୍ୟ ହୋଇନଥିବାରୁ ଯୁଗଯୁଗ ଧରି ସ୍ୱାଧୀନତା ଉପଭୋଗ କରିଆସିଥିବା ଏହି କ୍ଷୁଦ୍ରରାଷ୍ଟ୍ରକୁ ଜାତିସଂଘ କୌଣସି ସହାୟତା ପ୍ରଦାନ କରିନଥିଲା। ଚୀନ୍‌ର ବର୍ବରତାରେ ଅନନ୍ୟୋପାୟ ହୋଇ ଦଲାଇ ଲାମା ଭାରତକୁ ଆଶ୍ରୟ ପାଇଁ ପଳାଇ ଆସିଲେ। ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଏହି ସମୟରେ କହିଥିଲେ, "The invasion of Tibet which terminated in His Holiness taking refuge in Indian territory is brutal colonialism."

ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଚୀନ୍ ତିବ୍‌ବତରେ ଘଟାଉଥିବା ହିଂସ୍ର ପଶୁସୁଲଭ କାର୍ଯ୍ୟର ଦୃଢ଼ ପ୍ରତିବାଦ କରିନଥିବା ଭାରତ ଜନସାଧାରଣଙ୍କ ମନରେ ଘୋର ଆଘାତ ପହଞ୍ଚାଇଥିଲା। ନେହେରୁଙ୍କ ମନ୍ତ୍ରୀମଣ୍ଡଳରେ ଉପ-ପ୍ରଧାନମନ୍ତ୍ରୀ ଥିବା ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ କହିଥିଲେ– "The tragedy

of Tibet is that the Tibetans put faith in us; they choose to be guided by us and we have been unable to get them out of the meshes of Chinese diplomacy or Chinese malevolence." ଏହି କଥାଗୁଡ଼ିକ ମୋ ହୃଦୟରେ ଗଭୀର ରେଖାପାତ କରିଥିଲା। ସେହି ସମୟରୁ ମୋର ତିବ୍‌ବତୀୟମାନଙ୍କ ପ୍ରତି ସହାନୁଭୂତି ଓ ଶ୍ରଦ୍ଧାଭାବ ଜାତ ହୋଇଥିଲା। ଦୀର୍ଘ ଅଠାବନ ବର୍ଷ ଧରି ମହାମାନ୍ୟ ଦଲାଇ ଲାମା ତିବ୍‌ବତୀୟମାନଙ୍କ ସ୍ୱାର୍ଥରକ୍ଷା ପାଇଁ ପୃଥିବୀର ବିଭିନ୍ନ ଦେଶ ଗସ୍ତ କରି ତିବ୍‌ବତ ସପକ୍ଷରେ ଜନସଚେତନତା ଜାଗ୍ରତ କରୁଛନ୍ତି।

ମହାମାନ୍ୟ ଦଲାଇ ଲାମା ହେଉଛନ୍ତି ତିବ୍‌ବତରେ ଲାମାଧର୍ମର ପ୍ରତିଷ୍ଠାତା ଓଡ଼ିଶାର ସମ୍ବଲ ରାଜା ଇନ୍ଦ୍ରଭୂତିଙ୍କର ପୁତ୍ର ପଦ୍ମସମ୍ଭବଙ୍କର ଉତ୍ତରାଧିକାରୀ। ତାଙ୍କ ସମ୍ବନ୍ଧରେ କିଛି ଲେଖିବାକୁ ମନ ବଳିଥିଲା। ଏବେ ଏହା ଚରିତାର୍ଥ କରିବାରେ ସଫଳ ହୋଇଛି।

ଏହି ପୁସ୍ତକ ରଚନାରେ ମୋତେ ଉତ୍ସାହିତ କରିଥିବାରୁ ମୁଁ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତ, ଆନ୍ଧ୍ରପ୍ରଦେଶର ସେଞ୍ଚୁରିଅନ୍ ୟୁନିଭରସିଟି ଅଫ୍ ଟେକ୍ନୋଲୋଜି ଆଣ୍ଡ ମ୍ୟାନେଜମେଣ୍ଟର କୁଳାଧିପତି ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ (ପଦ୍ମଶ୍ରୀ), ବିଶିଷ୍ଟ ସାହିତ୍ୟିକ ଡକ୍ଟର ବିଭୁତି ପଟ୍ଟନାୟକ, ଦଲାଇ ଲାମାଙ୍କ ଆଦର୍ଶରେ ଅନୁପ୍ରାଣିତ ଆଦିତ୍ୟ ବିକ୍ରମାଦିତ୍ୟ, ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ଅଶୋକ ପାଣ୍ଡେ, ବିଶିଷ୍ଟ ସମାଜସେବୀ ରବି ବେହେରାଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି।

ମୋ ପରିବାରର ସଦସ୍ୟ ସାନଭାଇ ପ୍ରିୟବ୍ରତ ମହାନ୍ତି, ଭାଇବୋହୂ ଡକ୍ଟର ସାଗରୀକା ସ୍ୱାଇଁ, ସହଧର୍ମିଣୀ ପ୍ରଫେସର ବେଦବତୀ ମହାନ୍ତି, ସାନ ଭଉଣୀ ଶ୍ରୀମତୀ ଶକୁନ୍ତଳା ରାୟ, ପୁଅ ଡାକ୍ତର ସୁଶାନ୍ତ ମହାନ୍ତି, ବୋହୂ ଡାକ୍ତର ନିତା ମହାନ୍ତି, ନାତି ନିଶାନ୍ତ ଓ ନାତୁଣୀ ସୁନେହରି ମୋତେ ବିଭିନ୍ନ ଭାବରେ ସହାୟତା ଓ ଉତ୍ସାହିତ କରିଥିବାରୁ ସେମାନେ ଧନ୍ୟବାଦାର୍ହ। ଯୁବ ଆଇନଜୀବୀ ସରୋଜ କୁମାର ମିଶ୍ର ମୋତେ ଏହି ପୁସ୍ତକ ରଚନାରେ ସହାୟତା ପ୍ରଦାନ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି।

ବିମଳେନ୍ଦୁ ମହାନ୍ତି

**(ବିମଳେନ୍ଦୁ ମହାନ୍ତି)**

# ସୂଚୀପତ୍ର

ପୃଷ୍ଠା





# (୧) ଦଲାଇ ଲାମା

ତିବ୍‌ବତୀୟ ବୌଦ୍ଧଧର୍ମ ଶାଖାର ଏକ ସର୍ବଶ୍ରେଷ୍ଠ ତଥା ମର୍ଯ୍ୟାଦାସମ୍ପନ୍ନ ଆସନ ବା ଉପାଧି ହେଉଛି 'ଦଲାଇ ଲାମା'। ବ୍ୟକ୍ତି ବିଶେଷରେ ଏହାର ଅର୍ଥ ଭିନ୍ନଭିନ୍ନ କରାଯାଇଥାଏ। ଅନେକଙ୍କର ଧାରଣା ଯେ, ଦଲାଇ ଲାମା ହେଉଛି କୌଣସି ଜଣେ ବ୍ୟକ୍ତିଙ୍କର ନାମ। ମାତ୍ର ତାହା ଠିକ୍ ନୁହେଁ। ଏହା ବାସ୍ତବରେ ହେଉଛି ଏକ ସର୍ବୋଚ୍ଚ ପଦବୀ ବା ଉପାଧି। ଯିଏ ଏହି ପଦବୀରେ ବସନ୍ତି ବା ଉପାଧି ହାସଲ କରନ୍ତି ତାଙ୍କୁ 'ଦଲାଇ ଲାମା' ବୋଲି କୁହାଯାଏ। ବର୍ତ୍ତମାନର ତିବ୍‌ବତୀୟ ଧର୍ମଗୁରୁ ବା ଯାହାଙ୍କୁ ସମଗ୍ର ବିଶ୍ୱବାସୀ ଶ୍ରଦ୍ଧାରେ 'ଦଲାଇ ଲାମା' ବୋଲି ସମ୍ବୋଧନ କରୁଛନ୍ତି ବାସ୍ତବରେ ସେ ହେଉଛନ୍ତି 'ଚତୁର୍ଦ୍ଦଶ ଦଲାଇ ଲାମା'। ତାଙ୍କ ପୂର୍ବରୁ ୧୩ଜଣ ଦଲାଇ ଲାମା ନିଜନିଜର କାର୍ଯ୍ୟଭାର ତୁଲାଇ ସାରିଛନ୍ତି। ବର୍ତ୍ତମାନର ଦଲାଇ ଲାମାଙ୍କର ପିତୃଦତ୍ତ ନାମ ହେଉଛି ହାମୋ ଥୋଣ୍ଡୋପ୍ (Lhamo Thondup)। ଏହାର ଆକ୍ଷରିକ ଅର୍ଥ ହେଉଛି 'ମନୋବାଞ୍ଛା ପୂର୍ଣ୍ଣକାରିଣୀ ଦେବୀ ବା Wish-Fulfilling Goddess'। ଦଲାଇ ଲାମା ହେବା ପରେ ତାଙ୍କର ନାମ ତେନ୍‌ଜିନ୍ ଗ୍ୟାତ୍‌ସୁ (Tenzin Gyatso) ରଖାଯାଇଥିଲା।

ଦଲାଇ ଲାମା (Dalai Lama)ର ଅର୍ଥ ଜ୍ଞାନର ମହାସାଗର ବା Ocean of wisdom। ଏହା ଭିନ୍ନଭିନ୍ନ ଦୁଇଗୋଟି ଶବ୍ଦର ମିଶ୍ରଣରୁ ସୃଷ୍ଟି ହୋଇଛି। Dalai ହେଉଛି ଏକ ମଙ୍ଗୋଲୀୟ ଶବ୍ଦ ଯାହାର ଅର୍ଥ ମହାସାଗର ବା Ocean ଏବଂ Lama ହେଉଛି ଏକ ତିବ୍‌ବତୀୟ ଶବ୍ଦ ଯାହାର ଅର୍ଥ ଜ୍ଞାନ ବା wisdom। କେହିକେହି ଭାରତୀୟ 'ଲାମା'ର ଅର୍ଥ ଶିକ୍ଷାଦାତା 'ଗୁରୁ ବା teacher' ବୋଲି ମଧ୍ୟ କହିଥାନ୍ତି। ସେଥିଲାଗି ତିବ୍‌ବତୀୟ ଧର୍ମଗୁରୁ ଦଲାଇ ଲାମାମାନଙ୍କୁ ଜ୍ଞାନର ମହାସାଗର ବା Ocean of wisdom ଅଥବା 'ଜ୍ଞାନଗୁରୁ' କିମ୍ବା 'ବିଦ୍ୟାସାଗର' ବୋଲି କୁହାଯାଏ। ଦଲାଇ ଲାମାଙ୍କର ଅନୁଗାମୀମାନେ ବିଶ୍ୱାସ କରନ୍ତି ଯେ, ଦଲାଇ ଲାମା ହେଉଛନ୍ତି କରୁଣାମୟ ଅବଲୋକିତେଶ୍ୱର ବୁଦ୍ଧଙ୍କର ଏକ ମାନବୀୟ ଅବତାର। ସେ ଅନ୍ୟମାନଙ୍କୁ ଜ୍ଞାନର ଆଲୋକ ବିତରଣ କରିବା ପାଇଁ ଧର୍ମଗୁରୁ ଭାବରେ ଧରାପୃଷ୍ଠରେ ଥରକୁଥର ଅବତରଣ

କରିଥାନ୍ତି । ପୁଣି କେତେକଙ୍କ ଦୃଷ୍ଟିରେ ଦଲାଇ ଲାମା ହେଉଛନ୍ତି ଜଣେ 'ଦେବରାଜ ବା ଠାକୁର ରାଜା' । ସେ ହେଉଛନ୍ତି ଦୟା, କରୁଣାର ଅବତାର ବୋଧିସତ୍ତ୍ୱ ଭଗବାନ ବୁଦ୍ଧଙ୍କର ଜୀବନ୍ତ ପ୍ରତିମୂର୍ତ୍ତି ।

ଦଲାଇ ଲାମା ଶବ୍ଦଟିର ସୃଷ୍ଟି କେବେ ହେଲା ତାହାକୁ ନେଇ ଭିନ୍ନଭିନ୍ନ କାହାଣୀ ଶୁଣିବାକୁ ମିଳେ । ଐତିହାସିକ ତଥ୍ୟ ଅନୁଯାୟୀ ସର୍ବପ୍ରଥମେ ୧୫୭୮ ମସିହାରେ ମଙ୍ଗୋଲୀୟ ଶାସକ ଅଲଟାନ୍ ଖାନ୍ ହିଁ ଏହି ପବିତ୍ର ଶବ୍ଦଟିର ପ୍ରଚଳନ କରିଥିଲେ । ସେ ତିବ୍‌ବତ ବୌଦ୍ଧଧର୍ମ ଶାଖାରେ ପ୍ରଚଳିତ ଧର୍ମଗୁରୁ ଶୃଙ୍ଖଳାର ତୃତୀୟ ଧର୍ମଗୁରୁ ସୋନମ୍ ଗ୍ୟାତ୍‌ସୁ (Sonam Gyatso)ଙ୍କୁ ସର୍ବପ୍ରଥମେ ଏହି ଉପାଧି ପ୍ରଦାନ କରିଥିଲେ । ସୋନମ୍ ଗ୍ୟାତ୍‌ସୁ ହେଉଛନ୍ତି ଦଲାଇ ଲାମା କ୍ରମର ତୃତୀୟ ଲାମା ବା ଗୁରୁ । ତାଙ୍କ ପରେପରେ ଦଲାଇ ଲାମା ଆସନରେ ବସୁଥିବା ପ୍ରତ୍ୟେକଙ୍କ ନାମ ପଛରେ 'ଗ୍ୟାତ୍‌ସୁ' ଶବ୍ଦ ଯୋଡ଼ି ହେଇଗଲା ଓ ସେମାନଙ୍କୁ 'ଦଲାଇ ଲାମା' କୁହାଗଲା । ତିବ୍‌ବତୀୟ ଭାଷାକୋଷରେ 'ଗ୍ୟାତ୍‌ସୁ' ଶବ୍ଦର ଅର୍ଥ ମଧ୍ୟ ମହାସାଗର । ପୁଣି ଚୀନ୍ ଭାଷାରେ 'ଲାମା' ଶବ୍ଦର ଅର୍ଥ 'ଜୀବିତ ବୁଦ୍ଧ ବା Buo-Fou' । ତିବ୍‌ବତୀୟ ବୌଦ୍ଧଧର୍ମରେ ଦଲାଇ ଲାମା ହେଉଛନ୍ତି ସେହିଭଳି ବ୍ୟକ୍ତି, ଯିଏ ନିଜର ପୁନର୍ଜନ୍ମର ଧାରାକୁ ବାଛିନେଇ ପାରିଥାନ୍ତି । ସେହିଭଳି କ୍ଷମତା ଥିବା ବ୍ୟକ୍ତିମାନଙ୍କୁ 'ଜାତସ୍ମର ବା tulkus' ବୋଲି କୁହାଯାଏ । ତେବେ ବର୍ତ୍ତମାନର ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ 'ଦଲାଇ ଲାମା' ଶବ୍ଦର ଏଭଳି ବ୍ୟୁତ୍ପତ୍ତିକୁ କେତେକାଂଶରେ ଭ୍ରମାତ୍ମକ ବୋଲି କହିଛନ୍ତି । ଗୋଟିଏ ଭୁଲ୍ ବୁଝାମଣାରୁ 'ଦଲାଇ ଲାମା' ଶବ୍ଦର ଏପରି ବ୍ୟୁତ୍ପତ୍ତି ହୋଇଥିବା ତାଙ୍କର ମନେହେଉଛି ବୋଲି ସେ ତାଙ୍କର ଆତ୍ମଜୀବନୀ ଗ୍ରନ୍ଥ *Freedom In Exile*ରେ ଉଲ୍ଲେଖ କରିଛନ୍ତି ।

ସେ ଯାହା ହୋଇଥାଉନା କାହିଁକି, ଏପର୍ଯ୍ୟନ୍ତ ଯେଉଁ ୧୩ ଜଣ ମହାନ୍ ବ୍ୟକ୍ତିତ୍ୱ 'ଦଲାଇ ଲାମା' ହୋଇସାରିଛନ୍ତି; ଯଥାକ୍ରମେ ସେମାନେ ହେଉଛନ୍ତି (୧) ଗେନ୍‌ଡୁନ୍ ଡ୍ରୁପ୍ (Gendun Drup), (୨) ଗେନ୍‌ଡୁନ୍ ଗ୍ୟାତ୍‌ସୁ (Gendun Gyatso), (୩) ସୋନମ୍ ଗ୍ୟାତ୍‌ସୁ (Sonam Gyatso), (୪) ୟନ୍ତେନ୍ ଗ୍ୟାତ୍‌ସୁ (Yonten Gyatso), (୫) ଗାୱାଙ୍ଗ୍ ଲବ୍‌ସାଙ୍ଗ୍ ଗ୍ୟାତ୍‌ସୁ (Ngawang Lobsang Gyatso), (୬) ସାଙ୍ଗ୍‌ୟାଙ୍ଗ୍ ଗ୍ୟାତ୍‌ସୁ (Tsangyang Gyatso), (୭) କେଲ୍‌ଜାଙ୍ଗ୍ ଗ୍ୟାତ୍‌ସୁ (Kelzang Gyatso), (୮) ଜାମ୍ଫେଲ୍ ଗ୍ୟାତ୍‌ସୁ (Jamphel Gyatso),

(୯) ଲୁଙ୍ଗ୍‌ଟକ୍ ଗ୍ୟାତ୍‌ସୁ (Lungtok Gyatso), (୧୦) ସୁଲଟ୍ରିମ୍ ଗ୍ୟାତ୍‌ସୁ (Tsultrim Gyatso), (୧୧) ଖେନ୍ଦ୍ରୁପ୍ ଗ୍ୟାତ୍‌ସୁ (Khendrup Gyatso), (୧୨) ଟ୍ରିନ୍‌ଲୀ ଗ୍ୟାତ୍‌ସୁ (Trinley Gyatso) ଏବଂ (୧୩) ଥୁପ୍‌ଟେନ୍ ଗ୍ୟାତ୍‌ସୁ (Thupten Gyatso)। ବର୍ତ୍ତମାନର ଦଲାଇ ଲାମା ହେଉଛନ୍ତି ଲାମା ଶୃଙ୍ଖଳା ବା କ୍ରମର ଚତୁର୍ଦ୍ଦଶ ଦଲାଇ ଲାମା। ତାଙ୍କର ନାମ ତେନ୍‌ଜିନ୍ ଗ୍ୟାତ୍‌ସୁ (Tenzin Gyatso)। ଦଲାଇ ଲାମାମାନଙ୍କୁ ତିବ୍‌ବତର ମୂଲ୍ୟବୋଧ, ପରିଚୟ ତଥା ସଂସ୍କୃତିର ଜଣେ ଜଣେ ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ବିବେଚନା କରାଯାଇଥାଏ। ବର୍ତ୍ତମାନର ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କୁ ସମଗ୍ର ବିଶ୍ୱରେ His Holiness ବୋଲି ସମ୍ବୋଧନ କରାଯାଉଛି। ବିଂଶ ଶତାବ୍ଦୀ ପୂର୍ବରୁ ୟୁରୋପୀୟମାନେ ଦଲାଇ ଲାମାଙ୍କୁ Grand Lama ବୋଲି ବିବେଚନା କରୁଥିଲେ। ତେବେ ତିବ୍‌ବତୀୟମାନେ ଦଲାଇ ଲାମାଙ୍କୁ ଗ୍ୟାଲ୍‌ୱା ରିନ୍‌ପୋଚି (Gyalwa Rinpoche), କୁନ୍‌ଦୁନ୍ (Kundun) ଏବଂ ୟିସିନ୍ ରିନ୍‌ପୋଚି (Yishin Rinpoche) ବୋଲି ସମ୍ବୋଧନ କରିଥାନ୍ତି। ଏଠାରେ ସୂଚନା ଦିଆଯାଇପାରେ ଯେ, ତିବ୍‌ବତୀୟ ପରମ୍ପରା ଅନୁଯାୟୀ ଧର୍ମଗୁରୁ ବା Spiritual masterମାନଙ୍କୁ Rinpoche ଉପାଧି ପ୍ରଦାନ କରାଯାଇଥାଏ ଯାହାର ଅର୍ଥ ମହାର୍ଘ ବା Precious One।

ପରମ୍ପରା ଅନୁଯାୟୀ ଦଲାଇ ଲାମାଙ୍କର ମୃତ୍ୟୁ ପରେ ସେ ପୁନଶ୍ଚ ଅବତାର ଗ୍ରହଣ କରନ୍ତି। ଅର୍ଥାତ୍ ନୂତନ ରୂପରେ ପୁଣିଥରେ ଜନ୍ମନିଅନ୍ତି ଏବଂ ଅବଲୀଳାକ୍ରମେ ସେ ହିଁ ନୂତନ ଦଲାଇ ଲାମା ଭାବରେ ଦାୟିତ୍ୱ ଗ୍ରହଣ କରନ୍ତି। ତିବ୍‌ବତୀୟମାନେ ବିଶ୍ୱାସ କରନ୍ତି ଯେ, ଦଲାଇ ଲାମା ହେଉଛନ୍ତି ଭଗବାନ ଅବଲୋକିତେଶ୍ୱର ବୁଦ୍ଧଙ୍କର ଅବତାର। ତେଣୁ ତାଙ୍କର ମୃତ୍ୟୁ ନାହିଁ। ସେ କେବଳ ଦେହ ତ୍ୟାଗ କରନ୍ତି। ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ ଗ୍ୟାତ୍‌ସୁଙ୍କ ଦେହାନ୍ତର ପ୍ରାୟ ଚାରିବର୍ଷ ପରେ ତିବ୍‌ବତୀୟମାନେ ସେମାନଙ୍କର ଚତୁର୍ଦ୍ଦଶ ଦଲାଇ ଲାମା ରୂପରେ ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କ ସନ୍ଧାନ ପାଇଥିଲେ। ତେବେ ଜଣେ ଦଲାଇ ଲାମାଙ୍କ ଦେହାନ୍ତ ପରେ ଆଉ ଜଣେ ନୂତନ ଦଲାଇ ଲାମାଙ୍କ ସନ୍ଧାନ ପାଇବା ପାଇଁ କେତେକ ପାରମ୍ପରିକ କ୍ରିୟାକର୍ମ ସମ୍ପନ୍ନ କରିବାକୁ ପଡ଼ିଥାଏ। ନୂତନ ଦଲାଇ ଲାମାଙ୍କ ସନ୍ଧାନ କରିବା ପୂର୍ବରୁ ଉଚ୍ଚ ଶ୍ରେଣୀୟ ଲାମା (High Lama)ମାନଙ୍କୁ ହାମୋଇ ଲାସୁ (Lhamoi Latso) ନାମକ ଏକ ପବିତ୍ର ହ୍ରଦ ନିକଟକୁ ଯିବାକୁ ପଡ଼ିଥାଏ। ତିବ୍‌ବତର ରାଜଧାନୀ ଲାସାର ୯୦ ମାଇଲ୍ ଦକ୍ଷିଣ-

ପୂର୍ବରେ ଥିବା ଚୋଖୋରଗ୍ୟାଲ୍ ନାମକ ସ୍ଥାନରେ ଏହି ହ୍ରଦଟି ଅବସ୍ଥିତ । ତିବ୍ବତରେ ଥିବା ବହୁ ହ୍ରଦଗୁଡ଼ିକ ମଧ୍ୟରୁ ଏହାକୁ ଅତ୍ୟନ୍ତ ପବିତ୍ର ହ୍ରଦ ବୋଲି ବିବେଚନା କରାଯାଏ । ନୂତନ ଦଲାଇ ଲାମା କେଉଁଠାରେ ଜନ୍ମ ନେଇଛନ୍ତି ବା ଜନ୍ମନେବେ ତାହାର ସଂକେତ ଏହି 'ଲାମୋଇ ଲାସୁ' ହ୍ରଦରୁ ମିଳିଥାଏ ବୋଲି ତିବ୍ବତୀୟମାନଙ୍କର ଦୃଢ଼ ବିଶ୍ୱାସ ରହିଛି । କେବଳ ସେତିକି ନୁହେଁ, ଏହି ହ୍ରଦର ପାଣିରେ ଆଗତ ଭବିଷ୍ୟତର ଚିତ୍ରସବୁ ଦେଖିବାକୁ ମିଳିଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି । ଚତୁର୍ଦ୍ଦଶ ଅର୍ଥାତ୍ ବର୍ତ୍ତମାନର ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କର ସନ୍ଧାନ ଏହି ଦିବ୍ୟ ହ୍ରଦରୁ ହିଁ ମିଳିଥିଲା ।

ଦଲାଇ ଲାମାମାନଙ୍କର ସନ୍ଧାନ ପ୍ରଦାନ କରୁଥିବା ହ୍ରଦକୁ ନେଇ କେତେକ କାହାଣୀ ଶୁଣିବାକୁ ମିଳେ । ପାଲ୍‌ଡେନ୍ ହାମୋ (Palden Lhamo) ହେଉଛନ୍ତି 'ହାମୋଇ ଲାସୁ' ହ୍ରଦର ଆତ୍ମା । ସେ ଜଣେ ଦେବୀ, ଯାହାଙ୍କୁ ତିବ୍ବତୀୟମାନେ ହିନ୍ଦୁଧର୍ମର 'କାଳୀମାତା'ଙ୍କ ସହିତ ତୁଳନା କରିଥାନ୍ତି । ଦଲାଇ ଲାମାଙ୍କର ଦେହାନ୍ତ ପରେ ସେ ପୁନଶ୍ଚ କେଉଁଠାରେ ଜନ୍ମଗ୍ରହଣ କରିଛନ୍ତି ସେକଥା ତାଙ୍କର ଅନୁଗାମୀମାନଙ୍କୁ ସଙ୍କେତ ତଥା ଦୃଶ୍ୟ ଜରିଆରେ ଜଣେଇ ଦେବେ ବୋଲି ପାଲ୍‌ଡେନ୍ ଲାମୋ ତିବ୍ବତର ସର୍ବପ୍ରଥମ ଧର୍ମଗୁରୁ (ଦଲାଇ ଲାମା) ଗେନ୍‌ଡୁନ୍ ଡ୍ରୁପ୍‌ଙ୍କ ନିକଟରେ ଶପଥ କରିଥିଲେ । ସେବେଠାରୁ ସେହି ପ୍ରକ୍ରିୟା ଜାରି ରହି ଜଣକ ପରେ ଜଣେ ଦଲାଇ ଲାମାଙ୍କର ସନ୍ଧାନ ମିଳିଚାଲିଛି । ତେବେ ଦଲାଇ ଲାମାଙ୍କ ଜନ୍ମ ବିଷୟରେ ସୂଚନା ମିଳିବା ପରେ ତାଙ୍କୁ କିଛିଦିନ ଧରି ପରୀକ୍ଷା କରାଯାଇଥାଏ । ସେ ବାସ୍ତବରେ ଦଲାଇ ଲାମାଙ୍କର ଅବତାର ବୋଲି ସବୁପ୍ରକାର ସନ୍ଦେହ ଦୂରୀଭୂତ ହେବା ପରେ ତାଙ୍କୁ ଅଣାଯାଇ ଦଲାଇ ଲାମା ଆସନରେ ଅଧିଷ୍ଠିତ କରାଯାଇଥାଏ ।



# (୨) ଜନ୍ମ ଓ ପିଲାଦିନ

ଡୋଖାମ୍ (Dokham) ତିବ୍ବତର ଉତ୍ତର-ପୂର୍ବାଞ୍ଚଳର ଏକ ଜିଲ୍ଲା । ଡୋଖାମ୍ ଶବ୍ଦଟି ଦୁଇଗୋଟି ତିବ୍ବତୀୟ ଶବ୍ଦକୁ ନେଇ ଗଠିତ; ଯଥା- Do, ଯାହାର ଅର୍ଥ ସମତଳ ସହିତ ମିଶି ଯାଇଥିବା ଉପତ୍ୟକାର ନିମ୍ନାଂଶ (the lower part of a valley that merges into the plains) ଏବଂ ଅନ୍ୟ ଶବ୍ଦଟି ହେଉଛି ଖାମ୍ (Kham) ଯାହାର ଅର୍ଥ ତିବ୍ବତର ପୂର୍ବାଞ୍ଚଳ ଭାଗ ଯେଉଁଠାରେ ତିବ୍ବତୀୟ ଖାମ୍ପା (Khampa)ମାନେ ବସବାସ କରନ୍ତି । ଡୋଖାମ୍ ତିବ୍ବତର ଏମିତି ଏକ ଅଞ୍ଚଳ ଯେଉଁଠାରେ ଥିବା ପାହାଡ଼ସବୁ ପୂର୍ବଆଡ଼କୁ ନଇଁଆସି ଚୀନ୍ ସହିତ ମିଶିଯାଇଅଛି । ଏହି ଡୋଖାମ୍ ଜିଲ୍ଲାର ଏକ ତାଲୁକର ନାମ ଟାକ୍ସେର (Taktser) । ଟାକ୍ସେର୍‌ର ଅର୍ଥ 'ଗର୍ଜୁଥିବା ବାଘ' । ସମୁଦ୍ର ପତ୍ତନଠାରୁ ଟାକ୍ସେର୍ ୯ ହଜାର ଫୁଟ ଉଚ୍ଚରେ ଅବସ୍ଥିତ । ଏହା ଏକ କ୍ଷୁଦ୍ର ତଥା ଦରିଦ୍ର ଜନବସତିପୂର୍ଣ୍ଣ ଅଞ୍ଚଳ । ଏଠାରେ ଥିବା ଜମିକୁ ଦୀର୍ଘଦିନ ଧରି ଚାଷ କରାଯାଇ ନଥିଲା । ଯାଯାବରମାନେ କେବଳ ଏହାକୁ ସେମାନଙ୍କଦ୍ୱାରା ପାଳିତ ପଶୁଙ୍କର ଚାରଣଭୂଇଁ ଭାବରେ ବ୍ୟବହାର କରୁଥିଲେ । ଟାକ୍ସେର୍ ତିବ୍ବତର ଉତ୍ତର-ପୂର୍ବାଞ୍ଚଳ ପ୍ରଦେଶ ଆମ୍‌ଡ଼ୋ (Amdo)ରେ ଅବସ୍ଥିତ ଥିଲା । ଭୌଗୋଳିକ ଦୃଷ୍ଟିରୁ ତିବ୍ବତକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ; ଯଥା- ଉତ୍ତର ପଶ୍ଚିମରେ ଚାଙ୍ଗ୍‌ଟାଙ୍ଗ, ଦକ୍ଷିଣରେ ୟୁ-ସାଙ୍ଗ୍, ୟୁ-ସାଙ୍ଗ୍ ପୂର୍ବରେ ଖାମ୍ ଏବଂ ଖାମ୍‌ର ଉତ୍ତରରେ ଆମ୍‌ଡ଼ୋ । ଟାକ୍ସେର୍ ଏକ ଅତି ରମଣୀୟ ସ୍ଥାନ । ଏହାର ଚାରିଆଡ଼େ ଗହମର କ୍ଷେତ ଓ ସବୁଜ ପାହାଡ଼ ଘେରି ରହିଥିଲା । ୬ ଜୁଲାଇ ୧୯୩୫ ମସିହାରେ ଏହି ଟାକ୍ସେର୍‌ରେ ଜନ୍ମ ହୋଇଥିଲେ ବର୍ତ୍ତମାନର ଚତୁର୍ଦ୍ଦଶ ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍ସୁ । ତିବ୍ବତୀୟ ପଞ୍ଜିକାରେ ସେତେବେଳେ ଏହି ଦିନଟି ଥିଲା ଉଡ୍‌ହଗ୍ ବର୍ଷର ପଞ୍ଚମ ମାସର ପଞ୍ଚମ ଦିନ । ତାଙ୍କର ପିତୃଦତ୍ତ ନାମ ଥିଲା ହାମୋ ଥୋଣ୍ଡୋପ୍ (Lhamo Thondup) ।

ତାଙ୍କର ବାପା ଜଣେ କ୍ଷୁଦ୍ର ଚାଷୀ ଥିଲେ । ସେ କାହା ନିକଟରେ ମୂଲ ଲାଗୁ ନଥିଲେ । ସେ କିଛି ପରିମାଣର ଜମି ଭାଗ ରଖି ନିଜେ ସେଥିରେ ଚାଷ କରୁଥିଲେ ।

ବାର୍ଲି ଓ କଳାରଙ୍ଗର ଗହମ ତିବ୍‌ବତର ମୁଖ୍ୟ ଫସଲ ଥିଲା। ତାଙ୍କ ବାପା ଏହି ଦୁଇଟି ଫସଲ ସହିତ ଆଳୁଚାଷ ମଧ୍ୟ କରୁଥିଲେ। ତେବେ ଝଡ଼, ମରୁଡ଼ି ଆଦି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ଅଧିକାଂଶ ସମୟରେ ଫସଲସବୁ ନଷ୍ଟ ହୋଇଯାଉଥିଲା। ଚାଷ ବ୍ୟତୀତ, ସେ ଅନେକ ଗୃହପାଳିତ ପଶୁ ରଖିଥିଲେ। ସେ ପାଞ୍ଚ-ଛ'ଟି ଦୁହାଁଳିଆ ଜୋମୋସ୍ (dzomos) ରଖିଥିଲେ। ଜୋମୋସ୍ ହେଉଛି ଏକ ସଙ୍କର ଜାତୀୟ ପଶୁ ଯାହା ଚମରୀ ଷଣ୍ଢ ଓ ଗାଈର ସଙ୍ଗମରୁ ସୃଷ୍ଟି ହୋଇଥାଏ। କିଛି ଅଣ୍ଡା ଦେଉଥିବା କୁକୁଡ଼ା ଓ ବତକ ମଧ୍ୟ ପାଳନ କରୁଥିଲେ। ପାଖାପାଖି ଅଶୀଗୋଟି ଛେଳି ଓ ମେଣ୍ଢା ଏବଂ ଦୁଇଟି ଚମରୀ ଗାଈ ମଧ୍ୟ ତାଙ୍କ ଘରେ ରଖିଥିଲେ।

ତାଙ୍କ ବାପାଙ୍କର ସ୍କୁଲ୍‌ଶିକ୍ଷା ବେଶି ନଥିଲା କିମ୍ବା ସେ ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି ନଥିଲେ। ମାତ୍ର ତାଙ୍କ ନିକଟରେ ପ୍ରକୃତିଦତ୍ତ ଗୁଣାବଳୀ ଭରପୂର ହୋଇ ରହିଥିଲା। ସେ ଖୁବ୍ ଚତୁର, ବୁଦ୍ଧିମାନ ତଥା ବଳଶାଳୀ ମଣିଷ ଥିଲେ। ବିଶେଷକରି ସେ ଘୋଡ଼ା ରଖିବାକୁ ବେଶି ପସନ୍ଦ କରୁଥିଲେ ଓ ଘୋଡ଼ାଗୁଡ଼ିକୁ ଖୁବ୍ ଭଲ ପାଉଥିଲେ। ସେ ଗୋଟିଏ ଘୋଡ଼ାପଲକୁ ଦେଖି ଖୁବ୍ କମ୍ ସମୟ ମଧ୍ୟରେ ଚିହ୍ନିପାରୁଥିଲେ ଯେ, ପଲରେ ଥିବା ଘୋଡ଼ାଗୁଡ଼ିକ ମଧ୍ୟରୁ କେଉଁ ଘୋଡ଼ାଟି ଭଲ। ସେହିଭଳି ଘୋଡ଼ାଟିଏ ଅସୁସ୍ଥ ହୋଇପଡ଼ିଲେ ତାକୁ ଚିକିତ୍ସା କରି ଅଳ୍ପ ସମୟ ମଧ୍ୟରେ ସୁସ୍ଥ କରିଦେଇ ପାରୁଥିଲେ। ତାଙ୍କର ଘୋଡ଼ା ଚଢ଼ିବାରେ ମଧ୍ୟ ରୁଚି ରହିଥିଲା। ସେ ଜଣେ ମଧ୍ୟମ-ଉଚ୍ଚତା ଓ ବଦ୍‌ରାଗୀ ମଣିଷ ଥିଲେ। ଅବଶ୍ୟ ତାଙ୍କର କ୍ରୋଧ ଖୁବ୍ ଶୀଘ୍ର ଶାନ୍ତ ହୋଇଯାଉଥିଲା। ପିଲାବେଳେ ଥରେ ହାମୋ ବା ଆଜିର ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ ପିତାଙ୍କର ନିଶକୁ ଟାଣିଦେଇ ତାଙ୍କଠାରୁ ମାଡ଼ ଖାଇଥିଲେ। ତଥାପି ତାଙ୍କର ବାପା ଖୁବ୍ ହୃଦୟବାନ୍ ଓ ଦୟାଳୁ ଥିଲେ ଏବଂ କାହାରି ଉପରେ ଆକ୍ରୋଶ ରଖୁ ନଥିଲେ।

ତେନ୍‌ଜିନ୍ ଜନ୍ମ ହେବାବେଳେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଥିଲା। ସେ ଜନ୍ମ ହେବାର କିଛି ସପ୍ତାହ ଆଗରୁ ତାଙ୍କର ବାପା ଖୁବ୍ ଅସୁସ୍ଥ ହୋଇପଡ଼ିଥିଲେ। ତାଙ୍କର ଦେହ ଆଦୌ ଭଲ ହେଲାନାହିଁ। ସେ ଶଯ୍ୟାଶାୟୀ ହୋଇଗଲେ। ପରିବାରର ଲୋକମାନେ ତାଙ୍କର ସ୍ୱାସ୍ଥ୍ୟାବସ୍ଥାକୁ ନେଇ ଗଭୀର ଚିନ୍ତାରେ ପଡ଼ିଥିଲେ। ଏମିତିକି କେହି କେହି ତାଙ୍କର ଅନ୍ତିମ ସମୟ ଆସିଗଲା ବୋଲି ମଧ୍ୟ ଧରିନେଇଥିଲେ। ମାତ୍ର ଯେଉଁଦିନ ତେନ୍‌ଜିନ୍ ଜନ୍ମହେଲେ ସେହିଦିନ ଅଚାନକ ତାଙ୍କର ଦେହ ଆରୋଗ୍ୟ ହୋଇଗଲା। ସେ ଜଣେ ସୁସ୍ଥ ସବଳ ମଣିଷ ଭଳି କଥାବାର୍ତ୍ତା, କାମଦାମ ଓ ଚଲାବୁଲା

କରିବାକୁ ଲାଗିଲେ। ଏହାଦେଖି ଲୋକମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ। କେହିକେହି କହିଲେ, ପୁଅ ହେବାର ଖୁସିରେ ତାଙ୍କର ଦେହ ଭଲ ହୋଇଗଲା। ମାତ୍ର ଏହା କେବେହେଲେ ଚମତ୍କାର କରିବା ଭଳି ଏକ କାରଣ ନଥିଲା। କାରଣ ଏହା ପୂର୍ବରୁ ସେ ଏକାଧିକ ପୁତ୍ରକନ୍ୟାଙ୍କର ଜନକ ହୋଇସାରିଥିଲେ। ପ୍ରକାଶଥାଉ କି, ତେନ୍‌ଜିନ୍‌ଙ୍କ ମା' ମୋଟ୍ ଷୋହଳଟି ସନ୍ତାନର ଜନନୀ ଥିଲେ। ସେମାନଙ୍କ ମଧ୍ୟରୁ ସାତ ଜଣ ଜୀବିତ ଥିଲେ। ଅନ୍ୟ ନଅଜଣଙ୍କର ଶୈଶବରେ ମୃତ୍ୟୁ ଘଟିଥିଲା।

ତାଙ୍କ ବାପାଙ୍କ ଭଳି ମା' ମଧ୍ୟ ଜଣେ ଖୁବ୍ ଭଲ ମଣିଷ ଥିଲେ। ସେ ଦୟାବତୀ ଏବଂ କରୁଣାମୟୀ ଥିଲେ। ସେ ସମସ୍ତଙ୍କୁ ଭଲ ପାଉଥିଲେ। ତାଙ୍କ ଭିତରେ ନିଜପର ଭେଦଭାବ ନଥିଲା। ସେ କେବେ ବି କୌଣସି ଭିକ୍ଷୁକଙ୍କୁ ଖାଲି ହାତରେ ଘରୁ ଫେରାଇ ଦେଉ ନଥିଲେ। ଏମିତିକି ନିଜ ପାଇଁ ଥିବା ଖାଦ୍ୟକୁ ସେମାନଙ୍କୁ ଦେଇ ନିଜେ ଉପାସରେ ରହୁଥିଲେ। ତେନ୍‌ଜିନ୍ ନିଜର ଆତ୍ମଜୀବନୀ ପୁସ୍ତକ *Freedom In Exile*ରେ ପିଲାବେଳେ ଅନ୍ୟମାନଙ୍କଠାରୁ ଶୁଣିଥିବା ଗୋଟିଏ ଘଟଣା ବର୍ଣ୍ଣନାକରି ନିଜ ମା'ଙ୍କର ଦୟାଶୀଳତାର ପରିଚୟ ପ୍ରଦାନ କରିଛନ୍ତି। ଘଟଣାଟି ହେଲା– ଥରେ ଚୀନ୍‌ରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଲା। ଲୋକମାନେ ଖାଇବାକୁ ନ ପାଇ ଭୋକ ଉପାସରେ ଆଉଟିପାଉଟି ହେଲେ। ଖାଦ୍ୟ ସନ୍ଧାନ କରିବା ପାଇଁ ଚୀନ୍‌ର ଲୋକମାନେ ଘରଦ୍ୱାର ଛାଡ଼ି ଏପରିକି ନିଜ ଦେଶର ସୀମାଡେଇଁ ବିଭିନ୍ନଆଡ଼କୁ ପଳାୟନ କଲେ। ଦିନେ ଗୋଟିଏ ମୃତ ଶିଶୁକୁ ଧରି ସ୍ୱାମୀସ୍ତ୍ରୀ ଦୁଇଜଣ ଆସି ତାଙ୍କ ଦ୍ୱାର ସମ୍ମୁଖରେ ପହଞ୍ଚିଲେ ଓ କିଛି ଖାଇବାକୁ ଦେବା ଲାଗି ଅନୁରୋଧ କଲେ। ତାଙ୍କର ମା' ଆନନ୍ଦରେ ସେମାନଙ୍କୁ ଖାଇବା ପିଇବାକୁ ଦେଲେ। ତା'ପରେ ମୃତ ଶିଶୁଟି ଆଡ଼କୁ ଆଙ୍ଗୁଳି ଦେଖାଇ ତାକୁ ପୋତିବାପାଇଁ ସେମାନେ ତାଙ୍କଠାରୁ କୌଣସି ସାହାଯ୍ୟ ପାଇବାକୁ ଚାହାନ୍ତି କି ବୋଲି ପଚାରିଲେ ଓ ସେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଜଣାଇଦେଲେ। ମାତ୍ର ସେମାନେ ତାଙ୍କ ମା'ଙ୍କ କଥା ଶୁଣି ମୁଣ୍ଡ ନୁଆଁଇ ଦେଲେ ଓ ସ୍ପଷ୍ଟ ଭାବରେ କହିଲେ ଯେ, ସେମାନେ ମୃତ ଶିଶୁଟିକୁ ଖାଇବା ପାଇଁ ରଖିଛନ୍ତି। ଏକଥା ଶୁଣି ଭୟରେ ତାଙ୍କ ମା'ଙ୍କର ଆଖି ବୁଜି ହୋଇଗଲା ଓ ସେ ଭୀତତ୍ରସ୍ତ ହୋଇଉଠିଲେ। ତାଙ୍କର ମନ ଦୁଃଖରେ ମ୍ରିୟମାଣ ହୋଇଉଠିଲା। ସେ ସେମାନଙ୍କୁ ବିଦାୟ ଦେଲେ। ମାତ୍ର ତା'ପୂର୍ବରୁ ସେମାନଙ୍କୁ ଘର ଭିତରକୁ ଡାକିନେଇ ଘରେଥିବା ସବୁତକ ଖାଦ୍ୟ ସେମାନଙ୍କ ମୁଣାରେ ଅଜାଡ଼ି ଦେଲେ। ତାଙ୍କର ମା' ଏଭଳି ହୃଦୟର ଜଣେ ମଣିଷ ଥିଲେ, ଯିଏ ନିଜର

ପିଲାମାନେ ଭୋକିଲା ରହିବେ ବୋଲି ଜାଣି ସୁଦ୍ଧା ଭିକାରୀମାନଙ୍କୁ କେବେ ବି ଖାଲି ହସ୍ତରେ ଫେରାଇ ଦେଉନଥିଲେ ।

ତାଙ୍କର ସବା ବଡ଼ ଭଉଣୀର ନାମ ସେରିଙ୍ଗ ଡୋଲମା (Tsering Dolma) । ତାଙ୍କଠାରୁ ସେ ବୟସରେ ଅଠର ବର୍ଷ ବଡ଼ ଥିଲେ । ତେନ୍‌ଜିନ୍ ଜନ୍ମ ହେବା ସମୟରେ ସେରିଙ୍ଗ ଘରକାମ କରିବାରେ ମା'ଙ୍କୁ ସାହାଯ୍ୟ କରୁଥିଲେ ଏବଂ ତାଙ୍କର ଧାଈ ଭାବରେ କାର୍ଯ୍ୟ କରିଥିଲେ । ଜନ୍ମବେଳେ ତେନ୍‌ଜିନ୍‌ଙ୍କର ଗୋଟିଏ ଆଖି ଠିକ୍ ଭାବରେ ଖୋଲି ନଥିଲା । ଏହା ଦେଖି ସେରିଙ୍ଗ ଟିକିଏ ବି ଡେରି ନକରି ତାଙ୍କର ବୁଢ଼ା ଆଙ୍ଗୁଳି ଟିପରେ ଖୋଲୁ ନଥିବା ଆଖିଟିକୁ ଜୋର୍‌କରି ମେଲା କରି ଦେଇଥିଲେ । ସୌଭାଗ୍ୟକୁ ଆଖି ଉପରେ ସେମିତି କିଛି କୁପ୍ରଭାବ ପଡ଼ି ନଥିଲା ।

ସେରିଙ୍ଗ ଡୋଲମା ହିଁ ତାଙ୍କୁ ପ୍ରଥମ ଖାଦ୍ୟ ଖୁଆଇଥିଲେ । ସେହି ଖାଦ୍ୟ ଏକ ପାରମ୍ପରିକ ଖାଦ୍ୟ ଥିଲା ଓ ତାହା ସ୍ଥାନୀୟ ଅଞ୍ଚଳରେ ମିଳୁଥିବା ଏକ ନିର୍ଦ୍ଦିଷ୍ଟ ତଥା ବିଶେଷ ପ୍ରକାର ଗୁଳ୍ମର ଛେଲିରୁ ପ୍ରସ୍ତୁତ କରାଯାଇଥିଲା । ସେହି ପାରମ୍ପରିକ ଖାଦ୍ୟ ଖାଇବାଦ୍ୱାରା ଶିଶୁ ସୁସ୍ଥସବଳ ରହେ ବୋଲି ବିଶ୍ୱାସ ରହିଛି । ଏହା ତାଙ୍କ କ୍ଷେତ୍ରରେ ନିଶ୍ଚିତ ଭାବରେ କାମ କରିଛି ବୋଲି ବର୍ତ୍ତମାନର ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ ନିଜର ଆତ୍ମଜୀବନୀରେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି । ସେ ବଡ଼ ହେବା ପରେ ସେରିଙ୍ଗ ତାଙ୍କୁ ଥରେ କହିଥିଲେ ଯେ, ପିଲାବେଳେ ସେ କୁଆଡ଼େ ଗୋଟେ ଅସନା ପିଲା (dirty baby) ଥିଲେ ଓ କୋଳକୁ ନେବାମାତ୍ରେ ଦୁଷ୍ଟାମି କରି ତାଙ୍କର ଲୁଗାପଟା ସବୁକୁ ଖରାପ କରିଦେଉଥିଲେ ।

ତେନ୍‌ଜିନ୍‌ଙ୍କ ଉପରେ ତିନିଜଣ ଭାଇ ଥିଲେ; ସେମାନେ ହେଲେ ଥୁପ୍‌ଟେନ୍ ଜିଗ୍‌ମି ନର୍ବୋ, ଗ୍ୟାଲୋ ଥୋଣ୍ଡୋପ୍ ଏବଂ ଲବ୍‌ସାଙ୍ଗ ସାମ୍‌ଟେନ୍ । ମାତ୍ର ପିଲାବେଳେ ତାଙ୍କର ଏହି ତିନିଭାଇଙ୍କ ସହିତ ସେମିତି କିଛି ବିଶେଷ ସମ୍ପର୍କ ନଥିଲା । ସେ ଖୁବ୍ କମ୍ ସମୟ ସେମାନଙ୍କ ସଂସ୍ପର୍ଶରେ ଆସିଥିଲେ । ଏପରି ହେବା ପଛରେ ମଧ୍ୟ ନିର୍ଦ୍ଦିଷ୍ଟ କାରଣସବୁ ରହିଥିଲା । ତାଙ୍କର ସବା ବଡ଼ଭାଇ ଥୁପ୍‌ଟେନ୍ ଜିଗ୍‌ମି ନର୍ବୋ ଜନ୍ମ ହେବାର ବହୁ ପୂର୍ବରୁ ଜଣେ ଉଚ୍ଚଶ୍ରେଣୀୟ ଲାମା 'ଟାକ୍‌ସେରା ରିନ୍‌ପୋଚି'ଙ୍କର ଅବତାର ଭାବରେ ସ୍ୱୀକୃତି ପାଇସାରିଥିଲେ ଏବଂ ଏକ ପ୍ରଖ୍ୟାତ ଆଶ୍ରମ କୁମ୍‌ବୁମ୍‌ଠାରେ ରହୁଥିଲେ । ଏହି ଆଶ୍ରମଟି ତାଙ୍କ ଘରଠାରୁ ଦୂରରେ ଅବସ୍ଥିତ ଥିଲା ଏବଂ ଘୋଡ଼ାରେ ଯାଇ ପହଞ୍ଚିବା ଲାଗି ବେଶ୍‌କିଛି ଘଣ୍ଟା ସମୟ ଲାଗୁଥିଲା । ଦ୍ୱିତୀୟ ଭାଇ ଗ୍ୟାଲୋ

ଥୋଣ୍ଡୋପ୍ ବୟସରେ ତାଙ୍କଠାରୁ ଆଠବର୍ଷ ବଡ଼ ଥିଲେ ଓ ସେ ସବୁବେଳେ ପଡ଼ୋଶୀ ଗ୍ରାମରେ ଥିବା ଏକ ସ୍କୁଲରେ ରହୁଥିଲେ। ସେହିପରି, ଲୁବ୍‌ସାଙ୍ଗ ସାମ୍‌ଟେନ୍‌ଙ୍କ ବୟସ ତାଙ୍କଠାରୁ ତିନିବର୍ଷ ଅଧିକ ଥିଲା। ତାଙ୍କୁ ମଧ୍ୟ ସନ୍ନ୍ୟାସୀ କରି କୁମ୍‌ବୁମ୍ ପଠାଇ ଦିଆଯାଇଥିଲା।

କୃଷି ତାଙ୍କ ପରିବାରର ମୁଖ୍ୟ ଜୀବିକା ଥିଲା। ପ୍ରତିଦିନ ତାଙ୍କ କ୍ଷେତରେ ଚାରି-ପାଞ୍ଚଜଣ ଶ୍ରମିକ କାମ କରୁଥିଲେ। ତେବେ ଅଧିକାଂଶ ସମୟରେ ତାଙ୍କର ବାପା, ମା' ତଥା ଭଉଣୀମାନଙ୍କୁ କାମ କରିବା ପାଇଁ କ୍ଷେତକୁ ଯିବାକୁ ପଡୁଥିଲା। ତାଙ୍କର ମା' କ୍ଷେତକୁ କାମ କରିବା ପାଇଁ ଯାଉଥିବାବେଳେ ତାଙ୍କୁ ତାଙ୍କ ପିଠିରେ ବାନ୍ଧି ବୋହି ନେଉଥିଲେ ଓ କାମ କରିବାବେଳେ କ୍ଷେତର ଗୋଟିଏ କୋଣରେ ଶୁଆଇ ଦେଇ ଖରାରୁ ରକ୍ଷା ପାଇବା ପାଇଁ ତାଙ୍କ ପାଖରେ ଗୋଟିଏ ଛତା ପୋତି ଦେଉଥିଲେ।

ପିଲାବେଳେ ତେନ୍‌ଜିନ୍ ଜଣେ ସାଧାରଣ ଶିଶୁ ଥିଲେ। ସେ ଯେ ଜାତସ୍ମର ଅଥବା ଦଲାଇ ଲାମାଙ୍କ ଅବତାର ତାହା ଜାଣି ହୋଇ ନଥିଲା। ଏମିତିକି ତାଙ୍କ ମା'ଙ୍କର ମଧ୍ୟ ଅତୀତ କିମ୍ବା ଭବିଷ୍ୟତ ସମ୍ପର୍କରେ କୌଣସି ଧାରଣା ନଥିଲା। ସେ ଅନ୍ୟ ପିଲାମାନଙ୍କ ଭଳି ନିଜର ପିଲାବେଳ କଟାଇଥିଲେ। ଥରେ ଦଳେ ପିଲା ପରସ୍ପର ମଧ୍ୟରେ ମାଡ଼ଗୋଳ ଲାଗୁଥିବାବେଳେ ସେ ଦୁର୍ବଳ ପକ୍ଷରେ ଯୋଗଦେଇ ଲଢ଼େଇ କରିଥିଲେ। ତାଙ୍କ ଘରେ ପ୍ରତିଦିନ ଗାଈ ଦୁହାଁ ହେଉଥିଲା। ତେନ୍‌ଜିନ୍ ଚାଲିଶିଖିବା ପରେ ଗୋଟେ ପାତ୍ର ଧରି ମା'ଙ୍କ ପଛେପଛେ ଯାଉଥିଲେ ଓ ତାଙ୍କର ମା' ଦୁହୁଁଥିବା ସଜକ୍ଷୀର ଆଣି ପିଉଥିଲେ। ତାଙ୍କର ଅନେକ କୁକୁଡ଼ା ଥିଲେ ଓ ସେ ସବୁବେଳେ କୁକୁଡ଼ା ଘର ଭିତରକୁ ପଶି ଅଣ୍ଡା ସଂଗ୍ରହ କରୁଥିଲେ। ବେଳେବେଳେ କୁକୁଡ଼ା ବାକ୍ସ ଭିତରେ ପଶି ମାଈ କୁକୁଡ଼ା ଭଳି ଅଣ୍ଡା ଉଷୁମାଉଥିଲେ ଏବଂ ଶବ୍ଦ କରୁଥିଲେ। ଜଣେ ଶିଶୁ ଭାବରେ ତାଙ୍କର ଆଉ ଏକ ଅତି ପ୍ରିୟ କାର୍ଯ୍ୟ ଥିଲା। ତାହା ହେଉଛି, ସେ ସବୁବେଳେ ବ୍ୟାଗ୍‌ରେ ଜିନିଷପତ୍ର ଭର୍ତ୍ତି କରୁଥିଲେ। ସତେଯେମିତି ତାଙ୍କର କୌଣସି ଏକ ଦୂରସ୍ଥାନକୁ ଯିବାପାଇଁ ଅଛି। ଖାଲି ଯେ ବ୍ୟାଗ୍ ସଜାଡୁଥିଲେ ସେକଥା ନୁହେଁ; ବଡ଼ ପାଟିରେ କହୁଥିଲେ, ମୁଁ ଲାସା ଯାଉଛି - ମୁଁ ଲାସା ଯାଉଛି। ସେ ସବୁବେଳେ ଟେବୁଲ୍‌ର ସମ୍ମୁଖଭାଗରେ ବସିବା ଲାଗି ଜିଦ୍ ଧରୁଥିଲେ। ସେହିଭଳି ସେ ତାଙ୍କର ଖାଇବା ପାତ୍ର ତାଙ୍କ ମା'ଙ୍କ ବ୍ୟତୀତ ଅନ୍ୟ କାହାରିକୁ ଧରିବା ପାଇଁ ଦେଉ ନଥିଲେ। ପିଲାବେଳୁ ତାଙ୍କର କାହାରି ପ୍ରତି ଭୟ ନଥିଲା।

ତେନ୍‌ଜିନ୍‌ଙ୍କ ପିଲାବେଳର ପାରିବାରିକ ଜୀବନ ଖୁବ୍ ସାଦାସିଧା ଥିଲା ଓ ପରିବାରରେ ସମସ୍ତେ ଶାନ୍ତିରେ ଜୀବନଯାପନ କରୁଥିଲେ । ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ ଗ୍ୟାତ୍‌ସୁଙ୍କର ପ୍ରଭାବ ତାଙ୍କ ପରିବାର ସମେତ ଅନ୍ୟାନ୍ୟ ପରିବାରକୁ ମଧ୍ୟ ଖୁବ୍ ପ୍ରଭାବିତ କରିଥିଲା । ସେମାନେ ବାସ କରୁଥିବା ପୂର୍ବାଞ୍ଚଳ ଜିଲ୍ଲା ଡୁଖାମ୍ ଚୀନ୍‌ର ଧର୍ମନିରପେକ୍ଷ ଶାସକଙ୍କ ଅଧୀନରେ ଥିଲେ ମଧ୍ୟ ବାସ୍ତବରେ ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ ଏହାର ଧାର୍ମିକ ନେତା (spiritual leader) ଥିଲେ । ସେଠାରେ ସେ ପାଖାପାଖି ବର୍ଷେ କାଳ ରହିଥିଲେ । ଫଳରେ ଲୋକମାନଙ୍କ ମଧ୍ୟରେ ତାଙ୍କର ପ୍ରଭାବ ସିଧାସଳଖ ପଡ଼ିଥିଲା । ଏକଦା ଲୋକମାନଙ୍କୁ ଉଦ୍‌ବୋଧନ ଦେଇ ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ କହିଥିଲେ, ଏହି ଅଞ୍ଚଳର ଆଧ୍ୟାତ୍ମିକ ତଥା ଧର୍ମନିରପେକ୍ଷ ପ୍ରଶାସନର ଦାୟିତ୍ୱ ନେବା ପରଠୁ ତାଙ୍କର ବିଶ୍ରାମ ନାହିଁ । ଲୋକମାନେ କିଭଳି ଦୁଃଖରୁ ମୁକ୍ତ ହେବେ, ନ୍ୟାୟ ପାଇବେ ଏବଂ ଶାନ୍ତିରେ ଜୀବନ ବିତାଇବେ ସେ କେବଳ ସେହି ବିଷୟରେ ହିଁ ଚିନ୍ତାମଗ୍ନ ରହୁଛନ୍ତି । ବାସ୍ତବରେ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଡୁଖାମ୍ ଅଞ୍ଚଳର ଲୋକମାନେ ବେଶ୍ ସୁଖଶାନ୍ତିରେ କାଳାତିପାତ କରୁଥିଲେ । ସେମାନଙ୍କର ଆର୍ଥିକ ସମୃଦ୍ଧି ମଧ୍ୟ ଘଟିଥିଲା ।



# (୩) ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ସନ୍ଧାନ

୧୯୩୩ ମସିହାରେ ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ ଗ୍ୟାଟ୍‌ସୁଙ୍କ ଦେହାନ୍ତ ହେଲା । ସେତେବେଳେ ତିବ୍‌ବତୀୟ ପଞ୍ଜିକାରେ ଜଳପକ୍ଷୀ ବର୍ଷ (water bird year) ଚାଲିଥାଏ । ତ୍ରୟୋଦଶ ଦଲାଇ ଲାମାଙ୍କର ମୃତ୍ୟୁ ଖବର ଚାହୁଁଚାହୁଁ ଚାରିଆଡ଼େ ବ୍ୟାପିଗଲା । ତାଙ୍କର ମୃତ୍ୟୁ ଖବରରେ ତିବ୍‌ବତର ଘରେଘରେ ଶୋକର ଛାୟା ଖେଳିଗଲା । କାରଣ ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ ତିବ୍‌ବତବାସୀଙ୍କୁ ସୁଖଶାନ୍ତିରେ ରଖିବା ଲାଗି ଅନେକ ଭଲ କାମ କରିଥିଲେ । କୁମ୍‌ବୁମ୍‌ଠାରେ ତାଙ୍କର ଏକ ଆଶ୍ରମ ଥିଲା । ତାଙ୍କ ଯୋଗୁଁ ତିବ୍‌ବତର ଜନସାଧାରଣ ବହୁ ସୁଖସୁବିଧାରେ ରହୁଥିଲେ । ତ୍ରୟୋଦଶ ଦଲାଇ ଲାମାଙ୍କୁ ଶ୍ରଦ୍ଧାଞ୍ଜଳି ପ୍ରଦାନ କରିବାପାଇଁ ତିବ୍‌ବତବାସୀ ଏକ ସୁବର୍ଣ୍ଣର ସ୍ମୃତିସ୍ତମ୍ଭ ନିର୍ମାଣ କରିବାକୁ ନିଷ୍ପତ୍ତି ନେଲେ । ତିବ୍‌ବତର ରାଜଧାନୀ ଲାସାଠାରେ ଥିବା ପୋଟାଲା ରାଜପ୍ରାସାଦ ଭିତରେ ତ୍ରୟୋଦଶ ଦଲାଇ ଲାମାଙ୍କ ସମ୍ମାନାର୍ଥେ ଏହି ସ୍ମୃତିସ୍ତମ୍ଭ ନିର୍ମାଣ କରାଗଲା ।

ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍‌ଙ୍କ ଦେହାନ୍ତ ପରେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କର ସନ୍ଧାନ ଅନିବାର୍ଯ୍ୟ ହୋଇପଡ଼ିଲା । ସେ କେଉଁଠି ନୂତନ ଦେହ ଧରି ଆବିର୍ଭାବ ହେବେ ବା ହୋଇଛନ୍ତି ସେହି ବିଷୟ ନେଇ ଚାରିଆଡ଼େ ଆଲୋଚନା ଆରମ୍ଭ ହୋଇଗଲା । ତିବ୍‌ବତୀୟମାନଙ୍କର ବିଶ୍ୱାସ ଯେ, ଦଲାଇ ଲାମା କେବଳ ଦେହତ୍ୟାଗ କରନ୍ତି । ସେ ପୁରୁଣା ଶରୀର ଛାଡ଼ି ଆଉ ଏକ ନୂଆ ଶରୀରରେ ପ୍ରବେଶ କରିଥାନ୍ତି । ପ୍ରଥମ ଦଲାଇ ଲାମାଙ୍କ ଜନ୍ମ ୧୩୫୧ ମସିହାରେ ହୋଇଥିଲା ଓ ସେ ଅବଲୋକିତେଶ୍ୱର ବୁଦ୍ଧଙ୍କର ଜଣେ ଅବତାର ଥିଲେ । ତାଙ୍କୁ ତିବ୍‌ବତୀୟ ଭାଷାରେ ଚେନ୍‌ରେସୀ (Chenresi) ବୋଲି କୁହାଯାଉଥିଲା ଯାହାର ଅର୍ଥ କରୁଣାମୟ ବୁଦ୍ଧ ବା Buddha of Mercy । ସେବେଠାରୁ ସେ ଅବତାର ଗ୍ରହଣ କରିଆସୁଛନ୍ତି ।

ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ସନ୍ଧାନ ବିଷୟ ବର୍ଣ୍ଣନା କରାଯିବା ପୂର୍ବରୁ ତିବ୍‌ବତରେ ବୌଦ୍ଧଧର୍ମର ଇତିହାସ ସମ୍ପର୍କରେ ସାମାନ୍ୟ ସୂଚନା ଦେବା ଉଚିତ ହେବ । ବୌଦ୍ଧଧର୍ମର

ପ୍ରବର୍ତ୍ତକ ଶାକ୍ୟମୁନି ସିଦ୍ଧାର୍ଥଙ୍କର ଜନ୍ମ ୨୫୭୫ ବର୍ଷ ପୂର୍ବେ ହୋଇଥିଲା। ତାଙ୍କରି ଶିକ୍ଷାକୁ ସମଗ୍ର ବିଶ୍ୱରେ ବୌଦ୍ଧଧର୍ମ ଭାବରେ ଗ୍ରହଣ କରାଯାଇଛି। ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ ସେହି ଧର୍ମ ତିବ୍‌ବତରେ ପ୍ରବେଶ କରିଥିଲା। ଅବଶ୍ୟ ଏହି ଧର୍ମକୁ ଗ୍ରହଣ କରିବାପାଇଁ ସେଠିକାର ଲୋକମାନଙ୍କୁ ବେଶ୍ କିଛିବର୍ଷ ଲାଗିଯାଇଥିଲା। ମାତ୍ର ପରିଶେଷରେ ତିବ୍‌ବତର ସମସ୍ତ ଜନସାଧାରଣ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ। ତିବ୍‌ବତୀୟମାନେ ଖୁବ୍ ବଳଶାଳୀ ଓ ଯୁଦ୍ଧଖୋର ପ୍ରବୃତ୍ତିର ଲୋକ ଥିଲେ। ସେମାନଙ୍କର ଏକ ବିଶାଳ ସାମ୍ରାଜ୍ୟ ଥିଲା ଓ ତାହାର ସୀମା ଉତ୍ତର-ଭାରତଠାରୁ ଆରମ୍ଭ କରି ଦକ୍ଷିଣରେ ନେପାଳ, ଭୁଟାନ୍ ଏଭଳିକି ଚୀନ୍‌ର କେତେକ ଅଞ୍ଚଳକୁ ପରିବ୍ୟାପ୍ତ ହୋଇଥିଲା। ସମୟ ଥିଲା ଯେତେବେଳେ ତିବ୍‌ବତର ଲଢୁଆ ସୈନିକମାନେ ଚୀନ୍‌ର ରାଜଧାନୀକୁ ଅକ୍ତିଆର କରିନେଇଥିଲେ। କିନ୍ତୁ ସେମାନଙ୍କ ମଧ୍ୟରେ ଧୀରେ ଧୀରେ ବୌଦ୍ଧଧର୍ମ ପ୍ରତି ମଧ୍ୟ ଆକର୍ଷଣ ସୃଷ୍ଟିହେବାରୁ ସେମାନେ ଏହି ଧର୍ମ ଦ୍ୱାରା ପ୍ରଭାବିତ ହୋଇ ସେମାନଙ୍କର ପଡ଼ୋଶୀ ରାଜ୍ୟମାନଙ୍କ ସହିତ ରାଜନୈତିକ ସମ୍ପର୍କ ସ୍ଥାପନ କରିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ସମ୍ପର୍କ ମଧ୍ୟ ସ୍ଥାପନ କରିବାକୁ ଲାଗିଲେ। ଯେଉଁ ସମୟରେ ତିବ୍‌ବତରେ ବୌଦ୍ଧଧର୍ମ ପ୍ରତି ଆଦର ବଢୁଥିଲା ଠିକ୍ ସେହି ସମୟରେ ଚୀନ୍‌ର ଅଧିବାସୀମାନେ ମଧ୍ୟ ବୌଦ୍ଧଧର୍ମକୁ ଭଲପାଇବା ଆରମ୍ଭ କରିଦେଇଥିଲେ। ପରିସ୍ଥିତି ଏଭଳି ହୋଇଥିଲା ଯେ, ବୌଦ୍ଧଧର୍ମରେ ଦୀକ୍ଷିତ ଚୀନ୍‌ର ମାଞ୍ଚୁ ସମ୍ରାଟ୍‌ମାନେ (The Manchu Emperors) ଦଲାଇ ଲାମାଙ୍କୁ ବୌଦ୍ଧଧର୍ମ ପରିପ୍ରକାଶର ରାଜା ବା King of Expounding Buddhism ଭାବରେ ବିବେଚନା କରିଥିଲେ।

ବୌଦ୍ଧଧର୍ମ ସହିତ ତିବ୍‌ବତର ସମ୍ପର୍କ ଏବଂ ତିବ୍‌ବତୀୟ ଧର୍ମଗୁରୁ ଦଲାଇ ଲାମାଙ୍କର ବୌଦ୍ଧ ଅବତାର ସମ୍ପର୍କିତ ଧାରଣା ଏଥିରୁ ଖୁବ୍ ସହଜରେ ଏବଂ ସ୍ପଷ୍ଟ ଭାବରେ ଅନୁମାନ କରାଯାଇପାରେ। ସେହି କାରଣରୁ ତ୍ରୟୋଦଶ ଦଲାଇ ଲାମାଙ୍କ ଦେହାନ୍ତ ପରେ ତାଙ୍କର ପରବର୍ତ୍ତୀ ଅବତାରକୁ ଖୋଜି ବାହାର କରିବା ପ୍ରକ୍ରିୟା ଜୋର୍‌ସୋରରେ ଆରମ୍ଭ ହୋଇଗଲା। ତେବେ ନୂତନ ଦଲାଇ ଲାମାଙ୍କୁ ପାଇବା ପର୍ଯ୍ୟନ୍ତ ଦେଶକୁ ଶାନ୍ତିପୂର୍ଣ୍ଣ ଭାବରେ ପରିଚାଳିତ କରିବାପାଇଁ ନ୍ୟାସନାଲ ଆସେମ୍ବ୍ଲିଦ୍ୱାରା ଏକ ରିଜେଣ୍ଟ (Regent) ବା ସାମୟିକ ପ୍ରତିନିଧି ନିଯୁକ୍ତ କରାଗଲା। ନୂତନ ଦଲାଇ ଲାମାଙ୍କୁ ଖୋଜି ବାହାର କରିବା ଏବଂ ସେ ସାବାଳକ ହୋଇ ଶାସନଭାର ଗ୍ରହଣ

କରିବା ପର୍ଯ୍ୟନ୍ତ ଏହି ପ୍ରତିନିଧି (Regent) ତିବ୍‌ବତର ଶାସନଭାର ଚଳାଇବେ ବୋଲି ନିଷ୍ପତ୍ତି ନିଆଯାଇଥିଲା । ଦେଶର ଭବିଷ୍ୟଦ୍ରଷ୍ଟା ଏବଂ ଜ୍ଞାନୀ ଲାମାଙ୍କ ମଧ୍ୟରେ ନୂତନ ଦଲାଇ ଲାମାଙ୍କ ସନ୍ଧାନ ନେଇ ବିଚାର ବିମର୍ଶ ଆରମ୍ଭ ହୋଇଗଲା । ଭବିଷ୍ୟ ବକ୍ତାମାନେ ଲାସାର ଆକାଶକୁ ନିରୀକ୍ଷଣ କରି ସଙ୍କେତ ଖୋଜିବାର ପ୍ରୟାସ କଲେ । ଏହି ସମୟରେ ଲାସାର ଉତ୍ତର-ପୂର୍ବ ଆକାଶରେ କୌତୂହଳପୂର୍ଣ୍ଣ ଚିତ୍ରିତ ମେଘଖଣ୍ଡମାନ ଜମାଟ ବାନ୍ଧିବାକୁ ଲାଗିଲେ । ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍ ଗ୍ୟାତ୍‌ସୁଙ୍କ ମର ଶରୀରକୁ ନର୍ବୁଲିଙ୍ଗ୍‌କା (Norbulingka) ସ୍ଥିତ ରାଜ ସିଂହାସନରେ ଦକ୍ଷିଣମୁହାଁ କରି ରଖାଯାଇଥିଲା । 'ନର୍ବୁଲିଙ୍ଗ୍‌କା' ହେଉଛି ଦଲାଇ ଲାମାଙ୍କର ଗ୍ରୀଷ୍ମକାଳୀନ ଆଶ୍ରମ । ମାତ୍ର କିଛିଦିନ ପରେ ଦେଖିବାକୁ ମିଳିଲା ଯେ, ତ୍ରୟୋଦଶ ଦଲାଇ ଲାମାଙ୍କ ମୁହଁ ପୂର୍ବ ଆଡ଼କୁ ବୁଲିଯାଇଛି । ସେତିକି ନୁହେଁ; ତ୍ରୟୋଦଶ ଦଲାଇ ଲାମାଙ୍କ ମରଶରୀର ଥିବା ଗୃହର ଏକ କାଠସ୍ତମ୍ଭରେ ତାରା ଆକୃତିର କିଛି ଛତୁ (starshapped fungus) ଫୁଟି ଉଠିଥିଲା । ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ସନ୍ଧାନ ପାଇବା ପାଇଁ ଏହିସବୁ ଗୋଟିଏ ଗୋଟିଏ ଶକ୍ତିଶାଳୀ ସଙ୍କେତ ଥିଲା । ଭବିଷ୍ୟଦ୍ରଷ୍ଟା ତଥା ଜ୍ଞାନୀ ଲାମାମାନେ ନିଶ୍ଚିତ ହୋଇଗଲେ ଯେ, ଚତୁର୍ଦ୍ଦଶ ଦଲାଇ ଲାମା ଲାସାର ଉତ୍ତର-ପୂର୍ବରେ କୋଉଠି ନା କୋଉଠି ଜନ୍ମଗ୍ରହଣ କରିବେ ।

ଏହା ମଧ୍ୟରେ ତିନିବର୍ଷ ଅତିକ୍ରାନ୍ତ ହୋଇଗଲା । ୧୯୩୫ ମସିହାରେ ତିବ୍‌ବତରେ ଉଡ୍ ହଗ୍ ବର୍ଷ (Wood Hog Year) ଚାଲିଥାଏ । ତିବ୍‌ବତର ଅସ୍ଥାୟୀ ପ୍ରଶାସନ ଦାୟିତ୍ୱରେ ଥିବା 'ରିଜେଣ୍ଟ୍' ବା ପ୍ରତିନିଧି ଲାସାର ୯୦ ମାଇଲ୍ ଦକ୍ଷିଣ-ପୂର୍ବାଞ୍ଚଳ ସ୍ଥାନ ଚୋଖୋରଗ୍ୟାଲ୍ (Chokhorgyal)ଠାରେ ଥିବା ପବିତ୍ର ହ୍ରଦ ଲାମୋଇ ଲାତ୍ସୁ (Lhamoi Latso) ନିକଟକୁ ଗଲେ । ସେଠାରେ କିଛିଦିନ ପୂଜା, ପ୍ରାର୍ଥନା, ଧ୍ୟାନରେ କଟିଲା । ଶେଷରେ ଦିନେ ହ୍ରଦ ମଧ୍ୟରୁ ରିଜେଣ୍ଟଙ୍କୁ ତିବ୍‌ବତ ଭାଷାର ତିନିଗୋଟି ବର୍ଣ୍ଣମାଳା ବା ଅକ୍ଷର ଦେଖିବାକୁ ମିଳିଲା । ସେହି ତିନିଗୋଟି ଅକ୍ଷର ଥିଲା Ab, Ka ଏବଂ Ma । ଏଥିସହିତ ତାଙ୍କୁ ଗୋଟିଏ ଘରର ଚିତ୍ର ମଧ୍ୟ ପରିଦୃଶ୍ୟ ହେଲା ଯାହାର ଛାତ ଟାଇଲି ଛପର ଥିଲା ଓ ସେଥିରେ ଜଳ ନିଷ୍କାସନ ପାଇଁ ସ୍ୱତନ୍ତ୍ର ଧରଣର ନଳାର ବ୍ୟବସ୍ଥା କରାଯାଇଥିଲା । ଏହି ଅକ୍ଷର ଏବଂ ଦୃଶ୍ୟକୁ ଅତ୍ୟନ୍ତ ସତର୍କତାର ସହିତ ଲିପିବଦ୍ଧ କରାଯାଇ ଗୋପନରେ ରଖାଗଲା । ଏହାର ପରବର୍ଷ ଅର୍ଥାତ୍ ୧୯୩୬

ମସିହାରେ ନୂତନ ଦଲାଇ ଲାମାଙ୍କୁ ଖୋଜିବା ପ୍ରକ୍ରିୟା ବିଧିବଦ୍ଧ ଭାବରେ ଆରମ୍ଭ ହେଲା। ଲାମୋଇ ଲାସୁର ପବିତ୍ର ହ୍ରଦରେ ରିଜେଣ୍ଟ ଯେଉଁ ଅକ୍ଷର ଏବଂ ଘରର ଚିତ୍ର ଦେଖିଥିଲେ ତାହାକୁ ସାଥିରେ ଧରି କିଛି ଜ୍ଞାନୀ ତଥା ଅଭିଜ୍ଞ ଲାମା ଚତୁର୍ଦ୍ଦଶ ଦଲାଇ ଲାମାଙ୍କର ସନ୍ଧାନ କରିବା ପାଇଁ ତିବ୍ବତର ବିଭିନ୍ନ ଅଞ୍ଚଳକୁ ବାହାରିଗଲେ।

ଚତୁର୍ଦ୍ଦଶ ଦଲାଇ ଲାମାଙ୍କର ସନ୍ଧାନ ପାଇଁ ପୂର୍ବଦିଗକୁ ଯାତ୍ରା କରିଥିବା ବିଜ୍ଞ ଲୋକମାନେ ଆସି ଡୁଖାମ୍‌ରେ ପହଞ୍ଚିଲେ। ଡୁଖାମରେ ସେତେବେଳେ ଶୀତଋତୁ ଚାଲିଥାଏ। ଏହି ସରକାରୀ ଅନ୍ୱେଷଣକାରୀ ଦଳ ଆସି କୁମ୍‌ବୁମ୍‌ର ଆଶ୍ରମକୁ ଦେଖି ଆନନ୍ଦିତ ହୋଇଗଲେ। କାରଣ ସେମାନଙ୍କର ହୃଦ୍‌ବୋଧ ହୋଇସାରିଥିଲା ଯେ, ସେମାନେ ଠିକ୍ ଦିଗରେ ଆସିଛନ୍ତି। ସେମାନେ ଲାମୋଇ ଲାସୁ ହ୍ରଦର ଜଳରେ ତିନିଗୋଟି ତିବ୍ବତୀୟ ବର୍ଣ୍ଣମାଳା ଭାସୁଥିବା ଦେଖିବାକୁ ପାଇଥିଲେ। ସେଥିମଧ୍ୟରୁ ଗୋଟିଏ ଥିଲା Ab। ସେମାନେ ଧରିନେଲେ ଯେ, Ab ବର୍ଣ୍ଣମାଳା ହେଉଛି 'ଆମଡୋର'ର ପ୍ରତୀକ। ସେହିଭଳି ଅନ୍ୟ ଏକ ବର୍ଣ୍ଣମାଳା ଥିଲା Ka। ସେମାନେ ଭାବିଲେ Ka ହିଁ କୁମ୍‌ବୁମ୍ ଆଶ୍ରମର ସୂଚନା ଦେଉଥିଲା। ଆଶ୍ରମଟି ଥିଲା ତିନିମହଲା ବିଶିଷ୍ଟ ଏବଂ ଏହାର ଛାତ ଗମ୍ବୁଜାକାର ହୋଇ ତିଆରି ହୋଇଥିଲା। ଏସବୁ ଯେ ସେମାନଙ୍କର ଚତୁର୍ଦ୍ଦଶ ଦଲାଇ ଲାମାଙ୍କୁ ଖୋଜି ପାଇବା ପାଇଁ ଗୋଟିଏ ଗୋଟିଏ ଶୁଭ ସଙ୍କେତ; ଏକଥାରେ ସେମାନଙ୍କର ଆଉ କୌଣସି ସନ୍ଦେହ ରହିଲାନାହିଁ। ସେମାନଙ୍କର ଆଉ ଗୋଟିଏ ଆବଶ୍ୟକତା ପୂରଣ ହେବା ପାଇଁ ବାକି ରହିଥିଲା, ଯାହା ହେଉଛି ଗୋଟିଏ ପାହାଡ଼ ଏବଂ ଏକ ସ୍ୱତନ୍ତ୍ର ଧରଣର ଜଳ ନିଷ୍କାସନ ନଳା ଥିବା ଗୋଟିଏ ଘର। ସେହି ସରକାରୀ ଅନୁସନ୍ଧାନକାରୀ ଦଳର ନେତା ଆଉ ସାମାନ୍ୟ ବିଳମ୍ବ ନକରି ଆଖପାଖ ଗ୍ରାମରେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କୁ ଖୋଜିବା ଆରମ୍ଭ କରିଦେଲେ। ସେମାନେ ଲୋକମାନଙ୍କୁ ପଚାରିଲେ ଯେ, ବହୁ ସନ୍ତାନସନ୍ତତି ଥିବା ପରିବାର ସେ ଅଞ୍ଚଳରେ ରହୁଛନ୍ତି କି ? ସେମାନଙ୍କୁ ଜଣେ ସୂଚନା ଦେଲେ ଯେ, ଟାକ୍‌ସେର୍‌ରେ ସେମିତି ଗୋଟିଏ ଚାଷୀ ପରିବାର ରହିଛି। ସେହି ପରିବାରରେ ଦୁଇବର୍ଷର ଶିଶୁଟିଏ ମଧ୍ୟ ରହିଛି। ଏହା ଶୁଣି ସେମାନେ ଆଉ କାଳବିଳମ୍ବ ନକରି ଟାକ୍‌ସେର୍ ଯାତ୍ରା କଲେ।

ଟାକ୍‌ସେର୍‌ରେ ପହଞ୍ଚିବା ପରେ ସେମାନେ ଲାମୋଇ ଲାସୁ ହ୍ରଦର ଜଳରେ ଦେଖିଥିବା ଘରର ଚିତ୍ର ସହିତ ବହୁ ସାମଞ୍ଜସ୍ୟ ଥିବା ଏକ ଘର ନିକଟରେ ପହଞ୍ଚିଲେ। ସେହି ଘରର ଛାତ ଉପରେ କଣ୍ଟାପୂର୍ଣ୍ଣ ପତ୍ର ଥିବା ଗୁଳ୍ମର ଡାଳ ରହିଥିଲା। ପାଖରେ ଏକ ପାହାଡ଼ ଥିଲା। ପୁଣି ଘରର ପାଣି ନିଷ୍କାସନ କରିବା ପାଇଁ ସ୍ୱତନ୍ତ୍ର ନାଳର ବ୍ୟବସ୍ଥା ରହିଥିଲା। ଏହା ଦେଖି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ। ନୂତନ ଦଲାଇ ଲାମାଙ୍କୁ ଠାବ କରିବା ଯେ ବେଶୀ କଷ୍ଟଦାୟକ ହେବ ନାହିଁ ଏକଥା ସେମାନେ ନିଶ୍ଚିତ ହୋଇଗଲେ। ଏହାସତ୍ତ୍ୱେ ସେମାନେ ନିଜ ନିଜର ପରିଚୟ ଗୋପନ ରଖିବାକୁ ସ୍ଥିରକରି ଛଦ୍ମବେଶ ଧାରଣ କରି ସେହି ଘରକୁ ଯାଇ ଗୃହକର୍ତ୍ତା ଏବଂ ତାଙ୍କର ପିଲାମାନଙ୍କ ସହିତ ମିଳାମିଶା କରିବାକୁ ଉଚିତ ମନେକଲେ। ସେମାନେ ଦଳେ ସାଧାରଣ ପରିଭ୍ରମଣକାରୀ ବୋଲି ନିଜର ପରିଚୟ ପ୍ରଦାନ କଲେ ଏବଂ ଗୋଟିଏ ରାତି ସେଠାରେ ରହିବା ପାଇଁ ଅନୁରୋଧ କଲେ। ଲୋସାଙ୍ଗ ସେୱାଙ୍ଗ (Losang Tsewang) ନାମକ ଦଳର ଜଣେ କନିଷ୍ଠ ଆଶ୍ରମ ଅଧିକାରୀ (Monastic Official) ନିଜକୁ ଦଳର ମୁଖ୍ୟ ଭାବରେ ପରିଚୟ ଦେଇଥିବା ବେଳେ ଦଳର ପ୍ରକୃତ ନେତା ତଥା ପ୍ରଖ୍ୟାତ ସେରା ଆଶ୍ରମର ସନ୍ନ୍ୟାସୀ ଲାମା ବା ସଂକ୍ଷେପରେ ସେରାଲାମା କେଓସାଙ୍ଗ ରିନ୍‌ପୋଚି (Kewtsang Rinpoche) ନିଜକୁ ଜଣେ ପରିଚାରକ ବେଶରେ ସଜେଇଥିଲେ।

ଗୃହସ୍ୱାମୀ ଫାଟକ ନିକଟରୁ ଲୋସାଙ୍ଗଙ୍କ ସମେତ ଅନ୍ୟାନ୍ୟ ଅତିଥିମାନଙ୍କୁ ଅତି ଆନନ୍ଦ ମନରେ ଘର ଭିତରକୁ ପାଛୋଟି ନେଲେ। ତେବେ ଲୋସାଙ୍ଗଙ୍କୁ ନେତା ମନେକରି ସେମାନେ ତାଙ୍କୁ ମୁଖ୍ୟ ଘର ଭିତରେ ରଖାଇଥିବା ବେଳେ ଅନ୍ୟମାନଙ୍କୁ ପରିଚାରକଙ୍କ ନିମନ୍ତେ ଉଦ୍ଦିଷ୍ଟ ଗୃହରେ ରଖାଇଥିଲେ। ସନ୍ଧ୍ୟାବେଳେ ସେମାନେ ସେହି ଘରର ପିଲାମାନଙ୍କ ସହିତ ଖେଳିବାରେ ଲାଗିଗଲେ ଓ ଅତ୍ୟନ୍ତ ସତର୍କତାର ସହିତ ପରିବାରର ସବୁଠୁ ସାନପିଲାଟି ସହିତ ମିଳାମିଶା କଲେ। ଅତ୍ୟନ୍ତ କୌତୂହଳର ବିଷୟ, ସାନପିଲାଟି ଲାମା କେଓସାଙ୍ଗ୍ ରିନ୍‌ପୋଚିଙ୍କୁ ଦେଖିବା ମାତ୍ରେ ତାଙ୍କ ନିକଟକୁ ଚାଲିଗଲା ଓ ତାଙ୍କ କୋଳରେ ବସିବା ଲାଗି ଇଚ୍ଛା ପ୍ରକାଶ କଲା। ଲାମା ଅତି ଚତୁରତାର ସହିତ ନିଜକୁ ଛଦ୍ମବେଶରେ ସଜାଇଥିଲେ ମଧ୍ୟ ପିଲାଟି ତାଙ୍କ ସହିତ ଖୁବ୍ ସହଜରେ ମିଶିଗଲା ଓ ଚିହ୍ନିପାରିବା ଭଳି 'ସେରା-ଆଗା', 'ସେରା-ଆଗା' ବୋଲି ପାଟିକଲା। ଏଠାରେ

ସୂଚନାଯୋଗ୍ୟ ଯେ, ସ୍ଥାନୀୟ ଭାଷାରେ ସେରା-ଆଗା (Sera-Aga)ର ଅର୍ଥ ହେଉଛି ସେରାର ଲାମା (Lama of Sera)। ବାସ୍ତବରେ ଲାମା କେଓସାଙ୍ଗ ରିନ୍‌ପୋଚି ହିଁ ସେରା ଆଶ୍ରମର ଲାମା ଥିଲେ। ତା' ପରଦିନ ସେମାନେ ଫେରିଗଲେ। ମାତ୍ର ଅଳ୍ପ କିଛିଦିନର ବ୍ୟବଧାନ ପରେ ସେମାନେ ପୁଣିଥରେ ସେହି ଘରକୁ ଫେରିଆସିଲେ। ଏଥର ସେମାନେ ଔପଚାରିକ ଭାବରେ ଆସିଥିଲେ ଓ ପୂର୍ବତନ ଅର୍ଥାତ୍ ତ୍ରୟୋଦଶ ଦଲାଇ ଲାମା ଥୁପ୍‌ଟେନ୍‌ଙ୍କର କେତେକ ବ୍ୟକ୍ତିଗତ ସାମଗ୍ରୀ ସାଥିରେ ନେଇ ଆସିଥିଲେ। ପିଲାଟି ଯେତେବେଳେ ସେହିସବୁକୁ ଦେଖିଲା ସେତେବେଳେ 'ଏସବୁ ମୋର, ଏସବୁ ମୋର' ବୋଲି କହି ଚିତ୍କାର କରିବାକୁ ଲାଗିଲା। ତ୍ରୟୋଦଶ ଦଲାଇ ଲାମାଙ୍କ ପ୍ରତ୍ୟେକ ଜିନିଷକୁ ପିଲାଟି ଠିକ୍‌ଠିକ୍ ଚିହ୍ନଟ କରିଥିଲା। ଏଥିରୁ ଅନୁସନ୍ଧାନକାରୀ ଦଳ ନିଶ୍ଚିତ ହୋଇଗଲେ ଏବଂ ସେମାନଙ୍କର ହୃଦ୍‌ବୋଧ ହେଲା ଯେ, ସେମାନେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କୁ ଠାବ କରିବାରେ ସଫଳ ହୋଇଛନ୍ତି। ସେଦିନର ସେହି ପିଲାଟି ଆଉ କେହି ନୁହେଁ, ବର୍ତ୍ତମାନର ମହାମାନ୍ୟ ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ।

ସେମାନେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ସନ୍ଧାନ ପାଇଥିବା ଖବର ଟେଲିଗ୍ରାମ୍ ଯୋଗେ ଲାସାକୁ ପଠାଇଦେଲେ। ତେବେ ଦଲାଇ ଲାମା ଭାବରେ ଚିହ୍ନଟ ହୋଇଥିବା ପିଲାଟିକୁ ଲାସାର ଆଶ୍ରମକୁ ନେବା ସନ୍ଧାନକାରୀ ଦଳଙ୍କ ପାଇଁ ବହୁ କଷ୍ଟସାଧ ବ୍ୟାପାର ଥିଲା। କାରଣ ତେନ୍‌ଜିନ୍ ଗ୍ୟାତ୍‌ସୁ ତିବ୍‌ବତର ଯେଉଁ ଉତ୍ତର-ପୂର୍ବାଞ୍ଚଳରେ ଜନ୍ମ ହୋଇଥିଲେ ସେହି ଅଞ୍ଚଳଟି ଚୀନ୍ ସରକାରଙ୍କ କର୍ତ୍ତୃତ୍ୱାଧୀନ ଥିଲା। ତେଣୁ ସେହି ଅଞ୍ଚଳରୁ କୌଣସି ପିଲାଙ୍କୁ ଅନ୍ୟତ୍ର ନେବାକୁ ହେଲେ ସେଠାକାର ଲାଟ୍ ସାହେବ୍ (Local Governor)ଙ୍କୁ ଜଣାଇବା ପ୍ରଥମ କାର୍ଯ୍ୟ ଥିଲା। ମା ବୁଫେଙ୍ଗ୍ ନାମକ ଜଣେ ମୁସ୍‌ଲିମ୍ ଶାସକ ସେତେବେଳେ ସେହି ଅଞ୍ଚଳର ଲାଟ୍ ସାହେବ୍ ଥିଲେ। ଅନୁସନ୍ଧାନକାରୀ ଦଳର ଆଶଙ୍କା କରୁଥିଲେ ଯେ, ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କୁ ଲାସା ନେବାରେ ମା ବୁଫେଙ୍ଗ୍ କିଛି ନା କିଛି ବିଘ୍ନ ଘଟାଇବେ। ଆଉ ସତକୁସତ ତାହା ହିଁ ହେଲା। ସେ ପୁନଶ୍ଚ ଦଲାଇ ଲାମାଙ୍କ ଅବତାରକୁ ନିଜେ ପରୀକ୍ଷା କରିବାକୁ ଇଚ୍ଛା ପ୍ରକାଶ କଲେ। ଅନୁସନ୍ଧାନକାରୀ ଦଳ ତାଙ୍କ ନିକଟରେ ସତ୍ୟ ଗୋପନ କରି କହିଥିଲେ ଯେ, ଏ ପର୍ଯ୍ୟନ୍ତ ଚୂଡ଼ାନ୍ତ ଦଲାଇ ଲାମାଙ୍କର ସନ୍ଧାନ ସେମାନେ ପାଇ ନାହାନ୍ତି। ବରଂ କେତେକ ପିଲାଙ୍କ ମଧ୍ୟରେ ବାସ୍ତବ ଦଲାଇ ଲାମା ଥିବାର ଅନୁମାନ କରୁଛନ୍ତି। ଏପରି

କହିବାର କାରଣ- ଅନୁସନ୍ଧାନକାରୀ ଦଳ ଭଲଭାବରେ ଜାଣିଥିଲେ ଯେ, ମା ବୁଫେଙ୍ଗ୍ ଜଣେ ଅର୍ଥଲୋଭୀ ମଣିଷ। ସେ କେବେହେଲେ ସହଜରେ ସେମାନଙ୍କର ଚୂଡ଼ାନ୍ତ ଦଲାଇ ଲାମାଙ୍କୁ ଲାସାକୁ ନେଇଯିବା ଲାଗି ଅନୁମତି ଦେବେ ନାହିଁ।

ମା ବୁଫେଙ୍ଗ୍‌ଙ୍କ ପରୀକ୍ଷା ପାଇଁ ଅନୁସନ୍ଧାନକାରୀ ଦଳ ତେନ୍‌ଜିନ୍‌ଙ୍କ ସମେତ ଏକାଧିକ ବାଳକଙ୍କୁ ଆଣି ତାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ। ମା ବୁଫେଙ୍ଗ୍ ସମସ୍ତଙ୍କୁ ଗୋଟିଏ ଗୋଟିଏ ମିଠା ପ୍ୟାକେଟ୍ ପ୍ରଦାନ କଲେ। କେତେକ ପିଲା ଏତେ ଡରି ଯାଇଥିଲେ ଯେ, ପ୍ୟାକେଟ୍‌ରୁ ମିଠା ନେଇ ଖାଇବା ପାଇଁ ମଧ୍ୟ ସାହସ କଲେ ନାହିଁ। ଆଉ କିଛି ପିଲା ଲୋଭରେ ଯେତେ ଅଧିକ ସମ୍ଭବ ସେତେ ଅଧିକ ମିଠା ଉଠେଇନେଇ ଖାଇଗଲେ। ମାତ୍ର ତେନ୍‌ଜିନ୍ ଗୋଟିଏ ମିଠା ନେଇ ଖୁବ୍ ରୁଚିବନ୍ତ ଭାବରେ ତାକୁ ଖାଇଲେ। ଏହାପରେ ମା ବୁଫେଙ୍ଗ୍ ସମସ୍ତଙ୍କୁ କିଛିକିଛି ପ୍ରଶ୍ନ ପଚାରିଲେ। ଶେଷରେ ତେନ୍‌ଜିନ୍ ହିଁ ସମ୍ଭାବ୍ୟ ଦଲାଇ ଲାମା ହୋଇପାରନ୍ତି ବୋଲି ମା ବୁଫେଙ୍ଗ୍‌ଙ୍କର ହୃଦ୍‌ବୋଧ ହେଲା ଏବଂ ତେନ୍‌ଜିନ୍‌ଙ୍କ ସମେତ ସବୁପିଲାଙ୍କୁ ନିଜ ନିଜର ଘରକୁ ପଠାଇଦେଲେ। ପରେ ତେନ୍‌ଜିନ୍‌ଙ୍କୁ ନେଇ କୁମ୍‌ବୁମ୍ ଆଶ୍ରମରେ ଛାଡ଼ି ଆସିବା ପାଇଁ ତାଙ୍କର ବାପାମା'ଙ୍କୁ ଏକ ପତ୍ରଲେଖି ନିର୍ଦ୍ଦେଶ ଦେଲେ।



# (୪) କୁମ୍ବୁମ୍ ଆଶ୍ରମରେ ତେନ୍‌ଜିନ୍

ତ୍ରୟୋଦଶ ଦଲାଇ ଲାମାଙ୍କ ଦେହାନ୍ତ ପରେ ନୂତନ ଅର୍ଥାତ୍ ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ସନ୍ଧାନ କାର୍ଯ୍ୟ ଆରମ୍ଭ କରିବା ପରଠାରୁ ପୁଣି ଶିଶୁ ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କର ସନ୍ଧାନ ପାଇବା ଏବଂ ତାଙ୍କୁ ତ୍ରୟୋଦଶ ଦଲାଇ ଲାମାଙ୍କର ନୂତନ ଅବତାର ବୋଲି ଠାବକରି ଲାସା ପଠାଇବା ଆଦି କାର୍ଯ୍ୟ ସମ୍ପନ୍ନ ହେବା ବେଳକୁ ପାଖାପାଖି ଦୁଇବର୍ଷ ଅତିକ୍ରାନ୍ତ ହୋଇଯାଇଥିଲା। ଏହି ସମୟ ମଧ୍ୟରେ ଲାମା ସନ୍ଧାନକାରୀ ଦଳର ସଦସ୍ୟମାନେ ଚୀନ୍‌ର ଗଭର୍ଣ୍ଣର ମା ବୁଫେଙ୍ଗଙ୍କ ଦ୍ୱାରା ବହୁଭାବରେ ଶୋଷଣର ଶିକାର ହୋଇଥିଲେ। ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କଦ୍ୱାରା ରଚିତ ଆତ୍ମଜୀବନୀ ପୁସ୍ତକ *My Land and My People*ରେ ପ୍ରଦତ୍ତ ତଥ୍ୟ ଅନୁଯାୟୀ ସେ ଚତୁର୍ଦ୍ଦଶ ଦଲାଇ ଲାମା ବୋଲି ନିଶ୍ଚିତ ହେବା ପରେ ମଧ୍ୟ ତିବ୍‌ବତ ସରକାରଙ୍କ ଲାମା ଅନୁସନ୍ଧାନକାରୀ ପ୍ରତିନିଧି ଦଳ ତାଙ୍କୁ ସହଜରେ ଲାସା ପଠାଇ ପାରିଲେ ନାହିଁ। କାରଣ ସେତେବେଳକୁ ତିବ୍‌ବତର ଉତ୍ତର ପୂର୍ବାଞ୍ଚଳ (ଯେଉଁଠି ତେନ୍‌ଜିନ୍‌ଙ୍କର ସନ୍ଧାନ ମିଳିଥିଲା) ଚୀନ୍ ସରକାରଙ୍କ ଅଧୀନରେ ଶାସିତ ହେଉଥିଲା। ତେନ୍‌ଜିନ୍‌ଙ୍କୁ ଲାସା ପଠେଇବା ପୂର୍ବରୁ ମା ବୁଫେଙ୍ଗ ପ୍ରତିନିଧି ଦଳଙ୍କଠାରୁ ଏକ ଲକ୍ଷ ଚୀନ୍ ଡଲାର ଦାବି କରିଥିଲେ ଓ ସେତକ ଦେଲେ ପ୍ରତିନିଧି ଦଳ ତାଙ୍କୁ ଲାସା ନେଇଯାଇ ପାରିବେ ବୋଲି ଜଣାଇଦେଲେ। ଏହା ଏକ ଖୁବ୍ ବଡ଼ ଅଙ୍କର ଅର୍ଥ କାରବାର ଥିଲା ଆଉ ଏହି ଦାବି କରିବା ନେଇ ମା ବୁଫେଙ୍ଗଙ୍କର କୌଣସି ଅଧିକାର ନଥିବା ଜାଣିଥିବା ସତ୍ତ୍ୱେ ଲାମା ସନ୍ଧାନକାରୀ ପ୍ରତିନିଧି ଦଳଙ୍କ ନିକଟରେ ଉତ୍କୋଚ ଦେବା ପରିବର୍ତ୍ତେ ଅନ୍ୟକିଛି ବିକଳ୍ପ ନଥିଲା। ସେମାନେ ମା ବୁଫେଙ୍ଗଙ୍କୁ ଏକ ଲକ୍ଷ ଚୀନ୍ ଡଲାର ପ୍ରଦାନ କରିଥିଲେ। ସେତିକିରେ ସନ୍ତୁଷ୍ଟ ନହୋଇ କୁଆଡ଼େ ମା ବୁଫେଙ୍ଗ ସେମାନଙ୍କୁ ଆଉ ଅଧିକ ତିନିଲକ୍ଷ ଚୀନ୍ ଡଲାର ଦେବାକୁ ଦାବି କରିଥିଲେ। ମାତ୍ର ପ୍ରତିନିଧି ଦଳ ମା ବୁଫେଙ୍ଗଙ୍କୁ କହିଥିଲେ ଯେ, ଏହି ଶିଶୁ (ତେନ୍‌ଜିନ୍) ବାସ୍ତବରେ ଚତୁର୍ଦ୍ଦଶ ଦଲାଇ ଲାମା କି ନା ତାହା ଏ ପର୍ଯ୍ୟନ୍ତ ଜଣାପଡ଼ିନାହିଁ। ଏହି ଶିଶୁ ଭଳି ଆହୁରି ଅନେକ ଶିଶୁଙ୍କୁ ତିବ୍‌ବତର ବିଭିନ୍ନ ସ୍ଥାନରେ ଚିହ୍ନଟ କରାଯାଇଛି। ସେମାନେ ଏପରି କହିବା ପଛରେ କେତେଗୁଡ଼ିଏ ଯୁକ୍ତିଯୁକ୍ତ କାରଣ ମଧ୍ୟ ଲୁଚି ରହିଥିଲା। ସେମାନେ ଆଶଙ୍କା କରୁଥିଲେ ଯଦି ଚୀନ୍ ସରକାର

ଜାଣି ପାରନ୍ତି ଯେ, ତେନ୍‌ଜିନ୍ ହେଉଛନ୍ତି ଚତୁର୍ଦ୍ଦଶ ଦଲାଇ ଲାମା ତା'ହେଲେ ସେ ତାହାକୁ କେବେ ବି ସହଜରେ ନେଇଯିବା ପାଇଁ ଅନୁମତି ଦେବେନାହିଁ। ହୁଏତ ବହୁ ଅଧିକ ପରିମାଣର ଅର୍ଥ ଦାବି କରିବେ। ଦ୍ୱିତୀୟତଃ, ଏହି ଆଳରେ ଚୀନ୍ ସରକାର ତିବ୍‌ବତର ରାଜନୀତିରେ ହସ୍ତକ୍ଷେପ କରିବା ପାଇଁ ସୁଯୋଗ ପାଇଯିବେ।

ଏହିସବୁ କାରଣକୁ ଆଖି ଆଗରେ ରଖି ସେମାନେ ପ୍ରତ୍ୟେକ କାର୍ଯ୍ୟକୁ ଅତି ଚତୁରତାର ସହିତ ସମ୍ପନ୍ନ କରିବା ଲାଗି ଯୋଜନା କଲେ। ସେମାନେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କର ଖବର ଚୀନ୍ ବାଟ ଦେଇ ଲାସାକୁ ଟେଲିଗ୍ରାମ୍ କଲେନାହିଁ। ବରଂ ତା' ପରିବର୍ତ୍ତେ ସେମାନେ ଜଣେ ବିଶ୍ୱସ୍ତ ଲୋକ ହାତରେ ଲାସାକୁ ଖବର ପଠେଇଲେ। ରାଜଧାନୀରୁ ସେମାନଙ୍କ ନିକଟକୁ ଉତ୍ତର ଆସିବା ପାଇଁ ଏକାଧିକ ମାସ ଅତିବାହିତ ହୋଇଗଲା। ପ୍ରତ୍ୟେକ କାମକୁ ଅତି ଗୋପନତାର ସହିତ ସମ୍ପନ୍ନ କରାଯାଉଥିଲା। ଏହା ପଛରେ ଥିବା ଅନ୍ୟ ଏକ କାରଣ ହେଉଛି ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ଆବିଷ୍କାର ଘଟଣାକୁ ସେ ପର୍ଯ୍ୟନ୍ତ ତିବ୍‌ବତର ନ୍ୟାସନାଲ୍ ଆସେମ୍ବ୍ଲି ଆଗରେ ଉପସ୍ଥାପନ କରାଯାଇ ନଥିଲା। ଏମିତିକି ତାଙ୍କର ପିତାମାତା ମଧ୍ୟ ଠିକ୍ ଭାବରେ ଜାଣି ନଥିଲେ ଯେ, ସେ ହେଉଛନ୍ତି ଚତୁର୍ଦ୍ଦଶ ଦଲାଇ ଲାମା। ତାଙ୍କର ସାନପୁଅ ଯେ, ଲାମାମାନଙ୍କର ନେତୃତ୍ୱ ନେବାପାଇଁ ଜନ୍ମନେଇଛି ଏହା ସେମାନଙ୍କ ପକ୍ଷରେ ଅଚିନ୍ତନୀୟ ଥିଲା। ଅବଶ୍ୟ ସେ ଦଲାଇ ଲାମା ଭାବରେ ଚିହ୍ନିତ ହୋଇ ବଡ଼ ହେବା ପରେ ତାଙ୍କର ମା' ତାଙ୍କୁ କେତେକ ପ୍ରାକୃତିକ ଘଟଣା ବିଷୟରେ କହିଥିଲେ ଯେଉଁଗୁଡ଼ିକ ସେ ଜନ୍ମ ହେବା ପରେ ଘଟିଥିଲା। ତାଙ୍କର ସୌଭାଗ୍ୟ ଯେ, ସେଥିରୁ କୌଣସି ନା କୌଣସି ମହତ୍ ଘଟଣା ତାଙ୍କ ସହିତ ସମ୍ପୃକ୍ତ ଥିବା ସେମାନେ ଅନୁମାନ କରୁଥିଲେ।

ତିବ୍‌ବତର ଲୋକମାନଙ୍କ ମଧ୍ୟରେ ନୂତନ ଦଲାଇ ଲାମାଙ୍କ ଜନ୍ମକୁ ନେଇ ଅନେକ ଅନ୍ଧବିଶ୍ୱାସ ରହିଥିଲା। ସେଥିମଧ୍ୟରୁ ଅନ୍ୟତମ ଥିଲା– ଯେଉଁଠି ବିଗତ ଦଲାଇ ଲାମାଙ୍କର ଅବତାର ଜନ୍ମ ଗ୍ରହଣ କରିବେ ସେହି ଅଞ୍ଚଳରେ ନାନାଦି ପ୍ରାକୃତିକ ବିପର୍ଯ୍ୟୟ ଦେଖାଦେବ। ସେହି ଅଞ୍ଚଳର ଲୋକମାନଙ୍କୁ ବହୁ ଦୁଃଖକଷ୍ଟ ସହ୍ୟ କରିବାକୁ ପଡ଼ିବ। ସେ ଜନ୍ମ ହେବାର ଚାରିବର୍ଷ ଆଗରୁ ଟାକ୍‌ସେର୍‌ର ଲୋକମାନଙ୍କୁ ଅନେକ ଦୁଃଖଦୁର୍ଦ୍ଦଶା ମଧ୍ୟଦେଇ ଗତି କରିବାକୁ ହୋଇଥିଲା। ଝଡ଼ ତୋଫାନ୍ ଯୋଗୁଁ ଧାନ ଫସଲ ଉଜୁଡ଼ି ଯାଇଥିଲା। ଦୁର୍ଭିକ୍ଷ ପଡ଼ିଥିଲା। ଏଭଳି ଦୁର୍ବିପାକ ସତ୍ତ୍ୱେ ଲୋକମାନେ କୁହାକୁହି ହେଉଥିଲେ ଯେ, ହୁଏତ ସେମାନଙ୍କ ମଧ୍ୟରେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କର ନୂତନ ଅବତାର ଜନ୍ମ ନେଇପାରିନ୍ତି। ଖୋଦ୍ ତାଙ୍କର ପିତାମାତାଙ୍କୁ ମଧ୍ୟ କିଛି କମ୍ କଷ୍ଟ

ସହିବାକୁ ପଡ଼ିନାହିଁ । ତାଙ୍କର ବାପା ପାଳିଥିବା ବହୁ ଗାଈ ଓ ଘୋଡ଼ା ଅଚାନକ ମରିଗଲେ । ଅନେକ ଚେଷ୍ଟାକରି ମଧ୍ୟ ତାଙ୍କର ବାପା ପଶୁମାନଙ୍କର ମୃତ୍ୟୁର କାରଣ ଜାଣିପାରି ନଥିଲେ । ସେ ଜନ୍ମହେବାର କିଛିମାସ ଆଗରୁ ତାଙ୍କର ବାପା ଅସୁସ୍ଥ ହୋଇ ଶଯ୍ୟାଶାୟୀ ହୋଇପଡ଼ିଥିଲେ । ଏମିତିକି ସମସ୍ତେ ତାଙ୍କର ବଞ୍ଚିବାର ଆଶା ଛାଡ଼ିଦେଇଥିଲେ । ଆଉ ସେ ଜନ୍ମହେବା ମାତ୍ରେ ତାଙ୍କ ବାପା ସୁସ୍ଥ ହୋଇଉଠିଥିଲେ ଓ ପ୍ରାର୍ଥନା ସଙ୍ଗୀତ ଗାନ କରିଥିଲେ । ପିଲାବେଳେ ଘଟିଥିବା ଏହିସବୁ ଘଟଣା ତାଙ୍କ ମହତ୍ ଭବିଷ୍ୟତର ସୂଚନା ପ୍ରଦାନ କରୁଥିଲା ।

ଯା'ହେଉ ପରିଶେଷରେ ତାଙ୍କୁ କୁମ୍‌ବୁମ୍ ଆଶ୍ରମକୁ ନିଆଗଲା । ସେଠାରେ ଆଗରୁ ତାଙ୍କର ବଡ଼ ଦୁଇଭାଇ ଥୁପ୍‌ଟେନ୍ ଜିଗ୍‌ମେ ନର୍ବୁ ଓ ଲବ୍‌ସାଙ୍ଗ୍ ସାମ୍‌ଟେନ୍ ରହିଥିଲେ । ଏହାସତ୍ତ୍ୱେ ସେ ଆନନ୍ଦିତ ହୋଇପାରିନଥିଲେ । ସେତେବେଳକୁ ତାଙ୍କୁ ମାତ୍ର ତିନିବର୍ଷ ହୋଇଥିଲା ଓ ସେ ପ୍ରଥମଥର ପାଇଁ ତାଙ୍କର ପିତାମାତାଙ୍କଠାରୁ ଅଲଗା ହୋଇଥିଲେ । ତାଙ୍କର ବଡ଼ ଦୁଇଭାଇଙ୍କୁ ଛାଡ଼ିଦେଲେ କୁମ୍‌ବୁମ୍ ଆଶ୍ରମରେ ତାଙ୍କର ଜଣେ ମାମୁଁ ମଧ୍ୟ ଥିଲେ । ମାତ୍ର କୌତୂହଳର କଥା ସେମାନେ କେହି ତାଙ୍କ ମାମୁଁଙ୍କୁ ଭଲ ପାଉ ନଥିଲେ; ବରଂ ଭୟ କରୁଥିଲେ । କାରଣ ତାଙ୍କର ଖୁବ୍ ବଡ଼ବଡ଼ ନିଶ ଓ ଦାଢ଼ି ଥିଲା । ତାଙ୍କ ମୁହଁରେ କଳାଦାଗ ଥିବାରୁ ସେ ଭୟଙ୍କର ଦେଖାଯାଉଥିଲେ । ଅନେକ ସମୟରେ ସେ ସେମାନଙ୍କୁ ମାରଧର କରୁଥିଲେ । ଏଇଟା ଶିଶୁ ତେନ୍‌ଜିନ୍‌ଙ୍କ ଜୀବନର ସବୁଠାରୁ ଦୁଃଖପୂର୍ଣ୍ଣ ଅଧ୍ୟାୟ ଥିଲା । କୁମ୍‌ବୁମ୍ ଆଶ୍ରମରେ ରହିବା ଭିତରେ ଏକ ଉତ୍ସବର ଆୟୋଜନ କରାଯାଇ ତାଙ୍କୁ ଅଧିଷ୍ଠିତ କରାଯାଇଥିଲା । ତାଙ୍କୁ ନୂଆଲୁଗା ପିନ୍ଧାଇ ଏକ ସିଂହାସନ ଉପରେ ବସାଇ ଦିଆଯାଇଥିଲା । କୁମ୍‌ବୁମ୍ ଆଶ୍ରମରେ ତାଙ୍କ ବଡ଼ ଦୁଇଭାଇଙ୍କୁ ପାଠ ପଢ଼ାଉଥିବା ବୟସ୍କ ସନ୍ନ୍ୟାସୀ ଜଣକ ଖୁବ୍ ଦୟାଳୁ ଥିଲେ । ସେ ତେନ୍‌ଜିନ୍‌ଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ ଓ ସ୍ନେହ କରୁଥିଲେ । ତେନ୍‌ଜିନ୍‌ଙ୍କୁ ନେଇ ସେ ତାଙ୍କର ଢିଲା ଗାଉନ୍ ଭିତରେ ପୂରେଇ ଧରୁଥିଲେ । ତାଙ୍କୁ ଗୋଟିଏ ଗୋଲାକାର ସାଳ ହଳଦିଆ ରଙ୍ଗର ପିଚ୍ ଫଳ ଖାଇବା ପାଇଁ ଦେଇଥିଲେ । ଏସବୁ ସତ୍ତ୍ୱେ ସେ ପ୍ରାୟତଃ ଅସୁଖୀ ରହୁଥିଲେ । କାରଣ ବାସ୍ତବରେ ଦଲାଇ ଲାମା ହେବାର ଅର୍ଥ କ'ଣ ତାହା ତାଙ୍କୁ ଜଣା ନଥିଲା । ସେ ଆଶ୍ରମରେ ଥିବା ଅନ୍ୟ ଶିଶୁମାନଙ୍କ ଭଳି ଜଣେ ସାଧାରଣ ଶିଶୁ ହିଁ ଥିଲେ ।



# (୫) ଲାସା ଯାତ୍ରା

ପାଖାପାଖି ୧୯୩୯ ମସିହା ଆରମ୍ଭ ବେଳକୁ ତେନ୍‌ଜିନ୍‌ଙ୍କର ପ୍ରକୃତ ଯାତ୍ରା ଆରମ୍ଭ ହେଲା । ସେତେବେଳେ ଚୀନ୍‌ରେ ଆର୍ଥ ହେୟାର ବର୍ଷ (Earth Hare Year)ର ୬ଷ୍ଠ ମାସ ଆରମ୍ଭ ହେଉଥାଏ । ତିବ୍‌ବତୀୟ ଅନୁସନ୍ଧାନକାରୀ ଦଳ ତାଙ୍କୁ ନେଇ ରାଜଧାନୀ ଲାସା ଯିବାକୁ ପ୍ରସ୍ତୁତି ଆରମ୍ଭ କଲେ । ତେବେ ଶେଷବେଳକୁ ମା ବୁଫେଙ୍ଗ ତାଙ୍କୁ ଯିବାଲାଗି ଅନୁମତି ଦେବା ନିମନ୍ତେ ତିନିହଜାର ଡଲାର ଦେବା ପାଇଁ ଦାବି କଲେ । ମାତ୍ର ଏତେଗୁଡ଼ିଏ ଅର୍ଥ ଏକାବେଳକେ ସଂଗ୍ରହ କରିବା ତିବ୍‌ବତୀୟ ସରକାରୀ ପ୍ରତିନିଧି ଦଳର କ୍ଷମତାର ବାହାରେ ଥିଲା । ମାତ୍ର ଠିକ୍ ସେତିକିବେଳେ ଏକ ବିଚିତ୍ର ଘଟଣା ଘଟିଲା । ସେହି ସମୟରେ ଚୀନ୍‌ର ଦଳେ ମୁସ୍‌ଲିମ୍ ବ୍ୟବସାୟୀ ପବିତ୍ର ମକ୍‌କା ଯାତ୍ରା କରିବାକୁ ସଜବାଜ ହେଉଥିଲେ । ସେମାନଙ୍କ ମକ୍‌କା ଯିବା ବାଟରେ ପ୍ରଥମେ ଲାସା ପଡୁଥିଲା । ସେହି ତୀର୍ଥଯାତ୍ରୀ ବ୍ୟବସାୟୀ ଦଳର ସଦସ୍ୟମାନଙ୍କୁ ଭେଟି ତିନିହଜାର ଡଲାର ଧାର ସୂତ୍ରରେ ଦେବାକୁ ତିବ୍‌ବତୀୟ ପ୍ରତିନିଧି ଦଳର ସଦସ୍ୟମାନେ ଅନୁରୋଧ କଲେ ଓ ଲାସାରେ ପହଞ୍ଚିବା ମାତ୍ରେ ସେମାନଙ୍କୁ ସେମାନଙ୍କର ଅର୍ଥ ଫେରାଇ ଦେବାକୁ ପ୍ରତିଶ୍ରୁତି ଦେଲେ । ତୀର୍ଥଯାତ୍ରୀ ବ୍ୟବସାୟୀ ଦଳ ମଧ୍ୟ ତାହା ଦେବାକୁ ରାଜି ହୋଇଗଲେ । ଫଳରେ ସମସ୍ୟାର ସମାଧାନ ହୋଇଗଲା ଓ ତିନିହଜାର ଡଲାର ପାଇବା ପରେ ମା ବୁଫେଙ୍ଗ ତେନ୍‌ଜିନ୍‌ଙ୍କୁ ଲାସା ନେଇଯିବା ଲାଗି ସମ୍ମତି ପ୍ରଦାନ କଲେ ।

ପରିଶେଷରେ ଚତୁର୍ଦ୍ଦଶ ଦଲାଇଲାମାଙ୍କ ଅବତାର ତେନ୍‌ଜିନ୍ ଗ୍ୟାତ୍‌ସୁଙ୍କର ଲାସା ଯାତ୍ରାର ଦିନ ଆସି ପହଞ୍ଚିଗଲା । ଏହି ଯାତ୍ରା ତିନିମାସ ତେରଦିନରେ ଶେଷ ହୋଇଥିଲା । ତେନ୍‌ଜିନ୍‌ଙ୍କ ପିତାମାତାଙ୍କୁ ମଧ୍ୟ କୁମ୍‌ବୁମ୍ ଆଶ୍ରମକୁ ଡକେଇ ଅଣାଗଲା ଓ ସେମାନଙ୍କୁ ମଧ୍ୟ ଲାସା ଯାତ୍ରାରେ ସାମିଲ୍ କରାଗଲା । ମାତ୍ର ତାଙ୍କର ବାପାମା' ଟାକ୍‌ସେର୍ ଛାଡ଼ି ଯିବା ପାଇଁ ପ୍ରସ୍ତୁତ ନଥିଲେ । କାରଣ ଏହା ଏକ ଦୀର୍ଘକାଳୀନ ଯାତ୍ରା ଥିଲା । ପୁଣି ଏହି ଯାତ୍ରାର ଭବିଷ୍ୟତ ବିଷୟରେ ସେମାନେ ଅନିଶ୍ଚିତ ଥିଲେ । ଅପରପକ୍ଷରେ, ପିତାମାତାଙ୍କୁ ଅନେକ ଦିନ ପରେ ଭେଟୁଥିବା ହେତୁ ଶିଶୁ

ତେନ୍‌ଜିନ୍‌ଙ୍କର ଖୁସିର ସୀମା ରହି ନଥିଲା । ତେନ୍‌ଜିନ୍‌ଙ୍କ ଚତୁର୍ଥ ଜନ୍ମଦିନର ପ୍ରଥମ ସପ୍ତାହ ପରେ ତାଙ୍କର ଲାସା ଯାତ୍ରା ଆରମ୍ଭ ହେଲା । ସେମାନଙ୍କର ଏକ ଖୁବ୍ ବଡ଼ ଦଳ ଥିଲା, ଯେଉଁଥିରେ ତାଙ୍କର ବାପାମା', ଦୁଇ ବଡ଼ଭାଇ ଗ୍ୟେଲୋ ଥଣ୍ଡୁପ୍ ଏବଂ ଲୋସାଙ୍ଗ୍ ସାମ୍‌ଟେନ୍, ତିବ୍‌ବତୀୟ ସରକାରୀ ଅନ୍ୱେଷଣକାରୀ ଦଳ, ମକ୍‌କା ଯାତ୍ରା କରୁଥିବା ମୁସଲମାନ୍ ତୀର୍ଥଯାତ୍ରୀ ଦଳ, ୩୫୦ଟି ଘୋଡ଼ା ଏବଂ ଖଚର ତଥା ସଇସ ଏବଂ ଖଚର ଚାଳକ ମଧ୍ୟ ସାମିଲ୍ ଥିଲେ । ଯାତ୍ରାକାଳରେ ଏମାନଙ୍କର ସାହଚର୍ଯ୍ୟ ମଧ୍ୟ ଆବଶ୍ୟକତା ଥିଲା । କାରଣ ବାଟରେ ଅନେକ ନଦନଦୀ ଓ ଗିରିପଥ ପରିପୂର୍ଣ୍ଣ ଥିଲା । କେଉଁ ନଦୀକୁ କେଉଁ ସ୍ଥାନରେ ଅତିକ୍ରମ କରିବାକୁ ପଡ଼ିବ, ଭୟଙ୍କର ଗିରିପଥ ସବୁକୁ କିଭଳି ଭାବରେ ଆରୋହଣ କରିବାକୁ ହେବ ଏବଂ ସେଥିଲାଗି କେତେ ସମୟ ଲାଗିବ ତାହା ସେମାନଙ୍କୁ ଠିକ୍ ଭାବରେ ଜଣାଥିଲା ।

ସେମାନଙ୍କ ନିକଟରେ କୌଣସି ଚକଲଗା ଗାଡ଼ି ନଥିଲା । ସେହିଭଳି ରାସ୍ତାଘାଟର ମଧ୍ୟ ଠିକ୍‌ଠିକଣା ନଥିଲା । ଦଳରେ ସବୁଠାରୁ ସାନ ଥିଲେ ତେନ୍‌ଜିନ୍ ଏବଂ ତାଙ୍କ ୬ବର୍ଷର ବୟସର ଭାଇ ସାମ୍‌ଟେନ୍ । ଏଇ ଦୁଇଜଣଙ୍କ ପାଇଁ କେବଳ ଖଚର ଟାଣୁଥିବା ଏକ ଗାଡ଼ିର ବ୍ୟବସ୍ଥା କରାଯାଇଥିଲା ଯାହାକୁ ତିବ୍‌ବତୀୟମାନେ ଟ୍ରେଲ୍‌ଜାମ୍ (Treljam) ବୋଲି କହୁଥିଲେ । ଯେତେବେଳେ ରାସ୍ତା ବିପଦପୂର୍ଣ୍ଣ ଓ ଖରାପ ପଡୁଥିଲା ଟ୍ରେଲଜାମ୍‌ଟିକୁ ଖଚରମାନେ ଟାଣିପାରୁ ନଥିଲେ, ସେତେବେଳେ ଦଳରେ ଥିବା ଲୋକମାନେ ତାହାକୁ ଟେକିଟେକି ନେଉଥିଲେ ଓ ଭଲ ରାସ୍ତା ଆସିଲେ ତଳେ ରଖୁଥିଲେ । ପ୍ରତ୍ୟେକ ଦିନ ସେମାନେ ସକାଳେ ଯାତ୍ରା ଆରମ୍ଭ କରୁଥିଲେ ଓ ସେହି ଯାତ୍ରା ମଧ୍ୟାହ୍ନ ପର୍ଯ୍ୟନ୍ତ ଚାଲୁଥିଲା । ରାତିହେଲେ ଶିବିର କରି ତା' ଭିତରେ ସମସ୍ତେ ଆଶ୍ରୟ ନେଉଥିଲେ ।

ଅଳ୍ପଦିନର ଯାତ୍ରାପରେ ସେମାନେ ଚୀନ୍‌ର ମା ବୁଫେଙ୍ଗ ଶାସିତ ଅଞ୍ଚଳ ଛାଡ଼ିଲେ ଓ ତିବ୍‌ବତ ସୀମାରେ ପ୍ରବେଶ କଲେ । ଏକଥା ତିବ୍‌ବତ ସରକାରଙ୍କୁ ଜଣେଇ ଦିଆଯିବା ପରେ ରାଜଧାନୀ ଲାସାଠାରେ ନ୍ୟାସନାଲ୍ ଆସେମ୍ବ୍ଲିର ବୈଠକ ବସିଲା ଓ ସେଠାରେ ଚତୁର୍ଦ୍ଦଶ ଦଲାଇ ଲାମାଙ୍କୁ ଠାବ କରାଯାଇଛି ବୋଲି ଔପଚାରିକ ଭାବରେ ଘୋଷଣା କରାଗଲା । ଇତିମଧ୍ୟରେ ସେମାନେ ଗ୍ରା-ସାଙ୍ଗ-ଲା (Tra-tsang-la) ଗିରିପଥ ଅତିକ୍ରମ କରି ବୁମ୍‌ଚେନ୍ (Bumchen) ସହରରେ ପହଞ୍ଚିଲେ । ସେଠାରେ ସେମାନଙ୍କୁ ସ୍ୱାଗତ କରିବା ପାଇଁ ତିବ୍‌ବତରେ ଏକ ସରକାରୀ ଦଳ ଅପେକ୍ଷା କରି ରହିଥିଲେ । ସେମାନଙ୍କ

ମୁହଁରେ ଖୁସିର ଚିହ୍ନ ସ୍ପଷ୍ଟ ଭାବରେ ଫୁଟିଉଠିଥିଲା। ତେନ୍‌ଜିନ୍‌ଙ୍କର ପିତାମାତା ସେତେବେଳଯାଏ ଜାଣି ନଥିଲେ ଯେ ତାଙ୍କର ସାନପୁଅ ହେଉଛି ତ୍ରୟୋଦଶ ଦଲାଇ ଲାମାଙ୍କ ଅବତାର। ଖୁବ୍ ଶୀଘ୍ର ତାଙ୍କୁ ଚତୁର୍ଦ୍ଦଶ ଦଲାଇ ଲାମା ଭାବରେ ଘୋଷଣା କରାଯିବ। ଆଉ ଏକଥା ଜାଣିବା ପରେ ସେମାନଙ୍କର ଖୁସିର ସୀମା ରହିଲା ନାହିଁ। ଗର୍ବରେ ଛାତି ଫୁଲି ଉଠିଲା। ଆଖିରୁ ଆନନ୍ଦର ଅଶ୍ରୁ ଝରିଗଲା।

ତେବେ ଏସବୁ ଘଟଣା ସହିତ ଶିଶୁ ତେନ୍‌ଜିନ୍‌ଙ୍କର କୌଣସି ସମ୍ପର୍କ ନଥିଲା। କାରଣ ସେ ଥିଲେ ଅନ୍ୟ ସାଧାରଣ ପିଲାଙ୍କ ପରି ଜଣେ ପିଲା। ସେ ଖଚର ଦ୍ୱାରା ଟଣାହେଉଥିବା ପାଲିଙ୍କିରେ ବସି ନିଜର ଭାଇ ସାମ୍‌ଟେନ୍‌ଙ୍କ ସହିତ ଯାତ୍ରା କରୁଥିଲେ। ଅନେକ ସମୟରେ ଦୁଇଭାଇଙ୍କ ମଧ୍ୟରେ କଥା କଟାକଟି ଓ ମାଡ଼ଗୋଳ ହେଉଥିଲା। ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ଅବତାର ତେନ୍‌ଜିନ୍‌ଙ୍କୁ ନେଇ ଯାତ୍ରା କରୁଥିବା ଦଳ ଲାସାର ନିକଟବର୍ତ୍ତୀ ହେଲାବେଳକୁ ସେଠାରେ ଶରତ ଋତୁ ଚାଲିଥାଏ। ଲାସାରେ ପହଞ୍ଚିବାର ଅଳ୍ପଦିନ ପୂର୍ବରୁ କେତେଜଣ ବରିଷ୍ଠ ସରକାରୀ କର୍ମକର୍ତ୍ତା ସେମାନଙ୍କୁ ସାକ୍ଷାତ କରି ରାଜଧାନୀର ପ୍ରବେଶ ମାର୍ଗଠାରୁ ଦୁଇମାଇଲ୍ ଦୂରରେ ଥିବା ଡୋଏଗୁଥାଙ୍ଗ (Doeguthang) ସମତଳ ଅଞ୍ଚଳକୁ ସାଦରେ ପାଛୋଟି ନେଇଥିଲେ। ସେଠାରେ ତମ୍ବୁ ଟଣାଯାଇ ଏକ ଶିବିର ତିଆରି କରାଯାଇଥିଲା। ଶିବିରର କେନ୍ଦ୍ରସ୍ଥଳରେ ନୀଳ ଏବଂ ଧଳାରଙ୍ଗର ଏକ ବିରାଟକାୟ ବସ୍ତୁ ଥିଲା ଯାହାକୁ ମହାମୟୂର (Macha Chenmo) ବୋଲି କୁହାଯାଉଥିଲା। ବାସ୍ତବରେ ତାହା ଥିଲା ଏକ କାଠ ତିଆରି ସିଂହାସନ। ଜଣେ ଦଲାଇ ଲାମାଙ୍କ ଦେହାନ୍ତ ପରେ ଯେତେବେଳେ ତାଙ୍କର ଅବତାରକୁ ଖୋଜି ବାହାର କରାଯାଏ ଓ ରାଜଧାନୀ ଲାସାକୁ ଅଣାଯାଏ ସେତେବେଳେ ଲାସାକୁ ଯିବା ପୂର୍ବରୁ ଶିଶୁ ଦଲାଇ ଲାମାଙ୍କୁ ଏହି 'ମହାମୟୂର' ସିଂହାସନରେ ବସେଇ ସ୍ୱାଗତ କରାଯାଇଥାଏ। ଏହା ମଧ୍ୟ ଏକ ପରମ୍ପରା।

ଏହାପରେ ଲାସାଠାରେ ଏକ ଭବ୍ୟ ସମାରୋହର ଆୟୋଜନ କରାଗଲା। ଏହି ସମାରୋହ ପ୍ରାୟ ଦିନସାରା ଚାଲିଲା। ସମାରୋହ ଶେଷ ହେବାପରେ ଭାଇ ସାମଟେନ୍‌ଙ୍କ ସହିତ ତେନ୍‌ଜିନ୍‌ଙ୍କୁ ଲାସାର ପଶ୍ଚିମରେ ଅବସ୍ଥିତ ମଣିରତ୍ନ ପାର୍କ ନର୍ବୁଲିଙ୍ଗକା (Norbulingka)କୁ ପଠାଇ ଦିଆଗଲା।



# (୬) ନର୍ବୁଲିଙ୍ଗକାରେ ତେନ୍‌ଜିନ୍

ନର୍ବୁଲିଙ୍ଗକା ବା ମଣିରତ୍ନ ପାର୍କ ହେଉଛି ଦଲାଇ ଲାମାଙ୍କର ଗ୍ରୀଷ୍ମକାଳୀନ ପ୍ରାସାଦ। କେବଳ ଗ୍ରୀଷ୍ମଋତୁରେ ହିଁ ଦଲାଇ ଲାମା ଏହିଠାରେ ଅବସ୍ଥାନ କରିଥାନ୍ତି। ଚତୁର୍ଦ୍ଦଶ ଦଲାଇ ଲାମା ଶିଶୁ ତେନ୍‌ଜିନ୍‌ଙ୍କୁ ପୋଟାଲା ରାଜପ୍ରାସାଦରେ ବିଧିବଦ୍ଧ ଭାବରେ ସିଂହାସନାରୂଢ଼ କରିବା ପୂର୍ବରୁ ତାଙ୍କୁ ଏହିଠାରେ ରଖାଇବା ଲାଗି ତିବ୍‌ବତର ରାଜପ୍ରତିନିଧିମାନେ ନିଷ୍ପତ୍ତି ନେଇଥିଲେ। ଏହାର କାରଣ ଅନ୍ୟ ସ୍ଥାନମାନଙ୍କ ତୁଳନାରେ ନର୍ବୁଲିଙ୍ଗକା ଜଣେ ଶିଶୁ ପାଇଁ ଅଧିକ ପ୍ରୀତିପ୍ରଦ ତଥା ସୁରକ୍ଷିତ ସ୍ଥାନ ଥିଲା। ଏଠାକାର ପ୍ରାକୃତିକ ପରିବେଶ ଅତ୍ୟନ୍ତ ସୌନ୍ଦର୍ଯ୍ୟପୂର୍ଣ୍ଣ ଥିଲା। ଏହାର ଚାରିପଟରେ ବହୁ ଫଳପୁଷ୍ପ ବୃକ୍ଷ ଏବଂ ପଶୁପକ୍ଷୀରେ ପୂର୍ଣ୍ଣ ଉଦ୍ୟାନ ରହିଥିଲା। ସେହିପରି ଏଠାରେ ଭିତରକୁ ଖୁବ୍ ଭଲଭାବରେ ଆଲୋକ ତଥା ପବନ ପ୍ରବେଶ୍ କରିପାରୁଥିବା ଅନେକ ଛୋଟଛୋଟ କୋଠାଘର ରହିଥିଲା।

ଶିଶୁ ତେନ୍‌ଜିନ୍ ନର୍ବୁଲିଙ୍ଗକାରେ ପହଞ୍ଚିବା ପରେ ଖୁବ୍ ଖୁସି ହୋଇଗଲେ। କାରଣ ସେଠାକାର ପରିବେଶ ବେଶ୍ ଆନନ୍ଦଦାୟକ ଥିଲା। ତାଙ୍କ ଉପରେ କୌଣସି ଉତ୍ତରଦାୟିତ୍ୱ ନଥିଲା। ତାଙ୍କ ସହିତ ତାଙ୍କର ପିତାମାତା ଏବଂ ଭାଇ ଲବ୍‌ସାଙ୍ଗ ସାମ୍‌ଟେନ୍ ମଧ୍ୟ ରହିଥିଲେ। ତେଣୁ ସେ ନର୍ବୁଲିଙ୍ଗକାରେ ଖୁବ୍ ଆନନ୍ଦରେ ରହିବାକୁ ଲାଗିଲେ। ନର୍ବୁଲିଙ୍ଗକାଠାରେ ବର୍ଷର ଶେଷମାସର ଶେଷଦିନରେ ଚାମ୍ (Cham) ପାଳନ କରାଯାଉଥିଲା। 'ଚାମ୍' ପାଳନ କରିବା ଏହି ଆଶ୍ରମର ସନ୍ନ୍ୟାସୀମାନଙ୍କର ଏକ ନିୟମ ଥିଲା। ବାସ୍ତବରେ 'ଚାମ୍' ହେଉଛି ଏକ ପାରମ୍ପରିକ ନୃତ୍ୟ, ଯେଉଁଥିରେ ନର୍ତ୍ତକନର୍ତ୍ତକୀମାନେ ବହୁମୂଲ୍ୟ ପୋଷାକ ପିନ୍ଧି ନୃତ୍ୟ ପରିବେଷଣ କରିଥାନ୍ତି। ଏହି ନୃତ୍ୟ ପରିବେଷଣ ଦ୍ୱାରା ବିଗତ ବର୍ଷର ନକାରାତ୍ମକ ଶକ୍ତିସବୁ ଦୂରେଇ ଯାଉଥିବା ସନ୍ନ୍ୟାସୀମାନଙ୍କର ବିଶ୍ୱାସ ରହିଛି। ତେବେ ତେନ୍‌ଜିନ୍‌ଙ୍କୁ ଏହି ନୃତ୍ୟ ଦେଖିବା ପାଇଁ ସୁଯୋଗ ଦିଆଯାଇ ନଥିଲା। କାରଣ ତାଙ୍କୁ ବିଧିବଦ୍ଧ ଭାବରେ ସିଂହାସନରେ ଅଧିଷ୍ଠିତ କରାଯାଇ ନଥିଲା। ଫଳରେ ତାଙ୍କର ବାପା, ମା' ଓ ଭାଇ 'ଚାମ୍' ଦେଖିବାକୁ ଯାଉଥିବା ବେଳେ ସେ ଆଶ୍ରମରେ ଏକୁଟିଆ ରହୁଥିଲେ ଓ ଭାଇଙ୍କୁ ଈର୍ଷା କରୁଥିଲେ।

ଏହାର ପରବର୍ଷ, ଅର୍ଥାତ୍ ୧୯୪୦ ମସିହା ପର୍ଯ୍ୟନ୍ତ ସେ ନର୍ବୁଲିଙ୍ଗକା ପ୍ରାସାଦରେ ରହିଲେ। ତାଙ୍କର ପିତାମାତାଙ୍କ ସହିତ ଦିନଗୁଡ଼ିକ ବେଶ୍ ଖୁସିରେ କଟିଯାଉଥିଲା। ସେ ଗ୍ରୀଷ୍ମ, ବର୍ଷା, ଶୀତ, ବସନ୍ତ ଆଦି ଋତୁଗୁଡ଼ିକୁ ମନଭରି ଉପଭୋଗ କରୁଥିଲେ। ଇତିମଧ୍ୟରେ ତେନ୍‌ଜିନ୍‌ଙ୍କୁ 'ଦଲାଇ ଲାମା' ଭାବରେ ଘୋଷଣା କରିଦିଆଗଲା। ସେ ପ୍ରାପ୍ତବୟସ୍କ ହୋଇ ନଥିବାରୁ ସେହି ସମୟରେ ତାଙ୍କର ଅଭିଷେକ କରାଗଲା ନାହିଁ। ସେ ଦଲାଇ ଲାମା ଭାବରେ ଘୋଷିତ ହେବାରୁ ତାଙ୍କର ପିତାମାତାଙ୍କୁ ସର୍ବୋଚ୍ଚ ସମ୍ଭ୍ରାନ୍ତ ଶ୍ରେଣୀୟ ବ୍ୟକ୍ତିଙ୍କର ସମ୍ମାନ ମିଳିଲା ଓ ସେମାନେ ପର୍ଯ୍ୟାପ୍ତ ପରିମାଣର ସମ୍ପତ୍ତି ଲାଭକଲେ। ଲୋକମାନେ ତାଙ୍କୁ ଦିବ୍ୟ ମର୍ଯ୍ୟାଦା ପ୍ରଦାନ କଲେ। ନର୍ବୁଲିଙ୍ଗକା ଉଆସର ପଡ଼ିଆ ମଧ୍ୟରେ ସେମାନେ ଘୋଡ଼ା ଚଢ଼ିବାର ଅଧିକାର ପାଇଲେ। ତେବେ ଦଲାଇ ଲାମା ଘୋଷିତ ହେବା ପରେ ତେନ୍‌ଜିନ୍ ଆଉ ନିଜର ପିତାମାତାଙ୍କ ସହିତ ରହିପାରିଲେ ନାହିଁ। ତାଙ୍କୁ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠରେ ରହିବାକୁ ପଡ଼ିଲା ଓ ତାଙ୍କ ପାଇଁ ସ୍ୱତନ୍ତ୍ର ରାଜପ୍ରତିନିଧି ଦଳ ନିଯୁକ୍ତ କରାଗଲା। ସନ୍ନ୍ୟାସୀ ଭାବରେ ତାଙ୍କ ପ୍ରତି କେତେକ କଟକଣା ଜାରି କରାଯାଇଥିଲା। ସବୁବେଳେ ନିଜ ପିତାମାତା କିମ୍ବା ଭାଇଙ୍କ ସହିତ ମିଳାମିଶା କରିବା ପାଇଁ ତାଙ୍କୁ ଅନୁମତି ପ୍ରଦାନ କରାଯାଇନଥିଲା। ତାଙ୍କ ଉପରେ ସତର୍କ ନଜର ରଖିବା ପାଇଁ ଜଣେ ସ୍ୱତନ୍ତ୍ର ରାଜପ୍ରତିନିଧିଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଗଲା। ମାତ୍ର ଆଶ୍ଚର୍ଯ୍ୟର କଥା, ଶିଶୁ ତେନ୍‌ଜିନ୍‌ଙ୍କ ନିମନ୍ତେ ଏସବୁ ସରକାରୀ ଅଥବା ଆଧ୍ୟାତ୍ମିକ ନୀତି, ନିୟମ, କାନୁନ୍, କଟକଣାର କୌଣସି ଗୁରୁତ୍ୱ ନଥିଲା। ସେ ପ୍ରତ୍ୟେକ ଦିନ ଲୁଚିଛପି ତାଙ୍କର ପିତାମାତାଙ୍କ ନିକଟକୁ ଚାଲି ଆସୁଥିଲେ। ବିଶେଷକରି, ଭୋଜନ କରିବା ସମୟରେ ସେ ତାଙ୍କର ପିତାମାତାଙ୍କ ନିକଟକୁ ଆସିବା ପାଇଁ ବେଶି ପସନ୍ଦ କରୁଥିଲେ। କାରଣ ସନ୍ନ୍ୟାସୀ ଭାବରେ ଘୋଷିତ ହେବା ପରେ ତାଙ୍କର ଖାଦ୍ୟପେୟ ଉପରେ ମଧ୍ୟ କଟକଣା ଲାଗୁ କରାଯାଇଥିଲା। ମାତ୍ର ତାଙ୍କର କୋମଳ ଶିଶୁସୁଲଭ ମନ ଏହିସବୁ ନୀତିନିୟମକୁ ମାନିବା ପାଇଁ ପ୍ରସ୍ତୁତ ନଥିଲା। ଭୋଜନ ସମୟରେ ସେ ତାଙ୍କର ପିତାମାତାଙ୍କ ନିକଟକୁ ଚାଲି ଆସୁଥିଲେ ଓ ପିତାମାତାଙ୍କ ବାସଭବନରେ ଅଣ୍ଡା ଓ ଘୁଷୁରି ମାଂସ ଆଦି ସୁସ୍ୱାଦୁ ଖାଦ୍ୟ ଖାଇବାର ମଜା ଉଠେଇ ପାରୁଥିଲେ। ଏକଦା ଏଭଳି କରୁଥିବା ବେଳେ ସେ ଧରାପଡ଼ି ଯାଇଥିଲେ। ସେ ତାଙ୍କ ପିତାଙ୍କ ନିକଟରେ ଅଣ୍ଡା ଖାଉଥିବା ବେଳେ ତାଙ୍କୁ ଗିଓପ୍ କେନ୍‌ପୋ (Gyop Kenpo) ନାମକ ଜଣେ ବରିଷ୍ଠ ପଦାଧିକାରୀ ଦେଖି ନେଇଥିଲେ। ଜଣେ ସନ୍ନ୍ୟାସୀ ନିମନ୍ତେ

ଏସବୁର ଭକ୍ଷଣ ନିଷିଦ୍ଧ ଥିଲା। ମାତ୍ର ସର୍ବୋଚ୍ଚ ଧର୍ମଗୁରୁ ଶିଶୁ ଦଲାଇ ଲାମା ତାହା ଖାଉଥିବାର ଦେଖି ଗିଓପ୍ ଆଶ୍ଚର୍ଯ୍ୟ ହୋଇଗଲେ ଓ ଖୁବ୍ ଆଘାତ ପାଇଲେ। ସେହିପରି ଶିଶୁ ତେନ୍‌ଜିନ୍ ମଧ୍ୟ ଧରାପଡ଼ି ଯାଇଥିବାରୁ ଗଭୀର ଭାବରେ ମାନସିକ ଯନ୍ତ୍ରଣା ପାଇଥିଲେ। ମାତ୍ର ଶିଶୁସୁଲଭ ଉତ୍କଣ୍ଠାକୁ ଚାପିରଖି ନପାରି ସେ ଗିଓପ୍‌ଙ୍କୁ ଚାହିଁ ଚିତ୍କାର କଲେ- ଏଠାରୁ ପଳେଇ ଯାଅ ! ସେହିଭଳି ସେ ତାଙ୍କ ପିତାମାତାଙ୍କ ନିକଟରେ ବସି ଅନେକ ସମୟରେ ଘୁଷୁରୀ ମାଂସ ଭକ୍ଷଣ କରୁଥିଲେ। ନିଜର ଆତ୍ମଜୀବନୀ ପୁସ୍ତକ *Freedon In Exile*ରେ ସେ ଏହି ଖାଦ୍ୟକୁ ଖୁବ୍ ସୁସ୍ୱାଦୁ ତଥା ରୁଚିକର ବୋଲି ବର୍ଣ୍ଣନା କରିଛନ୍ତି।

୧୯୪୦ ମସିହାର ଏକ ଶୀତଋତୁରେ ତାଙ୍କୁ ନର୍ବୁଲିଙ୍ଗକାରୁ ପୋଟାଲା ରାଜପ୍ରାସାଦକୁ ନିଆଗଲା। ସେଠାରେ ତାଙ୍କୁ ସରକାରୀ ଭାବରେ ତିବ୍‌ବତର ଆଧ୍ୟାତ୍ମିକ ଗୁରୁ (spiritual leader) ଭାବରେ ଅଧିଷ୍ଠିତ କରାଗଲା। ଏଥିନିମନ୍ତେ ଏକ ଉତ୍ସବର ଆୟୋଜନ କରାଯିବା ସହିତ ତାଙ୍କୁ ପ୍ରଥମଥର ପାଇଁ ସିଂହାସନ (Lion Throne)ରେ ବସାଯାଇଥିଲା। ସିଂହାସନ ଯେଉଁ ପ୍ରକୋଷ୍ଠରେ ଥିଲା ତାହାର ନାମ ସି ସି ଫୁନ୍‌ସଗ୍ (Si Si Phuntsog)। ଏହା ପୋଟାଲାର ପୂର୍ବପାର୍ଶ୍ୱରେ ଥିବା ଏକ ରାଷ୍ଟ୍ରୀୟ ପ୍ରକୋଷ୍ଠ। ଏହାକୁ ତିବ୍‌ବତୀୟ ଭାଷାରେ ଆଧ୍ୟାତ୍ମିକ ଓ ଜାଗତିକ ପୃଥିବୀର ସବୁ ପୁଣ୍ୟ କାର୍ଯ୍ୟର ପ୍ରକୋଷ୍ଠ ବୋଲି କୁହାଯାଉଥିଲା। ସିଂହାସନଟି ଏକ କାଠର ସିଂହାସନ ଥିଲା। ମାତ୍ର ଦୁର୍ମୂଲ୍ୟ ମଣିରତ୍ନ ଖଚିତ ହୋଇ ଏହା ଖୁବ୍ ଆକର୍ଷଣୀୟ ଦିଶୁଥିଲା।

ଏହାପରେ ତେନ୍‌ଜିନ୍‌ଙ୍କୁ ମହାନଗର ମଧ୍ୟଭାଗରେ ଥିବା ଜୋଖାଙ୍ଗ ମନ୍ଦିର (Jokhang Temple)କୁ ନିଆଗଲା। ସେଠାରେ ଏକ ମୁଣ୍ଡନ ଉତ୍ସବ ଅନୁଷ୍ଠିତ କରାଗଲା ଯାହାର ନାମ ଟାପ୍‌ବୁ (tapbu)। ଏହି ଉତ୍ସବ ଅବସରରେ ତାଙ୍କୁ ଜଣେ ଶିକ୍ଷାନବୀଶ ସନ୍ନ୍ୟାସୀ ବା novice monk ଭାବରେ ଅଧିଷ୍ଠିତ କରାଗଲା। ମୁଣ୍ଡନ ଉତ୍ସବ ପରେ ତାଙ୍କୁ ବାଦାମୀ ଓ ଈଷତ୍ ନାଲିରଙ୍ଗର ଲମ୍ବା ଓ ଢିଲା ପୋଷାକ ପିନ୍ଧିବାକୁ ପଡ଼ିଲା। ରାଜପ୍ରତିନିଧି ରେଟିଙ୍ଗ ରିନ୍‌ପୋଚି (Reting Rinpoche)ଙ୍କୁ ତାଙ୍କର ବରିଷ୍ଠ ଗୃହଶିକ୍ଷକ ଭାବରେ ନିଯୁକ୍ତ କରାଗଲା। ଏହା ବ୍ୟତୀତ, ତେନ୍‌ଜିନ୍ ବଡ଼ ହୋଇ ଦାୟିତ୍ୱ ବୁଝିବା ପର୍ଯ୍ୟନ୍ତ ସେ ରାଷ୍ଟ୍ରମୁଖ୍ୟ ପଦବୀ ସମ୍ଭାଳିବାକୁ ଅଧିକାରପ୍ରାପ୍ତ ହେଲେ। ଏହି ମୁଣ୍ଡନ ଉତ୍ସବ ପରେ ସେ ତାଙ୍କର ପିତୃଦତ୍ତ ନାମ 'ଲାମୋ ଥଣ୍ଡୁପ୍' ପରିତ୍ୟାଗ କରି ଏକ ନୂଆ ନାମ ଗ୍ରହଣ କଲେ। ତାଙ୍କର ନୂଆ ନାମ ହେଲା- ଜାମ୍ଫେଲ୍

ଗାଓ୍ବାଙ୍ଗ୍ ଲବସାଙ୍ଗ୍ ୟେସେ ତେନ୍‌ଜିନ୍ ଗ୍ୟାତ୍‌ସୁ (Jamphel Ngawang Lobsang Yeshe Tenzin Gyatso) ବା ସଂକ୍ଷେପରେ ତେନ୍‌ଜିନ୍ ଗ୍ୟାତ୍‌ସୁ।

କେବଳ ରେଟିଙ୍ଗ୍ ରିନ୍‌ପୋଚି ନୁହଁନ୍ତି, ତାଙ୍କ ବ୍ୟତୀତ ତେନ୍‌ଜିନ୍‌ଙ୍କ ନିମନ୍ତେ ଆଉ ଦୁଇଜଣ ଗୃହଶିକ୍ଷକ ମଧ୍ୟ ନିଯୁକ୍ତ ହେଲେ। ସେମାନେ ହେଲେ ତଥାଗ୍ ରିନ୍‌ପୋଚି ଏବଂ କେଓସାଙ୍ଗ ରିନ୍‌ପୋଚି। ତଥାଗ୍ ରିନ୍‌ପୋଚି ଜଣେ ଅଧ୍ୟାତ୍ମ ଭାବସମ୍ପନ୍ନ ତଥା ସହୃଦୟ ବ୍ୟକ୍ତି ଥିଲେ। ପାଠପଢ଼ା ନଥିବାବେଳେ ସେ ଅନେକ ସମୟରେ ହାସ୍ୟରସାତ୍ମକ କଥା କହୁଥିଲେ। ତେନ୍‌ଜିନ୍ ତାଙ୍କୁ ଖୁବ୍ ପସନ୍ଦ କରୁଥିଲେ। ସେହିଭଳି କେଓସାଙ୍ଗ ରିନ୍‌ପୋଚିଙ୍କ ସହିତ ତାଙ୍କର ଆଗରୁ ପରିଚୟ ଥିଲା। ଚତୁର୍ଦ୍ଦଶ ଦଲାଇ ଲାମାଙ୍କ ନୂତନ ଅବତାରକୁ ଖୋଜିବା ପାଇଁ ଯିବା ଅବସରରେ କେଓସାଙ୍ଗ ତାଙ୍କ ଘରେ ରହିଥିଲେ। ଏତଦ୍‌ବ୍ୟତୀତ, ସେ ଖୁବ୍ ସ୍ନେହୀ ମଣିଷ ଥିଲେ ଓ ତାଙ୍କ ଘର ଆମଡୋର ଥିଲା। ଇତିମଧ୍ୟରେ ରେଟିଙ୍ଗ୍ ରିନ୍‌ପୋଚି ଖୁବ୍ ବିବାଦୀୟ ହୋଇପଡ଼ିଲେ। ତାଙ୍କ ବିରୋଧରେ ନାନାଦି ଜନ ଅପବାଦ ଶୁଣିବାକୁ ମିଳିଲା। ନିଜର ବ୍ରହ୍ମଚର୍ଯ୍ୟ ପାଳନ ପ୍ରତିଜ୍ଞା ଭଙ୍ଗ କରିଥିବାରୁ ସେ ଆଉ ସନ୍ନ୍ୟାସୀ ହେବାକୁ ଯୋଗ୍ୟ ନୁହନ୍ତି ବୋଲି ତାଙ୍କୁ ସମାଲୋଚନା କରାଗଲା। ଫଳରେ ରେଟିଙ୍ଗ୍ ରିନ୍‌ପୋଚି ତାଙ୍କର ରାଜପ୍ରତିନିଧି ପଦବୀ ପରିତ୍ୟାଗ କଲେ। ଏହି ସମୟରେ ତେନ୍‌ଜିନ୍‌ଙ୍କୁ ମାତ୍ର ୬ ବର୍ଷ ବୟସ। ରେଟିଙ୍ଗ ରିନ୍‌ପୋଚିଙ୍କ ସ୍ଥାନରେ ସେ କାହାକୁ ଅବସ୍ଥାପିତ କରିବାକୁ ଚାହୁଁଛନ୍ତି ବୋଲି ତାଙ୍କୁ ପ୍ରଶ୍ନ କରାଗଲା। ସେ ତଥାଗ୍ ରିନ୍‌ପୋଚିଙ୍କୁ ମନୋନିତ କଲେ। ଅତଏବ ରେଟିଙ୍ଗ ରିନ୍‌ପୋଚିଙ୍କ ସ୍ଥାନରେ ତଥାଗ୍ ରିନ୍‌ପୋଚିଙ୍କୁ ତେନ୍‌ଜିନ୍‌ଙ୍କର ବରିଷ୍ଠ ଗୃହଶିକ୍ଷକ ନିଯୁକ୍ତ କରାଗଲା ଓ ତଥାଗ୍ ରିନ୍‌ପୋଚିଙ୍କ ସ୍ଥାନରେ ଲିଙ୍ଗ୍ ରିନ୍‌ପୋଚି ନାମକ ଜଣେ ସନ୍ନ୍ୟାସୀଙ୍କୁ ଅବସ୍ଥାପିତ କରାଗଲା।

ଗୃହ ଶିକ୍ଷକମାନଙ୍କ ବ୍ୟତୀତ ଅନ୍ୟ ତିନିଜଣ ସନ୍ନ୍ୟାସୀଙ୍କୁ ତେନ୍‌ଜିନ୍‌ଙ୍କର ବ୍ୟକ୍ତିଗତ ପରିଚାରକ ଭାବରେ ନିଯୁକ୍ତ କରାଯାଇଥିଲା। ସେମାନେ ଥିଲେ- ଚେପୋନ୍ ଖେନ୍‌ପୋ, ସୋଲପୋନ୍ କେନ୍‌ପୋ ଏବଂ ସିମ୍ପୋନ୍ କେନ୍‌ପୋ। ଚେପୋନ୍ ଖେନ୍‌ପୋଙ୍କୁ ବିଧିବିଧାନର ମୁଖ୍ୟ ଭାବରେ ନିଯୁକ୍ତ କରାଯାଇଥିବାବେଳେ ସୋଲପୋନ୍ କେନ୍‌ପୋଙ୍କୁ ରୋଷଶାଳାର ମୁଖ୍ୟ ଏବଂ ସିମ୍ପୋନ୍ କେନ୍‌ପୋଙ୍କୁ ପରିଧାନର ମୁଖ୍ୟ ଭାବରେ ନିୟୋଜିତ କରାଯାଇଥିଲା।



# (୭) ପାଠପଢ଼ା

ଛ' ବର୍ଷ ବୟସରେ ତେନ୍‌ଜିନ୍‌ଙ୍କର ପାଠପଢ଼ା ଆନୁଷ୍ଠାନିକ ଭାବରେ ଆରମ୍ଭ କରାଯାଇଥିଲା। ପୂର୍ବରୁ ତାଙ୍କୁ ଜଣେ ଶିକ୍ଷାନବୀଶ ସନ୍ନ୍ୟାସୀ ଭାବରେ ଗ୍ରହଣ କରାଯାଇଥିଲା। ତିବ୍‌ବତରେ ପ୍ରଚଳିତ ପାରମ୍ପରିକ ପ୍ରଣାଳୀ ଅନୁସାରେ ତାଙ୍କୁ ଶିକ୍ଷା ପ୍ରଦାନ କରାଯିବ ବୋଲି ସରକାରୀ ଭାବରେ ନିଷ୍ପତ୍ତି ନିଆଗଲା। ତାହା ମୁଖ୍ୟତଃ ସାକ୍ଷରତା ଭିତ୍ତିକ ଶିକ୍ଷା ଥିଲା। ଲବ୍‌ସାଙ୍ଗ୍ ସାମ୍‌ଟେନ୍ ଏବଂ ତେନ୍‌ଜିନ୍‌ଙ୍କୁ ଏକତ୍ର ଗୋଟିଏ ବିଦ୍ୟାଳୟରେ ଶିକ୍ଷାଦାନ କରାଯିବାର ବ୍ୟବସ୍ଥା କରାଗଲା। ତାଙ୍କ ପାଇଁ ଉଦ୍ଦିଷ୍ଟ ବିଦ୍ୟାଳୟ ଦୁଇଟି ମଧ୍ୟରୁ ଗୋଟିଏ ପୋଟାଲା ରାଜପ୍ରାସାଦରେ ଥିବାବେଳେ ଅନ୍ୟଟି ନର୍ବୁଲିଙ୍ଗକାରେ ଥିଲା। ଚତୁର୍ଦ୍ଦଶ ଦଲାଇଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ ନିଜର ଆତ୍ମଜୀବନୀ ପୁସ୍ତକ *Freedom in Exile* ଏବଂ *My Land And My People*ରେ ନିଜର ସ୍କୁଲବେଳର କଥା ଅତି ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି। ତାଙ୍କ ବର୍ଣ୍ଣନା ଅନୁସାରେ ବିଦ୍ୟାଳୟ ପ୍ରକୋଷ୍ଠର ପଛକାନ୍ଥରେ ଦୁଇଟି ଚାବୁକ୍ ଝୁଲା ଯାଇଥିଲା। ଗୋଟିଏ ହଳଦିଆ ରଙ୍ଗର ଚାବୁକ୍ ଥିବାବେଳେ ଅନ୍ୟଟି ଚମଡ଼ାରେ ତିଆରି ହୋଇଥିଲା। ସେମାନଙ୍କୁ ବୁଝାଇ ଦିଆଯାଇଥିଲା ଯେ, ହଳଦିଆ ରଙ୍ଗର ଚାବୁକ୍‌ଟି ଦଲାଇ ଲାମାଙ୍କ ପାଇଁ ଏବଂ ଚମଡ଼ାରେ ତିଆରି ଚାବୁକ୍‌ଟି ଦଲାଇ ଲାମାଙ୍କ ଭାଇଙ୍କ ପାଇଁ ଉଦ୍ଦିଷ୍ଟ। ଏକଥା ଶୁଣି ସେ ଖୁବ୍ ଡରି ଯାଇଥିଲେ ଓ ଚାବୁକ୍ ଆଡ଼କୁ ଚାହିଁଦେବା ମାତ୍ରେ ଥରି ଉଠୁଥିଲେ। ଖୁସିର କଥା ଯେ, ଥରୁଟେ ହେଲେ ହଳଦିଆ ରଙ୍ଗର ଚାବୁକ୍‌ଟି ବ୍ୟବହୃତ ହୋଇ ନଥିଲା। ଅର୍ଥାତ୍, ସେ କେବେହେଲେ ମାଡ଼ ଖାଇ ନଥିଲେ। ମାତ୍ର ତାଙ୍କର ଭାଇ ଲବ୍‌ସାଙ୍ଗ୍ ସାମଟେନ୍ ଖୁବ୍ ମାଡ଼ ଖାଉଥିଲେ। କାରଣ ସେ ଭଲ ଛାତ୍ର ନଥିଲେ।

ତେନ୍‌ଜିନ୍‌ଙ୍କୁ ଆଠବର୍ଷ ବୟସ ହୋଇଥିବାବେଳେ ତାଙ୍କର ଭାଇ ଲବ୍‌ସାଙ୍ଗ ସାମ୍‌ଟେନ୍‌ଙ୍କୁ ଗୋଟିଏ ଘରୋଇ ବିଦ୍ୟାଳୟରେ ପଢ଼ିବା ପାଇଁ ପଠାଇ ଦିଆଯାଇଥିଲା। ଏଥିରେ ସେ ଖୁବ୍ ଦୁଃଖିତ ହୋଇଥିଲେ। କାରଣ ଲବ୍‌ସାଙ୍ଗ ଥିଲେ ତାଙ୍କୁ ତାଙ୍କ ପରିବାର ସହିତ ସଂଯୋଗ କରିବାର ଏକମାତ୍ର ମାଧ୍ୟମ। କେବଳ ପୂର୍ଣ୍ଣିମା ସମୟରେ

ହିଁ ଲବ୍‌ସାଙ୍ଗ୍‌ଙ୍କ ସହିତ ତାଙ୍କର ସାକ୍ଷାତ୍ ହେଉଥିଲା । ଏହାବ୍ୟତୀତ, ତାଙ୍କର ମା' ମଧ୍ୟ ବେଳେବେଳେ ତାଙ୍କୁ ଦେଖା କରିବା ପାଇଁ ଆସୁଥିଲେ । ତାଙ୍କର ମା' ଯେତେବେଳେ ଆସନ୍ତି ସାଥିରେ ବଡ଼ ଭଉଣୀ ସେରିଙ୍ଗ ଡାଲମାଙ୍କୁ ମଧ୍ୟ ସାଥିରେ ଧରି ଆସିଥାନ୍ତି । ସେ ସବୁବେଳେ ତାଙ୍କ ମା'ଙ୍କର ଆସିବା ବାଟକୁ ଅନାଇ ବସିଥାନ୍ତି । କାରଣ ତାଙ୍କର ମା' ତାଙ୍କ ପାଇଁ ସୁସ୍ୱାଦୁ ଭୋଜନ, ବିଶେଷ କରି ଘୁଷୁରୀ ମାଂସ ତରକାରୀ ଧରି ଆସିଥାନ୍ତି । ତାଙ୍କୁ ମାଂସ ଖାଇବା ପାଇଁ ବାରଣ କରାଯାଇଥିଲେ ମଧ୍ୟ ଥରେ ତାଙ୍କ ମା' ଆଣିଥିବା ମାଂସ ତରକାରୀକୁ ସେ ସଙ୍ଗେସଙ୍ଗେ ଖାଇ ଶେଷ କରି ଦେଇଥିଲେ ଏବଂ ଏକଥା ସେ କାହାକୁ ଜଣେଇ ନଥିଲେ । ମାତ୍ର ତା' ପରଦିନ ସେ ଅସୁସ୍ଥ ହୋଇପଡ଼ିବାରୁ ସବୁ ସତକଥା ବାହାରେ ପ୍ରଘଟ ହୋଇଗଲା । ଏହା ତାଙ୍କ ପାଇଁ ଏକ ସମୁଚିତ ଶିକ୍ଷା ଥିଲା ।

ରେଡ୍‌ହିଲ୍‌ଠାରେ ଅବସ୍ଥିତ ପୋଟାଲା ରାଜପ୍ରାସାଦର ଶୀର୍ଷରେ ଥିବା ପଞ୍ଚମ ଦଲାଇ ଲାମାଙ୍କ ଶୟନ କକ୍ଷରେ ତାଙ୍କର ରହିବାର ବନ୍ଦୋବସ୍ତ କରାଯାଇଥିଲା । ପୋଟାଲା ପ୍ରାସାଦଟି ଖୁବ୍ ସୁନ୍ଦର ଏବଂ କମନୀୟ ଥିଲା । ଏହାର ପରିସରରେ ସରକାରୀ କାର୍ଯ୍ୟାଳୟ ଓ ବହୁସଂଖ୍ୟକ ଭଣ୍ଡାର ଘର ଥିଲା । ସେଠାରେ ୧୭୫ଜଣ ସନ୍ନ୍ୟାସୀ ଥିଲେ । ସେତେବେଳେ ତେନ୍‌ଜିନ୍‌ଙ୍କୁ ଦିଆଯାଇଥିବା ପଞ୍ଚମ ଦଲାଇ ଲାମାଙ୍କ ଶୟନକକ୍ଷଟି ଖୁବ୍ ଥଣ୍ଡା ଥିଲା ଓ ଏହି କକ୍ଷଟିରେ ଆବଶ୍ୟକୀୟ ଆଲୋକ ମଧ୍ୟ ପ୍ରବେଶ କରିପାରୁନଥିଲା । ୧୬୮୨ ଖ୍ରୀଷ୍ଟାବ୍ଦରେ ପଞ୍ଚମ ଦଲାଇ ଲାମାଙ୍କ ଦେହାନ୍ତ ଘଟିବା ପରଠାରୁ ସେହି ଶୟନ କକ୍ଷକୁ ଆଉ କେହି ବ୍ୟବହାର କରି ନଥିଲେ । ଏହା ମଧ୍ୟରେ ଥିବା ଜିନିଷପତ୍ରସବୁ ଅତି ପୁରୁଣା ହୋଇଯାଇଥିଲା ଓ ସେସବୁରେ ଧୂଳି ଜମି ଯାଇଥିଲା । ଘରର ଗୋଟିଏ ପାଖରେ ଏକ ବେଦୀ ଥିଲା । ସେହି ବେଦୀ ଉପରେ କ୍ଷୁଦ୍ର ତୈଳ ପ୍ରଦୀପସବୁକୁ ସଜେଇ ରଖାଯାଇଥିଲା । ପ୍ରତ୍ୟେକ ଦିନ ସେହି ବେଦୀ ଉପରେ ଭଗବାନ୍ ବୁଦ୍ଧଙ୍କୁ ଖାଦ୍ୟ ଅର୍ପଣ କରାଯାଉଥିଲା, ଯାହାକୁ ମୂଷାମାନେ ଆସି ଖାଇ ଦେଉଥିଲେ । ତେନ୍‌ଜିନ୍‌ଙ୍କୁ ଏହି ମୂଷାଗୁଡ଼ିକ ଖୁବ୍ ଭଲ ଲାଗୁଥିଲେ । ମୂଷାଗୁଡ଼ିକ ମଧ୍ୟ ତାଙ୍କୁ ଭୟ କରୁ ନଥିଲେ । ରାତିରେ ସେ ବିଛଣାରେ ଶୋଇଥିବା ବେଳେ ମୂଷାଗୁଡ଼ିକ ଘର ଭିତରେ ଏଣେତେଣେ ଦୌଡ଼ାଦୌଡ଼ି କରୁଥିଲେ ଓ ଅନେକ ସମୟରେ ତାଙ୍କର ବିଛଣା ଉପରକୁ ମଧ୍ୟ ଚଢ଼ି ଆସୁଥଲେ । ସେ ଏହାକୁ ଖୁବ୍ ଆନନ୍ଦରେ ଉପଭୋଗ କରୁଥିଲେ ।

ଉଭୟ ପୋଟାଲା ଏବଂ ନର୍ବୁଲିଙ୍ଗକାରେ ତାଙ୍କର ଦୈନନ୍ଦିନ କାର୍ଯ୍ୟନିର୍ଘଣ୍ଟ ସ୍ଥିର ହୋଇଥିଲା ଓ ତାହା ପ୍ରାୟତଃ ସମାନ ଥିଲା। କାର୍ଯ୍ୟନିର୍ଘଣ୍ଟ ତାଙ୍କ ପାଇଁ କଷ୍ଟଦାୟକ ନଥିଲା। ପୋଟାଲାରେ ସେ ପାଖାପାଖି ସକାଳ ୬ଟାରେ ଶଯ୍ୟାତ୍ୟାଗ କରନ୍ତି। ଶଯ୍ୟାରୁ ଉଠି ପୋଷାକ ପରିଧାନ କରି ପ୍ରାର୍ଥନା ଓ ଧ୍ୟାନ କରନ୍ତି। ଏହା ପ୍ରାୟତଃ ଏକଘଣ୍ଟା ଧରି ଚାଲେ। ଠିକ୍ ସାତଟା ବେଳକୁ ତାଙ୍କ ପାଇଁ ପ୍ରାତଃଭୋଜନ ଆସିଯାଏ। ପ୍ରାତଃଭୋଜନରେ ତାଙ୍କୁ ଚା' ସହିତ ସାମ୍ପା (Tsampa) ପ୍ରଦାନ କରାଯାଏ। ଏହା ସହିତ ତାଙ୍କୁ ମହୁ କିମ୍ବା ପୋଡ଼ାଚିନି (Caramel) ମଧ୍ୟ ଖାଇବାକୁ ଦିଆଯାଏ। ଏହାପରେ ପାଠପଢ଼ା ଆରମ୍ଭ ହୁଏ। କେନ୍‌ରାପ୍ ତେନ୍‌ଜିନ୍ ତାଙ୍କୁ ପାଠ ପଢ଼ାନ୍ତି। ସେ ତେରବର୍ଷ ବୟସରେ ପଦାର୍ପଣ କରିବା ପର୍ଯ୍ୟନ୍ତ ଏବଂ ପଢ଼ିଶିଖିବା ପର୍ଯ୍ୟନ୍ତ ସବୁବେଳେ ଲିଖନ ଅଭ୍ୟାସ କରୁଥିଲେ। ତିବ୍‌ବତୀୟ ଭାଷାରେ ମୁଖ୍ୟତଃ ଦୁଇଗୋଟି ଲିପି ରହିଛି; ଯଥା- ଅକ୍‌ବେନ୍ (Ucben) ଏବଂ ୟୁ-ମି (U-Me)। ଗୋଟିଏ ପାଣ୍ଡୁଲିପି ପାଇଁ ବ୍ୟବହୃତ ହେଉଥିବା ବେଳେ ଅନ୍ୟଟି ମୁଖ୍ୟତଃ ସରକାରୀ ଦଲିଲ୍ ତଥା ବ୍ୟକ୍ତିଗତ ଯୋଗାଯୋଗ ପାଇଁ ବ୍ୟବହୃତ ହୋଇଥାଏ। ତାଙ୍କ ପାଇଁ ୟୁ-ମି ଲିପି ଜାଣିବା ନିତାନ୍ତ ଆବଶ୍ୟକ ଥିଲା। ତେଣୁ ସେ ତାହାକୁ ଖୁବ୍ ଶୀଘ୍ର ଶିଖି ନେଇଥିଲେ ଏବଂ ନିଜ ଉଦ୍ୟମରେ 'ଅକ୍‌ବେନ୍' ଶିଖିବା ଆରମ୍ଭ କରିଥିଲେ।

ଲିଖନ ଅଭ୍ୟାସ କରିବା ପରେ ସେ ମୁଖସ୍ଥ ଅଭ୍ୟାସ କରୁଥିଲେ। ଏଥିରେ ସେ ଗୋଟିଏ ବିଷୟକୁ ମୁଖସ୍ଥ କରି ପରବର୍ତ୍ତୀ ସମୟରେ ତାହାକୁ ଆବୃତ୍ତି କରୁଥିଲେ। ଏଠାରେ ଉଲ୍ଲେଖଯୋଗ୍ୟ ଯେ, ତେନ୍‌ଜିନ୍ ଯେତେଶୀଘ୍ର ମୁଖସ୍ଥ କରି ଦେଉଥିଲେ ସେତେଶୀଘ୍ର ପାସୋରି ଦେଉଥିଲେ। ଦିନ ଦଶଟା ବେଳକୁ ତାଙ୍କର ପାଠପଢ଼ା ଶେଷ ହେଉଥିଲା ଏବଂ ଠିକ୍ ସେତିକିବେଳେ ଅନୁଷ୍ଠିତ ହେଉଥିବା ସରକାରୀ ସଦସ୍ୟମାନଙ୍କର ସଭାରେ ସେ ଅଂଶଗ୍ରହଣ କରୁଥିଲେ। ଏହି ସଭା ସରିବାପରେ ସେ ତାଙ୍କ ପ୍ରକୋଷ୍ଠକୁ ଫେରି ଆସୁଥିଲେ ଓ ତାଙ୍କର କନିଷ୍ଠ ଗୃହଶିକ୍ଷକଙ୍କ ନିକଟରେ ମୁଖସ୍ଥ କରିଥିବା ବିଷୟଟିକୁ ଆବୃତ୍ତି କରି ଶୁଣାଉଥିଲେ। ଏହା ପ୍ରାୟ ମଧ୍ୟାହ୍ନ ଯାଏ ଚାଲୁଥିଲା। ମଧ୍ୟାହ୍ନ ପରେ ବାଳକ ତେନ୍‌ଜିନ୍‌ଙ୍କୁ ଖେଳିବା ପାଇଁ ଛାଡ଼ି ଦିଆଯାଉଥିଲା। ତେନ୍‌ଜିନ୍ ଖୁବ୍ ଆନନ୍ଦରେ ଖେଳାଖେଳି କରୁଥିଲେ।

ସେ ଯେଉଁ ପାଠ୍ୟକ୍ରମ ଅଧ୍ୟୟନ କରୁଥିଲେ ତାହା ବୌଦ୍ଧଧର୍ମ ଅଧ୍ୟୟନରେ ଡକ୍‌ଟରେଟ୍ ବା ଉଚ୍ଚତମ ଉପାଧି ପାଇବା ଲାଗି ଉଦ୍ଦିଷ୍ଟ ପାଠ୍ୟକ୍ରମ ସହିତ ସମାନ

ଥିଲା । ମୋଟାମୋଟି ଭାବରେ ତାଙ୍କ ପାଠ୍ୟକ୍ରମରେ ପାଞ୍ଚଗୋଟି ମୁଖ୍ୟ ଏବଂ ପାଞ୍ଚଗୋଟି ଗୌଣ ବିଷୟ ଥିଲା । ମୁଖ୍ୟ ବିଷୟଗୁଡ଼ିକ ହେଉଛି– ତର୍କଶାସ୍ତ୍ର, ତିବ୍‌ବତୀୟ କଳା ଓ ସଂସ୍କୃତି, ସଂସ୍କୃତ, ଭେଷଜବିଦ୍ୟା ଏବଂ ବୌଦ୍ଧଦର୍ଶନ । 'ବୌଦ୍ଧଦର୍ଶନ' ଅତି ଗୁରୁତ୍ୱପୂର୍ଣ୍ଣ ଏବଂ କଷ୍ଟସାଧ ବିଷୟ ଥିଲା । ପୁନଶ୍ଚ ଏହାକୁ ପାଞ୍ଚଭାଗରେ ବିଭକ୍ତ କରାଯାଇଥିଲା । ଯଥା– ପ୍ରଜ୍ଞାପାରମିତା (ଜ୍ଞାନ ବିଶୁଦ୍ଧିକରଣ), ମାଧ୍ୟମିକା (ମଧ୍ୟ-ମାର୍ଗର ଦର୍ଶନ), ବିନୟ (ସନ୍ନ୍ୟାସୀୟ ଶୃଙ୍ଖଳାର ସାଧାରଣ ନୀତିନିୟମ), ଅବିଧର୍ମ (ଆଧ୍ୟାତ୍ମିକ ଶାସ୍ତ୍ର) ଏବଂ ପ୍ରମାଣ (ତର୍କଶାସ୍ତ୍ର ଓ ଜ୍ଞାନତତ୍ତ୍ୱ) । ସେହିଭଳି ପାଠ୍ୟକ୍ରମରେ ଥିବା ପାଞ୍ଚଗୋଟି ଗୌଣ ବିଷୟ ହେଲା– କବିତା, ସଙ୍ଗୀତ, ନାଟକ, ଜ୍ୟୋତିର୍ବିଦ୍ୟା ଏବଂ ଏକାର୍ଥବୋଧକ ଶବ୍ଦ ।

ବାସ୍ତବରେ ସନ୍ନ୍ୟାସୀୟ ଶିକ୍ଷାର ତିବ୍‌ବତୀୟ ବ୍ୟବସ୍ଥାରେ ମୌଳିକ ଭିତ୍ତି ହେଉଛି ଅଧ୍ୟାତ୍ମ ବିଦ୍ୟାର ପରସ୍ପର ବିରୋଧୀ ମତବାଦର ଆଲୋଚନା ତଥା ତା'ର ସମାଧାନ ବା ତର୍କକଳା । ଏଥିରେ ଦୁଇଜଣ ପରସ୍ପର ବିରୋଧୀ ବ୍ୟକ୍ତି ଜଣକ ପରେ ଜଣେ ଅଂଶଗ୍ରହଣ କରିଥାନ୍ତି । ଏହି ପ୍ରକ୍ରିୟାର ସବୁଠୁ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ହେଉଛି ଅଙ୍ଗଭଙ୍ଗୀ ପ୍ରଦର୍ଶନ କରି ପ୍ରଶ୍ନମାନ ଉପସ୍ଥାପନ କରିବା । ଅର୍ଥାତ୍, ପ୍ରଶ୍ନ ପଚାରୁଥିବା ବ୍ୟକ୍ତି ପ୍ରଥମେ ନିଜର ଡାହାଣ ହାତକୁ ଉଠାଇ ମୁଣ୍ଡ ଉପରେ ରଖନ୍ତି । ତା'ପରେ ତଳକୁ ଆଣି ବାମ ହାତରେ ବଜେଇ ତାଳି ମାରନ୍ତି । ଏହି ସମୟରେ ସେ ଏକସଙ୍ଗେ ଦୁଇଗୋଡ଼ ଉଠାଇ ନାଚିବା ଢଙ୍ଗରେ ଭୂମି ଉପରେ ମୃଦୁ ଆଘାତ କରିଥାନ୍ତି । ତା'ପରେ ସେ ତାଙ୍କର ଡାହାଣ ହାତକୁ ନେଇ ତାଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କ ମୁଣ୍ଡ ନିକଟରେ ରଖିଥାନ୍ତି । ଏଭଳି କରିବା ଦ୍ୱାରା ଅତି ଜଟିଳ ବୌଦ୍ଧିକ ପ୍ରଶ୍ନଗୁଡ଼ିକ ମଧ୍ୟ ଅନ୍ୟ ଦେଖଣାହାରୀମାନଙ୍କୁ ବେଶ୍ କୌତୁକ ଯୋଗାଇଥାଏ । ତେନ୍‌ଜିନ୍‌ଙ୍କୁ ବାରବର୍ଷ ହୋଇଥିବାବେଳେ ତାଙ୍କୁ ଏହି ଶିକ୍ଷାକୌଶଳ ଶିଖାଯାଇଥିଲା ଓ ସେଥିଲାଗି ଦୁଇଜଣ ବିଶେଷଜ୍ଞ ବା ସେନ୍‌ସାପ୍ (tsenshap) ନିଯୁକ୍ତ ହୋଇଥିଲେ । ଅପରାହ୍ଣର ଚା'ପାନ କାର୍ଯ୍ୟକ୍ରମ ଶେଷ ହେବାପରେ ଦୁଇଜଣ 'ସେନ୍‌ସାପ୍' ସନ୍ନ୍ୟାସୀ ପହଞ୍ଚି ତାଙ୍କୁ ବିତର୍କ ଓ ତା'ର ସମାଧାନ ଆଦି ସମ୍ପର୍କରେ ଶିକ୍ଷାଦାନ କରିଥାନ୍ତି ।

ପିଲାବେଳେ ତେନ୍‌ଜିନ୍ ଖୁବ୍ ବେପରୁଆ ଥିଲେ । ସେ ଆଦୌ ପାଠମନସ୍କ ନଥିଲେ । ଫଳତଃ ସେ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ ମଧ୍ୟ ତାଙ୍କର ପାଠପଢ଼ାରେ ଅଗ୍ରଗତି ଘଟିପାରୁ ନଥିଲା । ସେଥିଲାଗି ତାଙ୍କର ଶିକ୍ଷକମାନେ ସଦାସର୍ବଦା ଚିନ୍ତିତ

ରହୁଥିଲେ। ତାଙ୍କ ଭିତରର ବେପରୁଆପଣକୁ ଦୂର କରିବା ଲାଗି ଥରେ କେନ୍‌ରାପ୍ ଟେନ୍‌ଜିନ୍ ଏକ ନକଲି ପରୀକ୍ଷାର ଆୟୋଜନ କରାଇଲେ। ଟେନ୍‌ଜିନ୍‌ଙ୍କର ଅନେକ ଝାଡୁଦାର ସନ୍ନ୍ୟାସୀଙ୍କ ସହିତ ଖୁବ୍ ଉତ୍ତମ ସମ୍ପର୍କ ଥିଲା ଓ ସେମାନଙ୍କ ମଧ୍ୟରୁ ନର୍ବୁ ଥଣ୍ଡୁପ୍ ନାମକ ଜଣେ ସନ୍ନ୍ୟାସୀ ତାଙ୍କର ଅତି ପ୍ରିୟ ଥିଲେ। ତାଙ୍କୁ କୁହାଗଲା ଯେ, ନର୍ବୁ ଥଣ୍ଡୁପ୍‌ଙ୍କ ସହିତ ତାଙ୍କର ପ୍ରତିଯୋଗିତା ହେବ। ତେବେ କୌତୂହଳର ବିଷୟ, କେନ୍‌ରାପ୍ ଟେନ୍‌ଜିନ୍ ଏହା ପୂର୍ବରୁ ନର୍ବୁ ଥଣ୍ଡୁପ୍‌ଙ୍କୁ ସମସ୍ତ ପ୍ରଶ୍ନର ଉତ୍ତର ବତେଇ ଦେଇଥିଲେ। ଫଳରେ ପ୍ରତିଦ୍ୱନ୍ଦ୍ୱିତାରେ ଟେନ୍‌ଜିନ୍ ପରାଜିତ ହେଲେ। ସର୍ବସମକ୍ଷରେ ପ୍ରତିଯୋଗିତା ହେଉଥିବା ହେତୁ ଜଣେ ଝାଡୁଦାର ସନ୍ନ୍ୟାସୀଙ୍କ ନିକଟରୁ ହାରିଯିବା ଘଟଣା ତାଙ୍କୁ ଖୁବ୍ ବାଧିଲା। ସେ ଦୁଃଖ ଅପମାନରେ ଭାଙ୍ଗିପଡ଼ିଲେ। ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ଶିକ୍ଷା କେତେ ଗୁରୁତ୍ୱପୂର୍ଣ୍ଣ ତାହା ବୁଝିପାରିଲେ ଓ କଠିନ ପରିଶ୍ରମ କରି ବିଦ୍ୟାଧ୍ୟୟନ କରିବାକୁ ଲାଗିଲେ।



# (୮) ପ୍ରକୃତି ପ୍ରେମ

ଚତୁର୍ଦ୍ଦଶ ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ କିଶୋର ଅବସ୍ଥାରେ ଅତ୍ୟନ୍ତ ପ୍ରକୃତିପ୍ରେମୀ ଥିଲେ। ସେ ପଶୁପକ୍ଷୀ ତଥା ଅନ୍ୟାନ୍ୟ ଜୀବଜନ୍ତୁଙ୍କୁ ଖୁବ୍ ଭଲ ପାଉଥିଲେ ଓ ସ୍ନେହ କରୁଥିଲେ। ଯେତେବେଳେ ସେ ପୋଟାଲା ରାଜପ୍ରାସାଦ ଛାଡ଼ି ନର୍ବୁଲିଙ୍ଗକା ଯାଉଥିଲେ ସେତେବେଳେ ସେ ପ୍ରକୃତିପ୍ରେମରେ ନିଜକୁ ହଜାଇ ଦେଉଥିଲେ। ବର୍ଷକରେ ସେ ପୋଟାଲାରେ ଛ'ମାସ ଏବଂ ନର୍ବୁଲିଙ୍ଗକାରେ ଛ'ମାସ ରହୁଥିଲେ। ବିଶେଷକରି, ପୋଟାଲାରେ ସେ ଶୀତକାଳ ଅତିବାହିତ କରୁଥିଲେ। ଆଉ ବସନ୍ତକାଳ ପ୍ରାରମ୍ଭରେ ନର୍ବୁଲିଙ୍ଗକା ଚାଲିଯାଉଥିଲେ। ତାଙ୍କର ଯାତ୍ରା ଆରମ୍ଭ କରିବା ପୂର୍ବରୁ ଏକ ଉତ୍ସବ ଅନୁଷ୍ଠିତ ହେବା ସହିତ କେତେକ ଔପଚାରିକ ସଂସ୍କାରବିଧି ପାଳନ କରାଯାଉଥିଲା। ଏହା ଶେଷହେବାକୁ ପ୍ରାୟ ଦୁଇଘଣ୍ଟା ଲାଗେ। ମାତ୍ର ତେନ୍‌ଜିନ୍ ନର୍ବୁଲିଙ୍ଗକାରେ ପହଞ୍ଚିବା ଲାଗି ଏତେ ପରିମାଣରେ ଉତ୍ସାହିତ ହୋଇପଡ଼ିଥାନ୍ତି ଯେ, ଏହି ଦୁଇଘଣ୍ଟାର କାର୍ଯ୍ୟକ୍ରମ ତାଙ୍କୁ ଖୁବ୍ ଦୀର୍ଘ ମନେହୁଏ ଓ ସେ ଖୁବ୍ କ୍ଳାନ୍ତି ଅନୁଭବ କରିଥାନ୍ତି। ତା'ପରେ ତାଙ୍କୁ ଏକ ବିରାଟ ଶୋଭାଯାତ୍ରାରେ ପୋଟାଲାରୁ ନର୍ବୁଲିଙ୍ଗକାକୁ ନିଆଯାଏ। ମାତ୍ର ଏଭଳି ଶୋଭାଯାତ୍ରା ପାଇଁ ସେ ଆଦୌ ଆଗ୍ରହ ଦେଖାନ୍ତି ନାହିଁ। କାରଣ ସେ ଯଦି ଶୋଭାଯାତ୍ରାରେ ନ ଯାଇ ପାଦରେ ଚାଲି ଚାଲି ଯାଆନ୍ତେ ତା'ହେଲେ ସେ ସବୁଜିମାଭରା ଗ୍ରାମାଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟର ମନୋରମ ଦୃଶ୍ୟସବୁକୁ ଖୁବ୍ ଭଲଭାବରେ ଉପଭୋଗ କରିପାରିଥାନ୍ତେ। ମାତ୍ର ତାହା ହେଉ ନଥିବାରୁ ତାଙ୍କ ମନ ଦୁଃଖପୂର୍ଣ୍ଣ ହୋଇଯାଏ। ତେବେ ନର୍ବୁଲିଙ୍ଗକାରେ ପହଞ୍ଚିବାକ୍ଷଣି ତାଙ୍କ ଭିତରେ ଶିହରଣ ଖେଳିଯାଏ।

ନର୍ବୁଲିଙ୍ଗକାଠାରେ ଏକ ମନୋରମ ଉଦ୍ୟାନ ଥିଲା। ଉଦ୍ୟାନ ଚାରିପଟ ପାଚେରୀ ପରିବେଷ୍ଟିତ ହୋଇ ରହିଥିଲା ଏବଂ ତା' ମଧ୍ୟରେ କର୍ମଚାରୀଙ୍କ ରହିବା ଲାଗି ଅନେକ କୋଠାଘର ନିର୍ମିତ ହୋଇଥିଲା। ଉଦ୍ୟାନ ମଧ୍ୟରେ ଏକ ଆଭ୍ୟନ୍ତରୀଣ ପ୍ରାଚୀର ଥିଲା ଯାହାର ନାମ ପୀତ ପ୍ରାଚୀର (Yellow Wall)। ଦଲାଇ ଲାମା, ତାଙ୍କ ପରିବାରବର୍ଗ ଓ କେତେଜଣ ନିର୍ଦ୍ଦିଷ୍ଟ ସନ୍ନ୍ୟାସୀଙ୍କ ବ୍ୟତୀତ ସେ ପ୍ରାଚୀର ଅତିକ୍ରମ

କରିବା ପାଇଁ କାହାରିକୁ ଅନୁମତି ମିଳୁନଥିଲା । ତା' ମଧ୍ୟରେ ଦଲାଇ ଲାମାଙ୍କ ବାସଭବନ ଥିଲା ଓ ଏକ ବୃହତ୍ ରମଣୀୟ ଉଦ୍ୟାନ ତାହାକୁ ଘେରି ରହିଥିଲା । ତେନ୍‌ଜିନ୍ ସେହି ଉଦ୍ୟାନରେ ଚାଲିଚାଲି ବୁଲୁଥିଲେ ଓ ସେଠାରେ ଥିବା ପଶୁପକ୍ଷୀମାନଙ୍କୁ ଦେଖି ଆନନ୍ଦରେ ବିଭୋର ହୋଇଯାଉଥିଲେ । ସେ ସେଠାରେ ଘଣ୍ଟାଘଣ୍ଟା ଧରି ବସୁଥିଲେ । ଉଦ୍ୟାନରେ କସ୍ତୁରୀ ମୃଗ, ବଡ଼ବଡ଼ ଶିକାରୀ କୁକୁର, କୁମ୍‌ବୁମ୍‌ରୁ ଅଣାଯାଇଥିବା ଛୋଟ ଗୋଡ଼, ଚେପ୍‌ଟା ମୁହଁ ଓ ଲମ୍ବା ରେଶମୀ ବାଳଥିବା ଗୋଟିଏ କୁକୁର, ଅଳ୍ପ କେତେଗୋଟି ପାହାଡ଼ୀ ଛେଳି, ମାଙ୍କଡ଼, ଓଟ, ଚିତାବାଘ, ଶୁଆ, ମୟୂର, ବଗ, ଦୁଇଗୋଟି ସୁବର୍ଣ୍ଣ ବତକ ଏବଂ ଅନେକଗୁଡ଼ିଏ କାନାଡ଼ୀୟ ବତକ ରଖାଯାଇଥିଲେ । ଏମାନଙ୍କ ସହିତ ତେନ୍‌ଜିନ୍ ଏପରି ମଜ୍ଜି ଯାଉଥିଲେ ଯେ, କେତେବେଳେ ସମୟ ଅତିବାହିତ ହୋଇଯାଉଥିଲା ତାହା ସେ ଜାଣିପାରୁ ନଥିଲେ ।

ତେନ୍‌ଜିନ୍ ଅନେକ ସମୟରେ ଗୋଟିଏ ଶୁଆ ସହିତ ବନ୍ଧୁତା ସ୍ଥାପନ କରିବାକୁ ଚାହୁଁଥିଲେ । କାରଣ ସେ ଦେଖିଥିଲେ ଯେ, ତାଙ୍କର ପୋଷାକ ପରିଚ୍ଛଦ ବିଭାଗ ମୁଖ୍ୟ କେନ୍‌ରାପ୍ ତେନ୍‌ଜିନ୍ ଗୋଟିଏ ଶୁଆକୁ ଖୁବ୍ ଭଲ ଭାବରେ ପୋଷା ମଣେଇ ଦେଇଥିଲେ । ସେ ଶୁଆକୁ ବାଦାମ ଖୁଆଉଥିଲେ । ତା' ମୁଣ୍ଡ ଆଉଁଷି ଦେଉଥିଲେ । ଏହା ତାଙ୍କ ଉପରେ ଖୁବ୍ ପ୍ରଭାବ ପକାଇଥିଲା ଓ ସେ ତାହାକୁ ଭଲ ପାଇ ବସିଥିଲେ । ସେଥିଲାଗି ସେ ମଧ୍ୟ ଠିକ୍ ସେଇଭଳି ଶୁଆ ପାଳନ କରିବାକୁ ଇଚ୍ଛା ପୋଷଣ କରୁଥିଲେ । ମାତ୍ର ସେଥିରେ ତାଙ୍କୁ ଟିକିଏ ବି ସଫଳତା ମିଳି ନଥିଲା । ଥରେ ଶୁଆକୁ ପୋଷା ମଣେଇବାରେ ବିଫଳ ହେବା ଯୋଗୁଁ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଶୁଆକୁ ଦଣ୍ଡ ଦେବା ନିମନ୍ତେ ଏକ ବାଡ଼ି ଧରି ପିଟିବାକୁ ଧାଇଁ ଯାଇଥିଲେ । ଫଳରେ ଶୁଆଟି ଭୟଭୀତ ହୋଇ ଉଡ଼ି ପଳାଇଥିଲା ଓ ଆଉ କେବେ ବି ତାଙ୍କର ପାଖ ମାଡ଼ି ନଥିଲା । ଏହି ଘଟଣାରୁ ସେ ଶିକ୍ଷା ଲାଭକଲେ ଯେ, ବଳପ୍ରୟୋଗ ଦ୍ୱାରା ନୁହେଁ; କେବଳ ଦୟା, କରୁଣା ତଥା ସହାନୁଭୂତି ଦ୍ୱାରା ହିଁ ବନ୍ଧୁତା ସ୍ଥାପନ କରାଯାଇପାରେ ।

ଲିଙ୍ଗ ରିନ୍‌ପୋଚି ଗୋଟିଏ ମାଙ୍କଡ଼କୁ ପୋଷା ମଣେଇ ପାରିଥିଲେ । ସେହି ମାଙ୍କଡ଼ଟି ସହିତ ତାଙ୍କର ମଧ୍ୟ ବେଶ୍ ବନ୍ଧୁତା ସ୍ଥାପିତ ହୋଇଯାଇଥିଲା । ସେ ମାଙ୍କଡ଼ଟିକୁ ଅତ୍ୟନ୍ତ ସ୍ନେହ କରୁଥିଲେ ଓ ତାକୁ ଖାଇବା ପାଇଁ ଦେଉଥିଲେ । ମାଙ୍କଡ଼ଟି ତାଙ୍କୁ ଏପରି ଭାବରେ ଚିହ୍ନି ଯାଇଥିଲା ଯେ, ତେନ୍‌ଜିନ୍‌ଙ୍କୁ ଦେଖିବା ମାତ୍ରେ ତାଙ୍କ ନିକଟକୁ ଦୌଡ଼ି ଆସି ତାଙ୍କ ପକେଟରେ ହାତ ପୂରେଇ ଦେଉଥିଲା । ନିକଟସ୍ଥ ଏକ ହ୍ରଦରେ

ପ୍ରଚୁର ପରିମାଣରେ ମାଛ ଥିଲେ। ତେନ୍‌ଜିନ୍ ସେମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିପାରିଥିଲେ। ହ୍ରଦ କୂଳରେ ଠିଆହୋଇ ସେ ମାଛମାନଙ୍କୁ ଶବ୍ଦକରି ଡାକୁଥିଲେ। ଯଦି ତାଙ୍କର ଡାକଶୁଣି ମାଛଗୁଡ଼ିକ କୂଳକୁ ଚାଲିଆସୁଥିଲେ ତା'ହେଲେ ସେ ସେମାନଙ୍କୁ ପାଉଁରୁଟି ଆଦି ଖାଦ୍ୟ ଖାଇବାକୁ ଦେଉଥିଲେ। ମାତ୍ର ଅନେକ ପ୍ରୟାସ ସତ୍ତ୍ୱେ ଯଦି ଗୋଟିଏ ବି ମାଛ ତାଙ୍କର ଶବ୍ଦ ଶୁଣି କୂଳକୁ ଆସୁ ନଥିଲେ ତାହାହେଲେ ସେ ପ୍ରଚଣ୍ଡ ଭାବରେ ରାଗି ଯାଉଥିଲେ ଓ ସେମାନଙ୍କ ଉପରକୁ ଟେକା ପଥର ଫୋପାଡୁଥିଲେ। କାରଣ ତାଙ୍କ ଭିତରୁ ଶିଶୁସୁଲଭ ଚପଳତା ଯାଇ ନଥିଲା ଓ ଏହାକୁ ସେ ମନଭରି ଉପଭୋଗ କରୁଥିଲେ।

ଘାସ ଉପରେ ଶୋଇ ଆକାଶର ତାରାଙ୍କୁ ଦେଖିବା ଓ ପାଣିରେ ପହଁରିବା ତାଙ୍କର ଅନ୍ୟ ଦୁଇଗୋଟି ଅଭ୍ୟାସ ଥିଲା। ସେ ପାଣିରେ ପହଁରିବାକୁ ଖୁବ୍ ଭଲ ପାଉଥିଲେ। ଥରେ ପହଁରୁ ପହଁରୁ ସେ ପାଣିରେ ବୁଡ଼ି ଯାଉଥିଲେ। ମାତ୍ର ତିବ୍‌ବତରୁ ଆସିଥିବା ଜଣେ ପୂର୍ବତନ ସୈନିକ ତଥା ତାଙ୍କର ଝାଡୁଦାରଙ୍କ ଯୋଗୁଁ ସେ ଉଦ୍ଧାର ପାଇଯାଇଥିଲେ। ଫଳରେ ଏକ ବଡ଼ ଧରଣର ଦୁର୍ଘଟଣା ଟଳି ଯାଇଥିଲା।

ନର୍ବୁଲିଙ୍ଗକା ପାଖ ଦେଇ ଏକ ଉପନଦୀ ବହି ଯାଉଥିଲା। ସେ ଏହି ନଦୀ କୂଳରେ ବୁଲିବାକୁ ଖୁବ୍ ଭଲ ପାଉଥିଲେ। ଏହାଦ୍ୱାରା ତାଙ୍କ ମନରେ ଅଫୁରନ୍ତ ଆନନ୍ଦ ଭରି ଯାଉଥିଲା। ମାତ୍ର ତାଙ୍କୁ ବାହାରକୁ ଯାଇ ଏହି ନଦୀକୂଳରେ ବୁଲିବା ପାଇଁ ସୁଯୋଗ କିମ୍ବା ଅନୁମତି ମିଳୁ ନଥିଲା। ତେବେ ସେ ଛଦ୍ମବେଶ ଧରି ଅତି ଗୋପନୀୟତାର ସହିତ ବାହାରକୁ ଚାଲି ଯାଉଥିଲେ ଓ ଜଳଧାର ନିକଟରେ ପହଞ୍ଚି ବୁଲାବୁଲି କରୁଥିଲେ। ମନ ପୂରିଗଲା ପରେ ସେ ପୁଣି ନିଜର ନଅରକୁ ଫେରିଆସୁଥିଲେ। ଏକଥା ଅନେକ ଦିନ ପର୍ଯ୍ୟନ୍ତ କେହି ଜାଣିପାରୁ ନଥିଲେ। ମାତ୍ର ତଥାଗ୍ ରିନ୍‌ପୋଚି ଯେତେବେଳେ ଜାଣିଲେ ସେତେବେଳେ ସେ ତୁରନ୍ତ ଏହାକୁ ବନ୍ଦ କରିଦେଲେ। କାରଣ ଦଲାଇ ଲାମାଙ୍କ ନିମନ୍ତେ ଉଦ୍ଦିଷ୍ଟ ନିୟମସବୁ ଖୁବ୍ କଠୋର ଥିଲା। ସେଥିଲାଗି ତାଙ୍କୁ ସବୁବେଳେ ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ମଧଦେଇ ଜୀବନ ଅତିବାହିତ କରିବାକୁ ପଡୁଥିଲା। ତା'ଛଡ଼ା ତତ୍କାଳୀନ ତିବ୍‌ବତୀୟ ସମାଜ ଖୁବ୍ ରକ୍ଷଣଶୀଳ ଥିଲା। ଏମିତିକି ବରିଷ୍ଠ ସରକାରୀ କର୍ମଚାରୀଙ୍କୁ ମଧ ତଳମୁହାଁ ହୋଇ ବାଟ ଚାଲିବାକୁ ପଡୁଥିଲା।

ବୟସରେ ଖୁବ୍ ସାନ ହୋଇଥିବା ହେତୁ ତେନ୍‌ଜିନ୍ ଏସବୁ ରକ୍ଷଣଶୀଳତାରେ ଅଣନିଃଶ୍ୱାସୀ ହୋଇପଡୁଥିଲେ। ତେଣୁ ଯେତେବେଳେ ସେ ନିଜର ପିତାମାତାଙ୍କ ନିକଟକୁ ଯାଉଥିଲେ ସେତେବେଳେ ସେ ଖୁବ୍ ଆନନ୍ଦ ଅନୁଭବ କରୁଥିଲେ। ବାଳକ ତେନ୍‌ଜିନ୍ ଖୁବ୍ ଖାଦ୍ୟପ୍ରିୟ ଥିଲେ। ଥରେ ସେ ଶୁଖିଲା ମାଂସକୁ ଲଙ୍କା ଚଟଣିରେ ବୁଡ଼େଇ ଏତେ ପରିମାଣରେ ଖାଇଦେଇଥିଲେ ଯେ, ତାଙ୍କର ଦେହ ଅସୁସ୍ଥ ହୋଇଯାଇଥିଲା। ପରେପରେ ବାନ୍ତି ହେବା ଯୋଗୁଁ ସେ ସାମାନ୍ୟ ସୁସ୍ଥ ଅନୁଭବ କଲେ।

ସେ ନୂଆବର୍ଷକୁ ଖୁବ୍ ଭଲ ଭାବରେ ପାଳନ କରୁଥିଲେ। ନୂଆବର୍ଷରେ ତାଙ୍କର ମୁଖ୍ୟ ଆକର୍ଷଣ ଥିଲା ପାରମ୍ପରିକ ମିଠା, ବିସ୍କୁଟ୍ ଓ ପାଉଁରୁଟି ସେକିବା। ମାତ୍ର ଏହା କରୁଥିବାବେଳେ ଥରେ ତାଙ୍କର ହାତ ପୋଡ଼ି ଯାଇଥିଲା।



# (୯) ଅଭିଷେକ ଓ ଦୁର୍ଭାଗ୍ୟର ଦିନ ଆରମ୍ଭ

୧୯୫୦ ମସିହାର ଏକ ଗ୍ରୀଷ୍ମଦିନ । ନର୍ବୁଲିଙ୍ଗକାଠାରେ ସ୍ନାନାଗାରରୁ ତେନ୍‌ଜିନ୍ ବାହାରି ଆସୁଥିବାବେଳେ ସେ ଅନୁଭବ କଲେ ଯେ, ତାଙ୍କର ପାଦତଳର ଭୂମି ହଲଚଲ ହେବାରେ ଲାଗିଛି । ତିବ୍‌ବତ ଏକ ଭୂକମ୍ପ ପ୍ରବଣ ଅଞ୍ଚଳ ହୋଇଥିବାରୁ ଏହା ଭୂମିକମ୍ପ ଯୋଗୁଁ ହୋଇଥାଇପାରେ ବୋଲି ସେ ଅନୁମାନ କଲେ । ଘର ଭିତରକୁ ପଶି ଦେଖିଲେ ଯେ, ଘରେ ଥିବା ଚିତ୍ରଗୁଡ଼ିକ ପୂର୍ବ ସ୍ଥାନରେ ନରହି ଏପଟ ସେପଟ ହୋଇଯାଇଛି । ଏହି ସମୟରେ ସେ ଏକ ପ୍ରଚଣ୍ଡ ବିସ୍ଫୋରଣର ଶବ୍ଦ ଶୁଣିଲେ । ସଙ୍ଗେସଙ୍ଗେ ବାହାରକୁ ଦୌଡ଼ିଗଲେ । ସେ ଭାବିଲେ ଯେ, ବୋଧହୁଏ ତିବ୍‌ବତୀୟ ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ପରୀକ୍ଷାନୀରିକ୍ଷା କରୁଛନ୍ତି । ପରଦିନ ଜଣାପଡ଼ିଲା ଯେ, ବାସ୍ତବରେ ଏହା ଏକ ସାମରିକ ପରୀକ୍ଷଣ ନଥିଲା, ଥିଲା ଏକ ପ୍ରାକୃତିକ ଦୁର୍ଘଟଣା । ଏମିତିକି ଏହି ଭୂମିକମ୍ପ କଲିକତାରେ ମଧ୍ୟ ଅନୁଭୂତ ହୋଇଥିବା କଥା ଶୁଣିବାକୁ ମିଳିଥିଲା । ଏହା ପ୍ରଳୟର ପୂର୍ବାଭାସ ହୋଇପାରେ ବୋଲି ଲୋକମାନେ କୁହାକୁହି ହେଉଥିଲେ । ଏହାର ଦୁଇଦିନ ପରେ ନର୍ବୁଲିଙ୍ଗକାରେ ଏକ ଗୀତିନାଟ୍ୟ ଉତ୍ସବ ଆରମ୍ଭ ହେଲା । ମାତ୍ର ତେନ୍‌ଜିନ୍ ତାହାକୁ ଠିକ୍ ଭାବରେ ଉପଭୋଗ କରିପାରିଲେ ନାହିଁ । କାରଣ ଗୀତିନାଟ୍ୟ ଚାଲିଥିବାବେଳେ ଜଣେ ବାର୍ତ୍ତାବହ ସେ ବସିଥିବା ସ୍ଥାନ ଆଡ଼କୁ ଧାଇଁଧାଇଁ ଆସୁଥିବାର ଦେଖିବାକୁ ପାଇଲେ । ସେହି ଲୋକ ଜଣଙ୍କୁ ତୁରନ୍ତ ତଥାଗ୍ ରିନ୍‌ପୋଚିଙ୍କ ନିକଟକୁ ନିଆଗଲା । ତେନ୍‌ଜିନ୍ ଅନୁଭବ କଲେ ଯେ, କୌଣସି ନା କୌଣସି ଅସୁବିଧା ହୋଇଥାଇପାରେ । ବାସ୍ତବରେ ସେ ଜାଣିବାକୁ ପାଇଲେ ଯେ, ଲୋକ ଜଣଙ୍କ ଚାମ୍‌ଡୋଠାରେ ଥିବା ଖାମ୍‌ର ଗଭର୍ଣ୍ଣରଙ୍କ ପାଖରୁ ତଥାଗ ରିନ୍‌ପୋଚିଙ୍କ ନିକଟକୁ ଏକ ତାରବାର୍ତ୍ତା ନେଇ ଆସିଥିଲେ । ଏଥିରେ ଲେଖାଥିଲା ଯେ, ଚୀନ୍‌ର ସୈନିକମାନେ ଏକ ତିବ୍‌ବତୀୟ ସେନା ଚୌକି ଉପରେ ଆକ୍ରମଣ କରି ଏହାର ଦାୟିତ୍ୱରେ ଥିବା ଅଧିକାରୀଙ୍କୁ ହତ୍ୟା କରିଛନ୍ତି । ବାସ୍ତବରେ ଏହା ଲାସା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ତଥା ଉଦ୍‌ବେଗଜନକ ସମ୍ବାଦ ଥିଲା । ଏହାର ଦୁଇମାସ ପରେ ଜନ ମୁକ୍ତି ବାହିନୀର ୮୦,୦୦୦ ସୈନ୍ୟ

ଚାମ୍‌ଡୋର ପୂର୍ବଦିଗରେ ଥିବା ଡ୍ରିଚୁ ନଦୀ ଅତିକ୍ରମ କରି ଲାସାରେ ପହଞ୍ଚିଗଲେ । ଲାସାର ପତନ ଆସିଗଲା ବୋଲି ସମସ୍ତେ ଧରିନେଲେ । କାରଣ ଚୀନ୍‌ର ସୈନ୍ୟଶକ୍ତି ତୁଳନାରେ ତିବ୍‌ବତର ସୈନ୍ୟସଂଖ୍ୟା ଖୁବ୍ କମ୍ ଥିଲା ।

ତେବେ ତିବ୍‌ବତର ସ୍ୱାଧୀନତା ପ୍ରତି ଏଭଳି ଆକ୍ରମଣ ବିଶ୍ୱବାସୀଙ୍କୁ ଚକିତ କରିଦେଇଥିଲା । ଭାରତ ସରକାରଙ୍କ ପକ୍ଷରୁ ଚୀନ୍ ସାଧାରଣତନ୍ତ୍ର ନିକଟରେ ଅଭିଯୋଗ କରି କୁହାଯାଇଥିଲା ଯେ, ଏହି ଆକ୍ରମଣ ଶାନ୍ତିର ପଥକୁ କେବେହେଲେ ସୁଗମ କରିବ ନାହିଁ । ଏପରିକି ତିବ୍‌ବତର ଶାନ୍ତି ପ୍ରସଙ୍ଗରେ ୧୯୫୦ ମସିହାରେ ମିଳିତ ଜାତିସଂଘରେ ନିବେଦନ ମଧ୍ୟ କରାଯାଇଥିଲା । ମାତ୍ର ତିବ୍‌ବତ ଜାତିସଂଘର ସଦସ୍ୟ ହୋଇ ନ ଥିବା ହେତୁ ତାହା ଗ୍ରହଣଯୋଗ୍ୟ ବୋଲି ବିବେଚିତ ହେଲାନାହିଁ । ଏହି ସମୟରେ ତେନ୍‌ଜିନ୍‌ଙ୍କୁ ପ୍ରାପ୍ତବୟସ୍କ ଦଲାଇ ଲାମା ଭାବରେ ଘୋଷଣା କରିବା ପାଇଁ ଲୋକମାନେ ଦାବି କରିବା ଆରମ୍ଭ କରିଦେଲେ । ତେବେ କିଛିଲୋକ କହୁଥିଲେ ଯେ, ଏବେ ବି ଦଲାଇ ଲାମା ରୂପେ ଦାୟିତ୍ୱ ବହନ କରିବାପାଇଁ ତାଙ୍କର ବୟସ ହୋଇନାହିଁ । ଏସବୁ ସତ୍ତ୍ୱେ ସରକାର ଏହି ପ୍ରସଙ୍ଗଟିକୁ ଜାତୀୟ ଆଧ୍ୟାତ୍ମିକ ପରାମର୍ଶଦାତାଙ୍କ ନିକଟରେ ଉପସ୍ଥାପନ କଲେ । ଜାତୀୟ ପରାମର୍ଶଦାତା ମଣ୍ଡଳୀର ସଦସ୍ୟମାନେ ବହୁ ସମୟ ବିଚାର ବିମର୍ଶ କରି ତାଙ୍କ ନିକଟକୁ ଆସିଲେ ଓ ଗୋଟିଏ ଧଳା ରେଶମୀ ଗଳାବନ୍ଧ (kata) ତାଙ୍କୁ ଉପହାର ଦେଇ କହିଲେ - Thu-La-Bap, ଯାହାର ଅର୍ଥ ତାଙ୍କର ସମୟ ଆସିଗଲା । ଏବେ କେବଳ ତାଙ୍କର ଅଭିଷେକ ଏବଂ ସିଂହାସନ ଆରୋହଣ କାର୍ଯ୍ୟ ବାକି ରହିଲା ଓ ସେଥିଲାଗି ଜ୍ୟୋତିଷମାନଙ୍କ ପରାମର୍ଶକୁ ଅପେକ୍ଷା କରାଗଲା । ଜ୍ୟୋତିଷମାନେ ୧୯୫୦ ମସିହା ନଭେମ୍ବର ମାସ ୧୭ ତାରିଖକୁ ତାଙ୍କ ସିଂହାସନ ଆରୋହଣର ପ୍ରକୃଷ୍ଟ ଦିନ ଭାବରେ ବିଚାର କଲେ ।

ଅଭିଷେକ ଦିବସର ପନ୍ଦର ଦିନ ପୂର୍ବରୁ ତେନ୍‌ଜିନ୍‌ଙ୍କ ବଡ଼ଭାଇ ଆସି ଲାସାରେ ପହଞ୍ଚିଗଲେ । ତାଙ୍କୁ ଦେଖି ତେନ୍‌ଜିନ୍ ଜାଣିପାରିଲେ ଯେ, ସେ ଅନେକ ଦୁର୍ଦ୍ଦଶା ଭୋଗିଛନ୍ତି । ବାସ୍ତବରେ ଜଣାଗଲା ଯେ, ସେ ଥିବା କୁମ୍‌ବୁମ୍ ଆଶ୍ରମ ଓ ସେହି ସଂଲଗ୍ନ ଅଞ୍ଚଳକୁ କମ୍ୟୁନିଷ୍ଟମାନେ ଅକ୍ତିଆର କରିନେଇଛନ୍ତି ଏବଂ ଆଶ୍ରମର ସନ୍ନ୍ୟାସୀମାନଙ୍କର ଅସ୍ତିତ୍ୱ ଲୋପ କରିବାକୁ ଚେଷ୍ଟା କରିଛନ୍ତି । ସେମାନେ ତାଙ୍କର ବଡ଼ଭାଇଙ୍କୁ ଚେତାବନୀ ଦେଇ କହିଛନ୍ତି ଯେ, ଯଦି ସେ ଚୀନ୍‌ର ଶାସନକୁ ଗ୍ରହଣ

କରିନେବା ପାଇଁ ତେନ୍‌ଜିନ୍‌ଙ୍କୁ ପ୍ରବର୍ତ୍ତାଇ ପାରିବେ ତେବେ ସେମାନେ ତାଙ୍କୁ ମୁକ୍ତ କରିଦେବେ । ଯଦି ତେନ୍‌ଜିନ୍ ଚୀନ୍‌ର ଶାସନକୁ ପ୍ରତିରୋଧ କରନ୍ତି ତା'ହେଲେ ସେ ତାଙ୍କୁ ହତ୍ୟା କଲେ ସେମାନେ ତାଙ୍କର ବଡ଼ଭାଇଙ୍କୁ ପୁରସ୍କୃତ କରିବେ । ଏହାଥିଲା ବୌଦ୍ଧମାନଙ୍କ ପାଇଁ ଅତି ଘୃଣ୍ୟ ତଥା ବିସ୍ମୟକର ପ୍ରସ୍ତାବ । ସାଧାରଣତଃ ଚୀନ୍‌ର କମ୍ୟୁନିଷ୍ଟମାନେ ନିଷ୍ଠୁର ବୋଲି ବିବେଚନା କରାଯାଏ । ମାତ୍ର ଏହି ଘଟଣାରୁ ସେମାନେ ଯେ ଧର୍ମବିଶ୍ୱାସର ମଧ୍ୟ ବିରୋଧୀ ସେକଥା ତେନ୍‌ଜିନ୍ ହୃଦ୍‌ବୋଧ କରିପାରିଥିଲେ ।

ନଭେମ୍ବର ୧୭ ତାରିଖକୁ ଅଭିଷେକର ଦିନ ଧାର୍ଯ୍ୟ କରାଯାଇଥିଲା । ସେଥିଲାଗି ସମସ୍ତ ପ୍ରକାର ପ୍ରସ୍ତୁତି ମଧ୍ୟ ଆରମ୍ଭ ହୋଇଯାଇଥିଲା । ୧୭ ତାରିଖ ଦିନ ସକାଳେ ତେନ୍‌ଜିନ୍ ରାତି ପାହିବା ଆଗରୁ ଶଯ୍ୟା ତ୍ୟାଗକଲେ । ପୋଷାକ ପିନ୍ଧୁଥିବା ବେଳେ ତାଙ୍କର ପରିଧାନ ବିଭାଗ ମୁଖ୍ୟ ତାଙ୍କ ଅଣ୍ଟା ଚାରିପଟେ ପିନ୍ଧିବା ପାଇଁ ତାଙ୍କୁ ଗୋଟିଏ ସବୁଜ ଲୁଗା ପ୍ରଦାନ କଲେ । କାରଣ ସବୁଜ ରଙ୍ଗକୁ ତିବ୍‌ବତରେ ଅତି ଶୁଭ ରଙ୍ଗ ବୋଲି ବିଚାର କରାଯାଇଥାଏ । ଅଭିଷେକ ଉତ୍ସବ ତେନ୍‌ଜିନ୍‌ଙ୍କ ପାଇଁ ଏକ ଗୌରବପୂର୍ଣ୍ଣ ଏବଂ ମର୍ଯ୍ୟାଦାବନ୍ତ ତଥା ଚମତ୍କାର ଘଟଣା ଥିଲା । ତିବ୍‌ବତର ସମସ୍ତ ସରକାରୀ ଅଧିକାରୀ ତଥା ବିଦେଶୀ ସରକାରଙ୍କ ରାଷ୍ଟ୍ରଦୂତମାନେ ମଧ୍ୟ ସେହି ସ୍ଥାନରେ ଉପସ୍ଥିତ ଥିଲେ । ଉତ୍ସବ ଅବସରରେ ତାଙ୍କୁ ଏକ ସୁବର୍ଣ୍ଣ ଚକ୍ର ପ୍ରଦାନ କରାଗଲା । ଏହି ସୁବର୍ଣ୍ଣ ଚକ୍ରଟି ଜାଗତିକ କ୍ଷମତା ଗ୍ରହଣର ପ୍ରତୀକ ଥିଲା । ସେହିଦିନ ସନ୍ଧ୍ୟା ସୁଦ୍ଧା ସିଂହାସନ ଆରୋହଣ ପର୍ବ ଶେଷ ହେଲା । ସେତେବେଳକୁ ତାଙ୍କୁ ମାତ୍ର ୧୫ ବର୍ଷ ବୟସ ହୋଇଥାଏ । ଏହି ୧୫ ବର୍ଷ ବୟସରେ ବି ଚୀନ୍ କମ୍ୟୁନିଷ୍ଟଙ୍କ ଦ୍ୱାରା ଉତ୍ପୀଡ଼ିତ ୬ ନିୟୁତ ଲୋକଙ୍କର ନେତା ରୂପେ ନିଜକୁ ଦେଖିବାକୁ ଲାଗିଲେ । ଏହା ପରେ ତାଙ୍କର ପ୍ରଥମ କାର୍ଯ୍ୟ ଥିଲା ୯ ଜଣ ନୂତନ ପ୍ରଧାନମନ୍ତ୍ରୀ ନିଯୁକ୍ତ କରିବା । ତିବ୍‌ବତର ପ୍ରତ୍ୟେକ କ୍ଷେତ୍ର ପାଇଁ ସାଧାରଣତଃ ଦୁଇଜଣ ଲେଖାଏଁ ଅଧିକାରୀଙ୍କୁ ନିଯୁକ୍ତ କରାଯାଇଥାଏ । ଜଣେ ସାଧାରଣ ବ୍ୟକ୍ତି ହୋଇଥିବା ବେଳେ ଅନ୍ୟଜଣେ ସନ୍ନ୍ୟାସୀ ସମ୍ପ୍ରଦାୟର ହୋଇଥାନ୍ତି । ତେନ୍‌ଜିନ୍ ଲବ୍‌ସାଙ୍ଗ୍ ଟାସୀ ନାମକ ଜଣେ ସନ୍ନ୍ୟାସୀ ଏବଂ ଲୁଖାଂଗ୍ୱା ନାମକ ଜଣେ ସାଧାରଣ ଅଭିଜ୍ଞ ବ୍ୟକ୍ତିଙ୍କୁ ପ୍ରଧାନମନ୍ତ୍ରୀ ଭାବରେ ଚୟନ କଲେ । ଏହାପରେ ସେ ଆଭ୍ୟନ୍ତରୀଣ ମନ୍ତ୍ରୀ ପରିଷଦ ସହ ପରାମର୍ଶ କରି ଆମେରିକା, ଇଂଲଣ୍ଡ ଓ ନେପାଳ ଆଦି ଦେଶକୁ ପ୍ରତିନିଧି ପଠାଇବା ପାଇଁ ସ୍ଥିର କଲେ । ସେହିପରି ତିବ୍‌ବତରୁ

ସେନା ଅପସାରଣ କରିବା ନିମନ୍ତେ ଅନୁରୋଧ କରି ଚୀନ୍‌କୁ ଏକ ପ୍ରତିନିଧି ଦଳ ପଠାଇବା ନିମନ୍ତେ ମଧ୍ୟ ନିଷ୍ପତ୍ତି ନିଆଗଲା। ଏହି ପ୍ରତିନିଧି ଦଳଗୁଡ଼ିକ ବର୍ଷର ଶେଷ ଆଡ଼କୁ ନିଜନିଜ କାର୍ଯ୍ୟ କରିବାକୁ ବାହାରି ପଡ଼ିଲେ। ଚୀନାମାନେ ପୂର୍ବରେ ସୈନ୍ୟଶକ୍ତି ଠୁଳ କରିବା ଖବର ମିଳିବାପରେ ତେନ୍‌ଜିନ୍ ନିଜେ ସ୍ଥିର କଲେ ଯେ, ସରକାରଙ୍କର କେତେକ ବରିଷ୍ଠ ଅଧିକାରୀଙ୍କୁ ନେଇ ସେ ତିବ୍‌ବତର ଦକ୍ଷିଣାଞ୍ଚଳକୁ ପଳାଇ ଯିବା ଦରକାର। କାରଣ ଯଦି ଚୀନ୍ ପକ୍ଷରୁ ଆକ୍ରମଣ ହୁଏ ତା'ହେଲେ ସେ ଅତି ସହଜରେ ଭାରତକୁ ଚାଲି ଯାଇପାରିବେ।



# (୧୦) ତିବ୍‌ବତରୁ ପଳାୟନ

ଦଲାଇ ଲାମାଙ୍କ ପାଇଁ ଲାସା ତ୍ୟାଗ କରି ଅନ୍ୟ ସୁରକ୍ଷିତ ସ୍ଥାନକୁ ପଳେଇଯିବା ଅନିବାର୍ଯ୍ୟ ହୋଇପଡ଼ିଲା। କାରଣ ଚୀନ୍‌ର କମ୍ୟୁନିଷ୍ଟମାନଙ୍କ ପକ୍ଷରୁ ତାଙ୍କ ଜୀବନ ପ୍ରତି ବିପଦ ଥିଲା। ସେଥିଲାଗି ଦଲାଇ ଲାମାଙ୍କ ବିଶ୍ୱସ୍ତ କର୍ମଚାରୀଗଣ ବହୁପୂର୍ବରୁ ଦେଶ ଛାଡ଼ି ଯିବାର ପ୍ରସ୍ତୁତିରେ ଲାଗି ପଡ଼ିଥିଲେ। ମାତ୍ର ସବୁକିଛି ଅତି ଗୋପନୀୟ ଭାବରେ ସମ୍ପନ୍ନ କରାଯାଉଥିଲା। ଦଲାଇ ଲାମାଙ୍କ ପ୍ରଧାନମନ୍ତ୍ରୀଦ୍ୱୟ ତାଙ୍କୁ ନେଇ ଖୁବ୍ ଭୟଭୀତ ହୋଇ ପଡ଼ିଥିଲେ। କାରଣ ସେମାନଙ୍କର ଆଶଙ୍କା ଥିଲା ଯେ, ଯଦି ଦଲାଇ ଲାମା ଦେଶ ଛାଡ଼ି ଚାଲି ଯାଉଛନ୍ତି ବୋଲି ଖବର ପ୍ରଚାରିତ ହୋଇଯାଏ ତେବେ ଲୋକମାନଙ୍କ ମଧ୍ୟରେ କୋକୁଆ ଭୟ ସୃଷ୍ଟି ହୋଇଯିବ। ପୁଣି ଯଦି ଆକ୍ରମଣକାରୀ କମ୍ୟୁନିଷ୍ଟମାନେ ଏକଥା ଜାଣିପାରନ୍ତି ତା'ହେଲେ ହୁଏତ ସେମାନେ ଅନ୍ୟକିଛି ନୂଆ ସମସ୍ୟା ସୃଷ୍ଟି କରିବେ। ସେଥିଲାଗି ବହୁ ପୂର୍ବରୁ ଜିନିଷପତ୍ର ସବୁକୁ ବଡ଼ବଡ଼ ପେଟିରେ ଭର୍ତ୍ତିକରି ଗାଡ଼ିରେ ବାହାରକୁ ପଠାଇ ଦିଆଯାଇଥିଲା। ଏହି କାର୍ଯ୍ୟ ଏଭଳି ସତର୍କତା ଏବଂ ଗୋପନୀୟତାର ସହିତ କରାଯାଇଥିଲା ଯେ, ଖୋଦ୍ ତେନ୍‌ଜିନ୍ ମଧ୍ୟ ସେସବୁ ପେଟିରେ କ'ଣ ଅଛି ତାହା ଜାଣି ନଥିଲେ। ତେବେ ସେ ଅନୁମାନ କରିପାରିଥିଲେ ଯେ, ସେସବୁ ଥିଲା ପୋଟାଲାର ମାଟିତଳ ଭଣ୍ଡାର ଘରେ ଥିବା ମଣିରତ୍ନଭରା ବାକ୍ସ, ଯେଉଁଥିରେ ସୁନା ବିସ୍କୁଟ ଓ ରୂପା ଛଡ଼ ପରିପୂର୍ଣ୍ଣ ହୋଇ ରହିଥିଲା। ତାଙ୍କର ପୋଷାକ ପରିଚ୍ଛଦ ବିଭାଗର ମୁଖ୍ୟ କେନ୍‌ରାପ୍ ତେନ୍‌ଜିନ୍ ଏସବୁର ଆୟୋଜନ କରିଥିଲେ। ଏଠାରେ ଉଲ୍ଲେଖଯୋଗ୍ୟ ଯେ, ନିକଟରେ କେନ୍‌ରାପ୍ ତେନ୍‌ଜିନ୍ 'ଚିକ୍ୟାବ୍ କେମ୍ପୋ' ପଦବୀକୁ ଉନ୍ନୀତ ହୋଇଥିଲେ। ତେବେ ଦେଶ ତ୍ୟାଗକରି ସୁରକ୍ଷିତ ସ୍ଥାନକୁ ଚାଲିଯିବାକୁ ପଡୁଛି ବୋଲି ତେନ୍‌ଜିନ୍ ଖୁସି ନଥିଲେ, ବରଂ ତାଙ୍କର ଆତ୍ମାଭିମାନ ବାରମ୍ବାର ଆହତ ହେଉଥିଲା। ପୁଣି ନିଜ ଲୋକମାନଙ୍କୁ ଛାଡ଼ି ଚାଲିଯାଉଥିବାରୁ ସେ ମାନସିକ ଯନ୍ତ୍ରଣା ଅନୁଭବ କରୁଥିଲେ। ଏସବୁସତ୍ତ୍ୱେ ବିଦେଶ ଯାତ୍ରା କରିବାକୁ ଯାଉଥିବା ହେତୁ ସେ ମନେମନେ ରୋମାଞ୍ଚିତ ମଧ୍ୟ ହେଉଥିଲେ।

ଏହି ସମୟରେ ତାଙ୍କର ସହାୟକମଣ୍ଡଳୀ ପକ୍ଷରୁ ସ୍ଥିର କରାଗଲା ଯେ, ତେନ୍‌ଜିନ୍ ନିଜର ସ୍ୱାଭାବିକ ବେଶରେ ଦେଶ ଛାଡ଼ି ଯିବେ ନାହିଁ। ତାଙ୍କୁ ଛଦ୍ମବେଶ ଧାରଣ କରିବା ପାଇଁ ପଡ଼ିବ। କାରଣ ସେମାନେ ଆଶଙ୍କା କରୁଥିଲେ ଯେ, ଯଦି ତେନ୍‌ଜିନ୍ ଛଦ୍ମବେଶ ଧାରଣ ନ କରନ୍ତି ତା'ହେଲେ ଲୋକମାନେ ତାଙ୍କୁ ସହଜରେ ଚିହ୍ନିନେବେ ଆଉ ତାଙ୍କୁ ଦେଶ ଛାଡ଼ି ଯିବା ପାଇଁ ଦେବେ ନାହିଁ। ଯଦି ତାହା ହୁଏ ତା'ହେଲେ ତାଙ୍କର ଜୀବନ ପ୍ରତି ଘୋର ବିପଦ ମାଡ଼ି ଆସିବ। ଏସବୁ କଥା ସେମାନେ ତେନ୍‌ଜିନ୍‌ଙ୍କୁ ଆସି ଜଣେଇଲେ। ଏକଥା ଶୁଣିବା ପରେ ସେ ଅତିଶୟ ଆନନ୍ଦିତ ହୋଇଉଠିଲେ। କାରଣ ଏହାଦ୍ୱାରା ସେ ଅଧିକ ସ୍ୱଚ୍ଛନ୍ଦ ହୋଇ ବୁଲାବୁଲି କରିପାରିବେ। ପୁଣି ସାଧାରଣ ଲୋକଙ୍କ ସହିତ ମଧ୍ୟ ସେ ଖୁବ୍ ଭଲଭାବରେ ମିଳାମିଶା କରିପାରିବେ।

ଦେଶ ଛାଡ଼ିବାର ସମସ୍ତ ଆୟୋଜନ ହୋଇଗଲା। ସେମାନେ ନିଶାର୍ଦ୍ଧରେ ଲାସା ଛାଡ଼ିଲେ। ସିକିମ୍ ସୀମାରେ ଦୁଇଶହ ମାଇଲ୍ ଦୂରରେ ଥିବା ଡ୍ରୋମୋ (Dromo) ସେମାନଙ୍କର ଲକ୍ଷ୍ୟସ୍ଥଳ ଥିଲା। ଉଲ୍ଲେଖଯୋଗ୍ୟ ଯେ, ସ୍ଥାନୀୟ ଭାଷାରେ 'ଡ୍ରୋମୋ'କୁ ଟ୍ରୋମୋ (Tromo) ବୋଲି ଉଚ୍ଚାରଣ କରାଯାଇଥାଏ। ଲାସା ଛାଡ଼ି ସେମାନେ ଜାଙ୍ଗ୍ (Jang) ନାମକ ଏକ ଗାଁରେ ପହଞ୍ଚିଲେ। ସେମାନଙ୍କ ଦଳରେ ଅତିକମ୍‌ରେ ଦୁଇଶହ ଜଣ ସଦସ୍ୟ ଥିଲେ। ସେମାନଙ୍କ ମଧ୍ୟରୁ ପଚାଶଜଣ ଉଚ୍ଚ ସରକାରୀ କର୍ମଚାରୀ ଥିଲେ। ଏଥିସହିତ ବହୁ ସଂଖ୍ୟକ ଭାରବାହୀ ପଶୁ ମଧ୍ୟ ଥିଲେ। ସେମାନେ ଜାଙ୍ଗ୍‌ରେ ପହଞ୍ଚିବା ବେଳକୁ ସେଠାରେ ସେରାର ସନ୍ନ୍ୟାସୀମାନେ ସେମାନଙ୍କର ଶୀତକାଳୀନ ଶିବିର ସ୍ଥାପନ କରି ରହିଥାନ୍ତି। ସେରାର ସନ୍ନ୍ୟାସୀମାନେ ସହଜରେ ଠଉରେଇ ନେଲେ ଯେ, ଏହା ହେଉଛି ଦଲାଇ ଲାମାଙ୍କ ଦଳ। ମାତ୍ର ତେନ୍‌ଜିନ୍ ଛଦ୍ମବେଶରେ ରହିଥିଲେ। ସେହି କାରଣରୁ ସେ ସମସ୍ତଙ୍କ ଆଗରେ ଥିଲେ ମଧ୍ୟ ତାଙ୍କୁ ସେମାନେ ଚିହ୍ନି ପାରିଲେ ନାହିଁ କି ଅଟ୍‌କାଇଲେ ନାହିଁ। ମାତ୍ର ସେମାନେ ଲିଙ୍ଗ୍ ରିନ୍‌ପୋଚିଙ୍କୁ ଚିହ୍ନିନେଲେ ଓ ସେମାନଙ୍କୁ ଦଲାଇ ଲାମାଙ୍କ ଦଳରେ ସାମିଲ୍ କରିବା ପାଇଁ ଅନୁରୋଧ କଲେ। ତେନ୍‌ଜିନ୍ ଦେଖୁଥିଲେ ସେରାର ସନ୍ନ୍ୟାସୀମାନେ ଭାବବିହ୍ୱଳ ହୋଇ କାନ୍ଦୁଛନ୍ତି। ତାହା ତାଙ୍କ ପାଇଁ ଏକ ଦୁଃଖଦାୟକ ମୁହୂର୍ତ୍ତ ଥିଲା। ତେବେ ସେହି ସମସ୍ତଙ୍କୁ ମଧ୍ୟ ଦଳରେ ସାମିଲ୍ କରିବା ଆଦୌ ସହଜ ନଥିଲା। ଦଲାଇ ଲାମା ଖୁବ୍ ଶୀଘ୍ର ଲାସାକୁ ପ୍ରତ୍ୟାବର୍ତ୍ତନ କରିବେ ବୋଲି ଲିଙ୍ଗ୍ ରିନ୍‌ପୋଚି ସେମାନଙ୍କୁ ପ୍ରତିଶ୍ରୁତି ଦେବାରୁ ସେମାନେ ଘୋର ଅନିଚ୍ଛା ସତ୍ତ୍ୱେ ସେମାନଙ୍କୁ ବାଟ ଛାଡ଼ିଲେ।

ଲଗାତାର ଏକ ସପ୍ତାହ ଯାତ୍ରା କରିବା ପରେ ସେମାନେ ଗ୍ୟାନ୍‌ସୀ (Gyantsy)ରେ ପହଞ୍ଚିଲେ। ଗ୍ୟାନ୍‌ସୀ ହେଉଛି ତିବ୍‌ବତର ଚତୁର୍ଥ ବୃହତ୍ତମ ସହର। ଏଠାରେ ଗୋପନୀୟତା ରକ୍ଷା କରିବା ଆଦୌ ସମ୍ଭବପର ହେଲାନାହିଁ। ସାଧାରଣ ଜନତାଙ୍କ ସହିତ ସରକାରୀ କର୍ମଚାରୀ ତଥା ଭାରତୀୟ ଦୂତାବାସ ସୁରକ୍ଷା ଦାୟିତ୍ୱରେ ଥିବା ସୈନ୍ୟମାନେ ମଧ୍ୟ ଆସି ତାଙ୍କୁ ଅଭିବାଦନ ଜଣାଇଲେ। ମାତ୍ର ସେସବୁ ଔପଚାରିକତାକୁ ପଛରେ ପକାଇ ସେମାନେ ଗ୍ୟାନ୍‌ସୀରୁ ଡ୍ରୋମୋ ଅଭିମୁଖେ ଯାତ୍ରା ଆରମ୍ଭ କରିଦେଲେ। ପ୍ରାୟ ପନ୍ଦର ଦିନ ନିରବଚ୍ଛିନ୍ନ ଯାତ୍ରା କରିବା ପରେ ସେମାନେ ୧୯୫୧ ମସିହା ଜାନୁଆରୀ ମାସରେ ଡ୍ରୋମୋରେ ପହଞ୍ଚିଲେ। ସମୁଦ୍ର ପତ୍ତନଠାରୁ ୯,୦୦୦ ଫୁଟ ଉଚ୍ଚରେ ଡ୍ରୋମୋ ଅବସ୍ଥିତ ଥିଲା। କେତେଗୋଟି ଗାଁର ସମାହାରକୁ ହିଁ ଡ୍ରୋମୋ କୁହାଯାଉଥିଲା। ଏଠାକାର ପ୍ରାକୃତିକ ଦୃଶ୍ୟ ଖୁବ୍ ମନୋରମ ଥିଲା। ଗାଁ ପାଖଦେଇ ପାହାଡ଼ୀ ନଈଟେ ବହି ଯାଉଥିଲା। ତେନ୍‌ଜିନ୍ ଏତେଦିନର ପଥ ଅତିକ୍ରମ କରି ଖୁବ୍ କ୍ଲାନ୍ତ ହୋଇ ପଡ଼ିଥିଲେ। ସେ ସେଠାକାର ଜଣେ ସରକାରୀ ଅଧିକାରୀଙ୍କ ବାସଭବନରେ ରହିଲେ। କିଛିଦିନ ପରେ ତାଙ୍କୁ ପାହାଡ଼ ଉପରେ ଅବସ୍ଥିତ ଡଙ୍ଖାର (Dungkhar) ନାମକ ଏକ କ୍ଷୁଦ୍ର ଆଶ୍ରମକୁ ନିଆଗଲା। ଏଠାରେ ସେ ଖୁବ୍ ଭଲଭାବରେ ଧ୍ୟାନ ଓ ପ୍ରାର୍ଥନା ଆଦି ନିୟମିତ କାର୍ଯ୍ୟ ସମ୍ପାଦନ କରିପାରିଲେ। ସେ ଡ୍ରୋମୋରେ ରହିଥିବାବେଳେ ଶ୍ରୀଲଙ୍କାରୁ ଆସିଥିବା ଜଣେ ସନ୍ନ୍ୟାସୀ ତାଙ୍କୁ ସାକ୍ଷାତ କଲେ। ଏକ ଉତ୍ସବ ଅବସରରେ ସନ୍ନ୍ୟାସୀ ଜଣଙ୍କ ତାଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରାଚୀନ ସ୍ମାରକୀ ପ୍ରଦାନ କରିଥିଲେ, ଯାହାକୁ ତେନ୍‌ଜିନ୍ ଅତି ଆନନ୍ଦ ମନରେ ଗ୍ରହଣ କରିଥିଲେ। ଲୁଖାଂଗ୍ୱା ଓ ଲବ୍‌ସାଙ୍ଗ ଟାସୀ ଲାସାଠାରେ ରହିଥିଲେ। ତେଣୁ କାସ୍‌ବାଗ୍, ଲର୍ଡ଼ ଚାମ୍ବରଲେନ୍, ଲିଙ୍ଗ ରିନ୍‌ପୋଚି ଓ ତ୍ରିଜଙ୍ଗ୍ ରିନ୍‌ପୋଚି ପ୍ରମୁଖ ତାଙ୍କର ପରାମର୍ଶଦାତା ତଥା ମାର୍ଗଦର୍ଶକ ଭାବରେ ଦାୟିତ୍ୱ ତୁଲାଉଥିଲେ। ସେହିଭଳି ତାଙ୍କର ବଡ଼ଭାଇ ଟାକ୍‌ସେର ରିନ୍‌ପୋଚି ମଧ୍ୟ ଆସି ସେମାନଙ୍କ ସହିତ ଖୁବ୍ ଶୀଘ୍ର ସାମିଲ୍ ହୋଇଗଲେ।

ଡ୍ରୋମୋରେ ରହିବାର ମାତ୍ର ଅଳ୍ପକିଛି ଦିନପରେ ତାଙ୍କୁ ଏକ ଅଶୁଭ ସମାଚାର ମିଳିଥିଲା। ସେ ବିଭିନ୍ନ ଦେଶକୁ ପଠାଇଥିବା ପ୍ରତିନିଧିମଣ୍ଡଳୀ ନିରାଶ ହୋଇ ସ୍ୱଦେଶକୁ ଫେରି ଆସିଥିଲେ। କେବଳ ଚୀନ୍ ଗସ୍ତରେ ଯାତ୍ରା କରିଥିବା ପ୍ରତିନିଧି ଦଳ ସେମାନଙ୍କର ଲକ୍ଷ୍ୟସ୍ଥଳରେ ପହଞ୍ଚିଥିବାର ଖବର ତାଙ୍କୁ ମିଳିଥିଲା। ଭାରତ ଏବଂ ନେପାଳ ସରକାରଙ୍କର ଅସହଯୋଗ ତାଙ୍କ ମନରେ ସବୁଠାରୁ ବେଶି ଦୁଃଖ ଦେଇଥିଲା।

କାରଣ ଭାରତ ଓ ନେପାଳ ସହିତ ତିବ୍‌ବତର ପୂର୍ବରୁ ଖୁବ୍ ଭଲ ସମ୍ପର୍କ ରହିଥିଲା। ଏକଦା ବ୍ରିଟେନ୍ ମଧ୍ୟ ଉଭୟ ଚୀନ୍ ଓ ତିବ୍‌ବତକୁ ଦୁଇଟି ଭିନ୍ନଭିନ୍ନ ତଥା ସ୍ୱତନ୍ତ୍ର ଏବଂ ସାର୍ବଭୌମ ରାଷ୍ଟ୍ର ଭାବରେ ବିବେଚନା କରୁଥିଲା ଓ ମାନ୍ୟତା ମଧ୍ୟ ଦେଇଥିଲା। ଏପରିକି, ୧୯୧୪ ମସିହାରେ ଅନୁଷ୍ଠିତ ସିମ୍‌ଲା ସମ୍ମିଳନୀକୁ ଚୀନ୍ ସହିତ ତିବ୍‌ବତକୁ ମଧ୍ୟ ଦୁଇଗୋଟି ସ୍ୱତନ୍ତ୍ର ରାଷ୍ଟ୍ର ଭାବରେ ଆମନ୍ତ୍ରଣ କରାଯାଇଥିଲା। ସେହିଭଳି ଆମେରିକା ସହିତ ମଧ୍ୟ ତିବବ୍‌ତର ସମ୍ପର୍କ ଖୁବ୍ ବନ୍ଧୁତ୍ୱପୂର୍ଣ୍ଣ ଥିଲା। ୧୯୪୮ ମସିହାରେ ୱାଶିଂଟନ୍ ପକ୍ଷରୁ ତିବ୍‌ବତର ପ୍ରତିନିଧିମାନଙ୍କୁ ସମ୍ମାନର ସହିତ ସ୍ୱାଗତ କରାଯାଇଥିଲା ଏବଂ ତତ୍କାଳୀନ ଉପରାଷ୍ଟ୍ରପତି ପ୍ରତିନିଧିମାନଙ୍କୁ ସାକ୍ଷାତ କରିଥିଲେ। ଏସବୁ ସତ୍ତ୍ୱେ ତିବ୍‌ବତ ପ୍ରତି ସେମାନଙ୍କର ନକାରାତ୍ମକ ମନୋଭାବ ତେନ୍‌ଜିନ୍‌ଙ୍କୁ ଦୁଃଖ ଦେବା ସହିତ ସେ ଗଭୀର ଭାବରେ ମର୍ମାହତ ମଧ୍ୟ ହୋଇପଡ଼ିଥିଲେ।

ଠିକ୍ ଏତିକିବେଳେ ଚାମ୍‌ଡୋର ଗଭର୍ଣ୍ଣର ଗାବୋ ଗାୱାଙ୍ଗ୍ ଜିଗ୍‌ମେ (Ngabo Ngawang Jigme)ଙ୍କ ନିକଟରୁ ଏକ ଦୀର୍ଘ ବିବରଣୀ ସମ୍ୱଳିତ ପତ୍ର ଆସି ତାଙ୍କ ନିକଟରେ ପହଞ୍ଚିଲା। ସେ ସେହି ପତ୍ରରେ ଲେଖିଥିଲେ ଯେ, ଚାମ୍‌ଡୋର ଅଧିକାଂଶ ଅଞ୍ଚଳକୁ ଚୀନାମାନେ ଅକ୍ତିଆର କରିନେଇଛନ୍ତି। ଚୀନାମାନେ ଚେତାବନୀ ଶୁଣେଇ କହିଛନ୍ତି ଯେ, ଯଦି ସମସ୍ୟାର କୌଣସି ଆଶୁ ସମାଧାନ ଖୋଜି ବାହାର କରାନଯାଏ ତା'ହେଲେ ସେମାନେ ଖୁବ୍‌ଶୀଘ୍ର ଲାସାକୁ ନିଜ ଅଧିକାରକୁ ନେଇଯିବେ। ଆଉ ଯଦି ଏଭଳି ଘଟଣା ଘଟେ ତା'ହେଲେ ବିପୁଳ ଧନଜୀବନ ହାନିକୁ କୌଣସି ପରିପ୍ରେକ୍ଷୀରେ ବି ଏଡ଼ାଇ ଦିଆଯାଇପାରିବ ନାହିଁ। ଗାବୋ ତାଙ୍କୁ ପରାମର୍ଶ ଦେଇ ଲେଖିଥିଲେ ଯେ, ଆଲୋଚନା ବ୍ୟତୀତ ତାଙ୍କ ନିକଟରେ ଆଉ କିଛି ଦ୍ୱିତୀୟ ବିକଳ୍ପ ନାହିଁ। ସେ ବ୍ୟକ୍ତିଗତ ଭାବରେ ତାଙ୍କ ତରଫରୁ ପେକିଂ (Peking) ଯାଇ ଚୀନାମାନଙ୍କ ସହିତ କଥାବାର୍ତ୍ତା କରିବା ଲାଗି ପ୍ରସ୍ତୁତ ମଧ୍ୟ ଅଛନ୍ତି। ଚିଠି ପଢ଼ିବା ପରେ କ'ଣ କରିବା ଉଚିତ ଆଉ କ'ଣ କରାଯିବା ଉଚିତ ନୁହେଁ, ସେ ବିଷୟରେ ତେନ୍‌ଜିନ୍ ହଠାତ୍ କୌଣସି ନିଷ୍ପତ୍ତି ନେଇ ପାରିଲେ ନାହିଁ। ସେ ଲାସାରେ ଥିବା ତାଙ୍କର ଦୁଇ ପ୍ରଧାନମନ୍ତ୍ରୀ ଲବସାଙ୍ଗ ଟାସୀ ଓ ଲୁଖାଂଗ୍ୱାଙ୍କ ସହିତ ଯୋଗାଯୋଗ କଲେ। ସେମାନେ ତାଙ୍କୁ ମଧ୍ୟ ଅନୁରୂପ ପରାମର୍ଶ ଦେଇ କହିଲେ ଯେ, କଥାବାର୍ତ୍ତା ହେବା ଉଚିତ ଆଉ କଥାବାର୍ତ୍ତା ଲାସାରେ ହିଁ ହେବା ଆବଶ୍ୟକ। ମାତ୍ର ବର୍ତ୍ତମାନର ପରିସ୍ଥିତି ସଙ୍କଟାପନ୍ନ ଥିବାରୁ ଚୀନ୍‌ର ପ୍ରସ୍ତାବ ଅନୁଯାୟୀ ସେ ଆଲୋଚନା ପାଇଁ ପେକିଂକୁ ହିଁ ବାଛନ୍ତୁ। ନିଜର ପ୍ରଧାନମନ୍ତ୍ରୀଦ୍ୱୟଙ୍କ

ନିକଟରୁ ଏଭଳି ପରାମର୍ଶ ପାଇବା ପରେ ତେନ୍‌ଜିନ୍‌ଙ୍କ ଭିତରେ ଆଉ କୌଣସି ଦ୍ୱନ୍ଦ୍ୱ ରହିଲା ନାହିଁ। ସେ ସାମାନ୍ୟ ବି ଦ୍ୱିଧା ପ୍ରକାଶ ନ କରି ଗାବୋଙ୍କୁ ପତ୍ରଲେଖି ପେକିଂ ଯିବା ଲାଗି ଅନୁମତି ଦେଲେ। ଏହାବ୍ୟତୀତ, ଗାବୋଙ୍କ ସହିତ ଡ୍ରୋମୋରୁ ଦୁଇଜଣ ଓ ଲାସାରୁ ଦୁଇଜଣ ପଦାଧିକାରୀଙ୍କୁ ବେଜିଂ ପଠାଇଲେ। ତିବ୍‌ବତ ଯୁଦ୍ଧ ଚାହେଁ ନାହିଁ; କେବଳ ପଡ଼ୋଶୀଙ୍କ ସହିତ ଶାନ୍ତିପୂର୍ଣ୍ଣ ସମ୍ପର୍କ ଚାହେଁ ବୋଲି ଉଲ୍ଲେଖକରି ଏକ ପତ୍ର ଚୀନ୍‌ର ପ୍ରତିନିଧିଙ୍କ ନିକଟକୁ ପଠାଇଲେ।

ଏହି ସମୟରେ ବସନ୍ତ ଋତୁ ଆସିଗଲା। ଚାରିଆଡ଼େ ପ୍ରକୃତିରାଣୀର ଶୋଭାରାଶି ବିକଶିତ ହୋଇ ଉଠିଲା। ମାତ୍ର ପ୍ରକୃତିପ୍ରେମୀ ତେନ୍‌ଜିନ୍‌ଙ୍କ ମନରେ ସେତେ ପରିମାଣରେ ସରସତା ନଥିଲା। କାରଣ ସେ ବେଜିଂରୁ ଖବର ଶୁଣିବାକୁ ସବୁବେଳେ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହୁଥିଲେ। ତାଙ୍କ ମନ ଭଲ ଲାଗୁ ନଥିଲା। ତାଙ୍କ ନିକଟରେ ଛଅ-ଭୋଲ୍‌ଟ ବ୍ୟାଟେରୀରେ ଚାଳିତ ଗୋଟିଏ ପୁରୁଣା ବୁଶ୍ ରେଡ଼ିଓ ଥିଲା। ପ୍ରତ୍ୟେକ ଦିନ ସନ୍ଧ୍ୟାରେ ସେ ରେଡ଼ିଓ ବେଜିଂର ତିବ୍‌ବତୀୟ ଭାଷାରେ ପ୍ରସାରିତ ସମ୍ବାଦ ବସି ଶୁଣୁଥିଲେ। ଦିନେ ସନ୍ଧ୍ୟାରେ ସେ ରେଡ଼ିଓରୁ ଶୁଣିବାକୁ ପାଇଲେ ଯେ, ଚୀନ୍ ସାଧାରଣତନ୍ତ୍ର ସରକାର ଏବଂ ତିବ୍‌ବତର ସ୍ଥାନୀୟ ସରକାରଙ୍କ ପ୍ରତିନିଧିମଣ୍ଡଳୀଙ୍କ ମଧ୍ୟରେ ଏକ ସତର ଦଫା ଚୁକ୍ତି ସ୍ୱାକ୍ଷରିତ ହୋଇଯାଇଛି। ମାତ୍ର ଏହା ତାଙ୍କ ପାଇଁ କୌଣସି ସୁସମ୍ବାଦ ବହନ କରୁ ନଥିଲା। ଚୁକ୍ତିର ପ୍ରଥମ ଧାରାରେ କୁହାଯାଇଥିଲା ଯେ, ତିବ୍‌ବତୀୟ ଜନତା ମାତୃଭୂମି ଅର୍ଥାତ୍ ଚୀନ୍ ସାଧାରଣତନ୍ତ୍ରକୁ ଫେରି ଆସିବେ। ତେନ୍‌ଜିନ୍ ଭାବିଲେ, ଏହାର ଅର୍ଥ ଚୀନ୍ ସରକାର ଭାବୁଛନ୍ତି ଯେ, ତିବ୍‌ବତ ଚୀନ୍‌ର ଏକ ଅଂଶ ଥିଲା ଯାହା ଏବେ ପୃଥକ୍ ହୋଇ ରହିଛି। ମାତ୍ର ଏକଥା ସତ୍ୟ ଯେ, ତିବ୍‌ବତ କେବେ ବି ଚୀନ୍‌ର ଏକ ଅଂଶବିଶେଷ ନଥିଲା। ବରଂ ତିବ୍‌ବତର କିଛି ଅଂଶକୁ ଚୀନ୍ ବଳପ୍ରୟୋଗପୂର୍ବକ ଅଧିକାର କରି ନେଇଥିଲା। ଭୌଗୋଳିକ, ଜାତିଗତ, ଭାଷାଗତ ତଥା ଆଚରଣଗତ ଦୃଷ୍ଟିରୁ ଚୀନ୍ ଏବଂ ତିବ୍‌ବତ ଥିଲେ ଦୁଇଟି ପୃଥକ୍ ରାଷ୍ଟ୍ର। ଭାଷା, ବର୍ଣ୍ଣମାଳା, ଲିଖନପଦ୍ଧତି ଏପରିକି କଥା କହିବାର ଶୈଳୀ ମଧ୍ୟ ସମ୍ପୂର୍ଣ୍ଣ ଭିନ୍ନ ଥିଲା।

ସମ୍ପୂର୍ଣ୍ଣ ବିବରଣୀ ଶୁଣିବାକୁ ତାଙ୍କୁ କିଛିମାସ ଅପେକ୍ଷା କରିବା ପାଇଁ ପଡ଼ିଲା। ସ୍ୱାକ୍ଷରିତ ହୋଇଥିବା ସତର ଦଫା ଚୁକ୍ତିନାମାର ବିବରଣୀ ତାଙ୍କ ପାଇଁ ତଥା ସମଗ୍ର ତିବ୍‌ବତର ଜନସାଧାରଣଙ୍କ ନିମନ୍ତେ ଖୁବ୍ ଅପ୍ରୀତିକର ଥିଲା। ଦ୍ୱିତୀୟ ଧାରାରେ

କୁହାଯାଇଥିଲା ଯେ, ଚୀନ୍ ସେନା ତିବ୍ବତର ସ୍ଥାନୀୟ ସରକାରଙ୍କୁ ଶାସନ ପରିଚାଳନାରେ ସକ୍ରିୟ ଭାବରେ ସହାୟତା କରିବେ। ଅଷ୍ଟମ ଧାରାରେ କୁହାଯାଇଥିଲା ଯେ, ତିବ୍ବତର ସେନାବାହିନୀ ଚୀନ୍ ସେନାବାହିନୀରେ ସାମିଲ୍ ହେବେ। ଚତୁର୍ଦ୍ଦଶ ଧାରାରେ ତିବ୍ବତର ବୈଦେଶିକ ବ୍ୟାପାର ପରିଚାଳନା ଅଧିକାରକୁ ବାତିଲ୍ କରିଦିଆଯାଇଥିଲା। ତେବେ କେତେକ ଧାରାରେ ତିବ୍ବତର ଧାର୍ମିକ ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖାଯାଇଥିଲା, ଯାହା ତାଙ୍କ ପାଇଁ ସାମାନ୍ୟ ଆଶ୍ୱାସନାପୂର୍ଣ୍ଣ ଥିଲା। ଏହି ସମୟରେ ଟାକ୍ସେର ରିନ୍ପୋଚି କଲିକତାରୁ ଏକ ପତ୍ରଲେଖି ତାଙ୍କୁ ତୁରନ୍ତ ତିବ୍ବତ ଛାଡ଼ି ଭାରତ ପଳେଇ ଯିବାକୁ ପରାମର୍ଶ ଦେଲେ। ଏହାର କାରଣ ସ୍ୱରୂପ ସେ ଦର୍ଶାଇଥିଲେ ଯେ, ଭବିଷ୍ୟତାରେ ଚୀନ୍ ସହିତ ଯୁଦ୍ଧ କରିବାକୁ ହେଲେ ସେମାନଙ୍କୁ ମିତ୍ରଶକ୍ତି ଯୋଗାଡ଼ କରିବାକୁ ପଡ଼ିବ। ସେହିଭଳି ଗାବୋଙ୍କଠାରୁ ମଧ୍ୟ ଏକ ଟେଲିଗ୍ରାମ୍ ମିଳିଲା। ସେହି ଟେଲିଗ୍ରାମ୍‌ରେ ଗାବୋ ଉଲ୍ଲେଖ କରିଥିଲେ ଯେ, ତିବ୍ବତର ନୂଆ ଗଭର୍ଣ୍ଣର ଜେନେରାଲ ଚିଆଙ୍ଗ୍ ଚୀନ୍-ଉ ଭାରତ ବାଟ ଦେଇ ଡ୍ରୋମୋ ରାସ୍ତାରେ ଅଛନ୍ତି। ଖୁବ୍ ଶୀଘ୍ର ତାଙ୍କ ସହିତ ତାଙ୍କର ସାକ୍ଷାତ ହେବ। ତେନ୍‌ଜିନ୍ କେବଳ ଜେନେରାଲ୍ ଚିଆଙ୍ଗ୍ ଚୀନ୍-ଉଙ୍କୁ ଭେଟିବା ଲାଗି ଅପେକ୍ଷା କରି ରହିଲେ। ତେବେ ତିବ୍ବତ ଛାଡ଼ି ଚାଲିଯିବା ପାଇଁ ତାଙ୍କୁ ସବୁଆଡୁ ପରାମର୍ଶ ମିଳୁଥିଲା। ଏଭଳି ପରିସ୍ଥିତିରେ ତାଙ୍କୁ କ'ଣ କରିବାକୁ ହେବ, ସେହି ବିଷୟରେ ସେ ଗଭୀର ଚିନ୍ତାମଗ୍ନ ଥିଲେ।



# (୧୧) ଲାସା ପ୍ରତ୍ୟାବର୍ତ୍ତନ

୧୯୫୧ ମସିହା ଜୁଲାଇ ମାସ ୧୬ ତାରିଖ ଦିନ ଜେନେରାଲ୍ ଚିଆଙ୍ଗ୍ ଚୀନ୍-ଉ ଆସି ପହଞ୍ଚିଲେ। ଚୀନ୍ ସହିତ ସ୍ୱାକ୍ଷରିତ ହୋଇଥିବା ସତର ଦଫା ଚୁକ୍ତି ସମ୍ପର୍କରେ ତେନ୍‌ଜିନ୍ ତାଙ୍କ ସହିତ ଆଲୋଚନା କଲେ। ତେବେ ସେ ଦେଶତ୍ୟାଗ କରି ପଳେଇଯିବା ଉଚିତ ହେବ ବୋଲି ଜେନେରାଲ୍ ତାଙ୍କୁ ପରାମର୍ଶ ଦେଲେ। ସେ କେବେ ଲାସା ଫେରିବା ପାଇଁ ଚାହୁଁଛନ୍ତି ବୋଲି ପଚାରିବାରୁ ତେନ୍‌ଜିନ୍ ଖୁବ୍ ଶୀଘ୍ର ଫେରିବେ ବୋଲି ଉତ୍ତର ଦେଇଥିଲେ। ବାସ୍ତବରେ ଜେନେରାଲ ଚିଆଙ୍ଗ୍ ଚୀନ୍-ଉ'ଙ୍କ ସହିତ ଆଲୋଚନା କରିବା ପରେ ତାଙ୍କ ଭିତରେ ଲାସାକୁ ଫେରିବାର ଇଚ୍ଛା ପ୍ରବଳ ହୋଇ ଉଠିଲା। ସେହି ମାସର ଶେଷ ଆଡ଼କୁ ସେ ନିଜର କର୍ମଚାରୀମାନଙ୍କ ସହିତ ଲାସା ଯାତ୍ରା ଆରମ୍ଭ କରିଲେ। ସେଥିପାଇଁ ଅବଶ୍ୟ କୌଣସି ପ୍ରକାରର ଗୋପନୀୟତା ଅବଲମ୍ବନ କରାଯାଇ ନଥିଲା। ସେ ବାଟରେ ପଡୁଥିବା ସବୁ ଗ୍ରାମରେ ଅଟକି ରହି ଲୋକମାନଙ୍କୁ ଦର୍ଶନ ଦେଉଥିଲେ। ଏହି ଦର୍ଶନ ଦେବା ଅବସରରେ ଚୀନ୍ କିଭଳି ତିବ୍‌ବତ ଉପରେ ଅତ୍ୟାଚାର କରୁଛି ସେ ସମ୍ପର୍କରେ ଜନ ସଚେତନତା ସୃଷ୍ଟି କରିବାକୁ ଭୁଲୁ ନଥିଲେ। ତାଙ୍କ ସହିତ ଲବ୍‌ସାଙ୍ଗ ସାମଟେନ୍ ଓ ତଥାଗ୍ ରିନ୍‌ପୋଚି ମଧ୍ୟ ଥିଲେ। ଡ୍ରୋମୋରୁ ସେମାନେ ଗ୍ୟାନ୍‌ସୀ ଆଡ଼କୁ ଅଗ୍ରସର ହେଲେ। ଗ୍ୟାନ୍‌ସୀ ଯିବା ବାଟରେ ସେ କିଛିଦିନ ଲାଗି ସାମଡ଼ଇଙ୍ଗଠାରେ ରହିଲେ। ଶେଷରେ ପ୍ରାୟ ୯ ମାସ ପରେ ଅଗଷ୍ଟ ମାସ ମଧ୍ୟଭାଗରେ ସେ ଲାସାରେ ପହଞ୍ଚିଲେ। ତାଙ୍କୁ ସ୍ୱାଗତ କରିବା ପାଇଁ ଏକ ଭବ୍ୟ ଉତ୍ସବର ଆୟୋଜନ କରାଯାଇଥିଲା। ଲାସାକୁ ଫେରି ଆସିଥିବାରୁ ସେ ଖୁବ୍ ଆନନ୍ଦ ଅନୁଭବ କରୁଥିଲେ। କାରଣ ସେ ଅନୁପସ୍ଥିତ ଥିବାବେଳେ କମ୍ୟୁନିଷ୍ଟ ଚୀନ୍‌ର ସୈନ୍ୟମାନେ ଆମ୍‌ଡ଼ୋ ଓ ଖମ୍‌ରେ ଥିବା ତିବ୍‌ବତୀୟ ନାଗରିକଙ୍କ ଉପରେ ଅମାନବୀୟ ବ୍ୟବହାର କରିଥିଲେ। ଲାସାକୁ ଫେରିବା ପରେ ସେ ଜାଣିଲେ ଯେ, ଏକଦା ତାଙ୍କର ଖେଳସାଥୀ ଥିବା ଝାଡୁଦାର ସନ୍ନ୍ୟାସୀ ନର୍ବୁ ଥଣ୍ଡୁପ୍‌ଙ୍କର ଦେହାନ୍ତ ଘଟିଛି। ଏ ଘଟଣା ତାଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ଦୁଃଖୀ କରି ରଖିଲା। ତେବେ ସେ

ଖୁବ୍‌ଶୀଘ୍ର ନିଜର ମନକୁ ବୁଝାଇଦେଲେ। କାରଣ ଅଳ୍ପଦିନ ମଧ୍ୟରେ ଏକ ଚୀନ୍ ପ୍ରତିନିଧିମଣ୍ଡଳ ସହିତ ତାଙ୍କର ସାକ୍ଷାତ୍ କାର୍ଯ୍ୟକ୍ରମ ରହିଥିଲା। ଏସବୁ ଘଟିବାବେଳକୁ ତାଙ୍କର ବୟସ ମାତ୍ର ୧୬ ବର୍ଷ ହୋଇଥିଲା।

୧୯୫୧ ମସିହା ଅକ୍ଟୋବର ମାସ ୨୬ ତାରିଖରେ ଚୀନ୍‌ର ପ୍ରାୟ ୩,୦୦୦ ସୈନିକ ଅତର୍କିତ ଭାବରେ ଲାସାକୁ ପଶି ଆସିଲେ। ସେମାନଙ୍କ ସହିତ ଥିଲେ ଜେନେରାଲ୍ ଟାନ୍ କୁଆନ୍-ସେନ୍ ଓ ଜେନେରାଲ୍ ଚିଆଙ୍ଗ୍ ଲୁଓ-ହା। ଅବଶ୍ୟ ଏହି ଦୁଇ ଜେନେରାଲ୍ ଆସି ତେନ୍‌ଜିନ୍‌ଙ୍କୁ ଅନୌପଚାରିକ ଭାବରେ ସାକ୍ଷାତ କରିଥିଲେ। ଏହି ସମୟରେ ତାଙ୍କର ଭାଇ ଗ୍ୟାଲୋ ଥଣ୍ଡୁପ୍ ସୀମାନ୍ତ ପାରିହୋଇ ଆସାମ ଚାଲିଯିବା ଖବର ତାଙ୍କ ନିକଟରେ ପହଞ୍ଚିଲା। ବୈଦେଶିକ ସମର୍ଥନ ହାସଲ୍ କରିବା ତାଙ୍କର ଏହି ବିଦେଶ ଭ୍ରମଣର ପ୍ରଧାନ ଉଦ୍ଦେଶ୍ୟ ଥିଲା। ଏହି ଘଟଣାର ଅଳ୍ପକିଛି ଦିନ ପରେ ଚୀନ୍‌ର ଆଉ ଏକ ସେନାବାହିନୀ ଆସି ଲାସାରେ ପହଞ୍ଚିଗଲେ। ସେ ଛାତ ଉପରେ ଠିଆ ହୋଇ ନିଜର ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଚୀନ୍‌ର ସୈନ୍ୟମାନଙ୍କୁ ଦେଖୁଥିଲେ। ଧୂଳିଧୂସରିତ ହୋଇ ସୈନ୍ୟମାନେ ଖୋଲା ଆକାଶ ତଳେ ମାର୍ଚ୍ଚିଂ କରିବା ତାଙ୍କ ମନରେ ଗଭୀର ଦୁଃଖ ଆଣି ଦେଉଥିଲା। ଶୀତକାଳ ଆସି ପହଞ୍ଚି ଯାଇଥିଲା। ଏହି ସମୟରେ ତଥାଗ୍ ରିନ୍‌ପୋଚିଙ୍କର ପରଲୋକ ସମ୍ବାଦ ତାଙ୍କ ନିକଟରେ ପହଞ୍ଚିଲା। ତାଙ୍କର ଶୁଦ୍ଧକ୍ରିୟାରେ ଯୋଗଦେବା ଲାଗି ତେନ୍‌ଜିନ୍‌ଙ୍କ ଭିତରେ ଆଗ୍ରହ ଥିଲେ ମଧ୍ୟ ତାହା ସେ କରିପାରି ନଥିଲେ। ତେବେ ସେ ତାଙ୍କ ଲାଗି ସ୍ୱତନ୍ତ୍ର ପ୍ରାର୍ଥନା କରିଥିଲେ।

ଶେଷ ଦଫାରେ ଚୀନ୍‌ର ୨୦,୦୦୦ ସୈନ୍ୟ ଆସି ଲାସାରେ ଡେରା ପକେଇଲେ। ଫଳରେ ଲାସାର ଜନସଂଖ୍ୟା ହଠାତ୍ ଦୁଇଗୁଣା ହୋଇଗଲା। ଗୁରୁତର ଖାଦ୍ୟାଭାବ ଦେଖାଦେଲା। ମୁଦ୍ରା ସଂକଟ ସୃଷ୍ଟି ହେଲା। ଖାଦ୍ୟଶସ୍ୟ ଯାହା ମିଳିଲା ସେସବୁ ଚଢ଼ାଦରରେ ବିକ୍ରି ହେବାକୁ ଲାଗିଲା। ଏହାଦ୍ୱାରା ସାଧାରଣ ଜନତା ନାହିଁ ନଥିବା କଷ୍ଟ ଭୋଗିଲେ ଓ ସେମାନଙ୍କ ମଧ୍ୟରେ ଅସନ୍ତୋଷ ବୃଦ୍ଧି ପାଇବାକୁ ଲାଗିଲା। ସେମାନେ ଚୀନ୍‌ର ସୈନ୍ୟମାନଙ୍କୁ ଘୃଣା କରିବା ସହିତ ସେମାନଙ୍କ ଉପରକୁ ଛେପ ଫିଙ୍ଗିଲେ। କେତେକ ସେମାନଙ୍କୁ ଦେଖି ତାଚ୍ଛଲ୍ୟ କରି ଗାଳିଦେବା ସହିତ ତାଳି ବଜାଇଲେ। ପିଲାମାନେ ସେମାନଙ୍କ ଉପରକୁ ଟେକାପଥର ଫୋପାଡ଼ିଲେ। ଏପରିକି ସନ୍ନ୍ୟାସୀମାନେ ସେମାନଙ୍କର ଲୁଗାକୁଞ୍ଚକୁ ମୋଡ଼ି ଚାବୁକ୍ ତିଆରି କରି ସେଥିରେ

ସୈନ୍ୟମାନଙ୍କୁ ପିଟିବାକୁ ଲାଗିଲେ । ଏ ଖବର ଚୀନ୍‌ରେ ପହଞ୍ଚିଗଲା । ଏହାକୁ ଲକ୍ଷ୍ୟରେ ରଖି ଚୀନ୍ ସରକାର ତିବ୍‌ବତ ସହିତ ଆଉ ଏକ ଚୁକ୍ତି କଲେ ଯେ, ତିବ୍‌ବତରେ ଥିବା ଚୀନା ସୈନ୍ୟମାନଙ୍କୁ କୌଣସି ପ୍ରକାର ବିରୋଧ କରାଯିବ ନାହିଁ । ମାତ୍ର ଏହି ଆଇନ ଜନ ଆନ୍ଦୋଳନକୁ ରୋକିବାରେ ସାମାନ୍ୟ ବି ସଫଳ ହୋଇପାରିଲା ନାହିଁ ।

ଜନସାଧାରଣଙ୍କ ପକ୍ଷରୁ ଏକ ଛଅ ଦଫା ଦାବିସମ୍ବଳିତ ସ୍ମାରକପତ୍ର ଜେନେରାଲ୍ ଚିଆଙ୍ଗଙ୍କ ନିକଟକୁ ପଠାଗଲା । ସେଥିରେ ଚୀନ୍ ସୈନ୍ୟମାନଙ୍କୁ ତୁରନ୍ତ ଅପସାରଣ କରାଯାଉ ବୋଲି ଦୃଢ଼ ଦାବି କରାଯାଇଥିଲା । ତେବେ ଏହି ସ୍ମାରକପତ୍ର ଜେନେରାଲ୍ ଚିଆଙ୍ଗଙ୍କୁ ଅତିମାତ୍ରାରେ ଉତ୍‌କ୍ଷିପ୍ତ କରିଦେଲା । ସେ ଭାବିଲେ ଯେ, ତେନ୍‌ଜିନ୍‌ଙ୍କର ଦୁଇ ପ୍ରଧାନମନ୍ତ୍ରୀ ଲବସାଙ୍ଗ ଟାସୀ ଏବଂ ଲୁଖାଂଗ୍ୱା ହିଁ ଏଭଳି କାଣ୍ଡକାରଖାନା ଘଟାଇଛନ୍ତି । ତେଣୁ ସେ ସେହି ଦୁଇଜଣଙ୍କୁ ଉପେକ୍ଷା କରି ତାଙ୍କ ସହିତ ସାକ୍ଷାତ୍ ତଥା ଆଲୋଚନା କରିବାକୁ ଚାହାନ୍ତି ନାହିଁ ବୋଲି ତେନ୍‌ଜିନ୍‌ଙ୍କୁ ଜଣାଇଲେ । ମାତ୍ର ଦୁଇ ପ୍ରଧାନମନ୍ତ୍ରୀଙ୍କ ଅନୁପସ୍ଥିତିରେ ସେ କାହାରିକୁ ବି ସାକ୍ଷାତ କରିପାରିବେ ନାହିଁ ବୋଲି ତେନ୍‌ଜିନ୍ ଜେନେରାଲ୍ ଚିଆଙ୍ଗଙ୍କୁ ରୋକ୍‌ଠୋକ୍ ଜଣାଇଦେଲେ । ଫଳରେ ସମସ୍ତଙ୍କ ଉପସ୍ଥିତିରେ ଆଲୋଚନା କରିବାକୁ ଚିଆଙ୍ଗ ରାଜି ହେଲେ । ମାତ୍ର ଆଲୋଚନା ବେଳେ ଏଭଳି ପରିସ୍ଥିତି ସୃଷ୍ଟିହେଲା ଯେ, ତେନ୍‌ଜିନ୍ ବାଧ୍ୟ ହୋଇ ପୃଥକ୍ ଭାବରେ ତାଙ୍କ ସହିତ ଆଲୋଚନା କରିବା ପାଇଁ ନିଜର ସମ୍ମତି ପ୍ରକାଶ କଲେ । ମାତ୍ର ଏହା ଆଦୌ ଫଳପ୍ରଦ ହେଲାନାହିଁ । କାରଣ ଚୀନ୍‌ର ଅଧିକାରୀମାନଙ୍କୁ ବୁଝେଇବା ସମ୍ଭବପର ନଥିଲା । ତେନ୍‌ଜିନ୍‌ଙ୍କର ଦୁଇ ପ୍ରଧାନମନ୍ତ୍ରୀ ଲବସାଙ୍ଗ ଟାସୀ ଏବଂ ଲୁଖାଂଗ୍ୱାଙ୍କ ସହିତ ଜେନେରାଲ୍ ଚିଆଙ୍ଗଙ୍କର ସମ୍ପର୍କ ଅଧିକରୁଅଧିକ ତିକ୍ତ ହୋଇ ଉଠିଲା । ଏହାପରେ ଆଉ ଏକ ବୈଠକର ଆୟୋଜନ କରାଗଲା । ଏହି ବୈଠକରେ ଫାନ୍ ମିଙ୍ଗ୍ ନାମକ ଜଣେ ବ୍ୟକ୍ତି ସଭାପତିତ୍ୱ କଲେ । ମାତ୍ର ପୂର୍ବ ବୈଠକଗୁଡ଼ିକ ଭଳି ଏହି ବୈଠକ ମଧ୍ୟ ବିଫଳ ହେଲା । ଫାନ୍ ମିଙ୍ଗ୍ ଏବଂ ଲୁଖାଂଗ୍ୱାଙ୍କ ମଧ୍ୟରେ କଥା କଟାକଟି ଓ ବଚସା ହୋଇଥିଲା । ଫାନ୍ ମିଙ୍ଗ୍ ଉତ୍ତ୍ୟକ୍ତ ହୋଇ ଫେରିଗଲେ । ଏହାର ଅଳ୍ପ କିଛିଦିନ ପରେ ତେନ୍‌ଜିନ୍‌ଙ୍କୁ ଚୀନ୍‌ର କର୍ତ୍ତୃପକ୍ଷଙ୍କଠାରୁ ଏକ ତାରବାର୍ତ୍ତା ମିଳିଲା, ଯେଉଁଥିରେ ତାଙ୍କର ପ୍ରଧାନମନ୍ତ୍ରୀଦ୍ୱୟଙ୍କୁ ତୀବ୍ର ଭାବରେ ସମାଲୋଚନା କରାଯାଇଥିଲା । ସେମାନଙ୍କୁ ସେମାନଙ୍କର ପଦବୀରୁ ତୁରନ୍ତ ବହିଷ୍କାର କରିବା ପାଇଁ ପରାମର୍ଶ ଦିଆଯାଇଥିଲା ।

ଏତିକିବେଳେ କାସ୍‌ବାଗ୍ ମଧ୍ୟ ତାଙ୍କୁ ଚିଠିଲେଖି ପରାମର୍ଶ ଦେଇଥିଲେ ଯେ, ବର୍ତ୍ତମାନ ପରିସ୍ଥିତିରେ ସେ ତାଙ୍କର ପ୍ରଧାନମନ୍ତ୍ରୀଦ୍ୱୟଙ୍କୁ ସେମାନଙ୍କ ପଦବୀରୁ ବରଖାସ୍ତ କରିଦେବା ଦରକାର। ଏହାଦ୍ୱାରା ଚୀନ୍ ସହିତ ହୁଏତ ସମ୍ପର୍କରେ ସୁଧାର ଘଟିପାରିବ।

ଏହି ଘଟଣା ତେନ୍‌ଜିନ୍‌ଙ୍କୁ ଖୁବ୍ ବ୍ୟଥିତ କଲା। ମାତ୍ର ସେ ଚିନ୍ତାକଲେ ଯେ, ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ଦେଶର ହିତ ହିଁ ସବୁଠାରୁ ଆଗରେ। ସେଥିଲାଗି ସେ ତାଙ୍କର ଅତିପ୍ରିୟ ପ୍ରଧାନମନ୍ତ୍ରୀଦ୍ୱୟଙ୍କୁ ଇସ୍ତଫା ଦେବାକୁ କହିଲେ ଓ ସେମାନଙ୍କର ଇସ୍ତଫାପତ୍ର ଗ୍ରହଣ କରିନେଲେ।



# (୧୨) ଚୀନ୍ ଗସ୍ତ

ଲବସାଙ୍ଗ ଟାସୀ ଓ ଲୁଖାଂଗ୍ୱା ଇସ୍ତଫା ଦେବାର ପ୍ରାୟ ବର୍ଷକ ପରେ ତେନ୍‌ଜିନ୍‌ଙ୍କୁ ଚୀନ୍ ଗସ୍ତରେ ଯିବା ପାଇଁ ନିମନ୍ତ୍ରଣ ମିଳିଲା। ଚେୟାରମ୍ୟାନ୍ ମାଓଙ୍କୁ ଏହି ଗସ୍ତ ଫଳରେ ସେ ସାକ୍ଷାତ କରିପାରିବେ ବୋଲି ଭାବି ଖୁବ୍ ଆନନ୍ଦିତ ହୋଇ ଉଠିଲେ। ତେବେ ତେନ୍‌ଜିନ୍ ଚୀନ୍ ଯାଉଥିବା ଖବର ପ୍ରଚାରିତ ହୋଇଯିବା ମାତ୍ରେ ତିବ୍‌ବତର ଲୋକମାନଙ୍କ ମଧ୍ୟରେ ଏକ ଅଜଣା ଆତଙ୍କ ଖେଳିଗଲା। ସେମାନେ ଖୁସି ହୋଇପାରିଲେ ନାହିଁ। ସେମାନେ ଆଶଙ୍କା କରୁଥିଲେ ଯେ, ଏହି ଗସ୍ତରେ ଯାଇଥିବାବେଳେ ତେନ୍‌ଜିନ୍‌ଙ୍କୁ ଚୀନାମାନେ ଆଉ ସ୍ୱଦେଶକୁ ଫେରିବା ପାଇଁ ଦେବେନାହିଁ। ତାଙ୍କୁ ବେଜିଂଠାରେ ବନ୍ଦୀକରି ରଖିଦେବେ। ତେଣୁ ସେମାନେ ତେନ୍‌ଜିନ୍‌ଙ୍କୁ ଚୀନ୍‌ଗସ୍ତ ଯୋଜନାରୁ ନିବୃତ୍ତ କରିବା ଲାଗି ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ। ମାତ୍ର ଲୋକମାନଙ୍କର ସେହି ପ୍ରଚେଷ୍ଟା ସଫଳ ହେଲାନାହିଁ। ନିଜର କେତେକ ପ୍ରିୟ ପରିଜନ ତଥା ସେବାକାରୀଙ୍କୁ ଧରି ତେନ୍‌ଜିନ୍ ୧୯୫୪ ମସିହାର ପ୍ରାରମ୍ଭରେ ଚୀନ୍ ଗସ୍ତ ଆରମ୍ଭ କଲେ। ତାଙ୍କ ସହିତ ଯାତ୍ରା କରୁଥିବା ଦଳର ସଂଖ୍ୟା ଥିଲା ପାଞ୍ଚଶହ। ସେ ନିଜର ଦଳ ସହିତ ଗ୍ରୀଷ୍ମଋତୁରେ ହିଁ ଦେଶ ଛାଡ଼ିଲେ। କିଚୁ ନଦୀ ତଟରେ ହଜାର ହଜାର ଲୋକ  ଗୁଣ୍ଡ ହୋଇ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ପ୍ରଦାନ କରିଥିଲେ।

ଲାସାରୁ ବେଜିଂର ଦୂରତା ପାଖାପାଖି ଦୁଇ ହଜାର ମାଇଲ୍ ଥିଲା। ଚୀନ୍ ପକ୍ଷରୁ କ୍ୱିନ୍‌ଘାଇ ରାଜପଥ ନାମକ ଏକ ରାସ୍ତା ନିର୍ମାଣ କରାଯାଇଥିଲେ ମଧ୍ୟ ତାହାର ନିର୍ମାଣ କାର୍ଯ୍ୟ ଶେଷ ହୋଇ ନଥିଲା। ତେନ୍‌ଜିନ୍ ପ୍ରଥମେ ଯାଇ ଲାସାରୁ ପ୍ରାୟ ପଇଁତିରିଶ ମାଇଲ୍ ଦୂର ଗାଣ୍ଡେନ୍ ସନ୍ନ୍ୟାସାଶ୍ରମରେ ରହିଲେ। ଗାଣ୍ଡେନ୍ ତିବ୍‌ବତର ତୃତୀୟ ବୃହତ୍ ବିଶ୍ୱବିଦ୍ୟାଳୟ ସନ୍ନ୍ୟାସାଶ୍ରମ। ସେଠାରେ ସେ ଅଳ୍ପଦିନ ବିତାଇଥିଲେ ଓ ସେଠାରୁ ବିଦାୟ ନେବାବେଳେ ଏକ ଅଦ୍ଭୁତ ଦୃଶ୍ୟ ଦେଖିଥିଲେ। ସେଠାରେ ଏକ ମହିଷ ମସ୍ତକଧାରୀ ଦେବତାଙ୍କ ପ୍ରତିମୂର୍ତ୍ତି ଥିଲା। ଏହାକୁ ଲୋକମାନେ ତିବ୍‌ବତର ରକ୍ଷାକାରୀ ଦେବତା ଭାବରେ ବିବେଚନା କରି ପୂଜାର୍ଚ୍ଚନା କରୁଥିଲେ। ସେ ଏହି

ପ୍ରତିମୂର୍ତ୍ତିକୁ ପ୍ରଥମେ ଦେଖିଥିବା ବେଳେ ଏହା ପରାଜିତର ଗ୍ଲାନିରେ ତଳକୁ ଅନେଇଥିଲେ। ମାତ୍ର ସେ ସେହି ସ୍ଥାନ ଛାଡ଼ି ଯିବାବେଳେ ତାହା ଅତ୍ୟନ୍ତ ଭୟଙ୍କର ମୁଖଭଙ୍ଗୀ କରି ପୂର୍ବ ଦିଗକୁ ଅନେଇଥିଲେ।

ତେନ୍‌ଜିନ୍ କାର୍‌ରେ ବସି ଚୀନ୍ ଯାତ୍ରା ଆରମ୍ଭ କଲେ। ତେବେ ଖୁବ୍ ଶୀଘ୍ର ତାଙ୍କୁ ଖଚର ପିଠିରେ ବସି ଯାତ୍ରା କରିବାକୁ ପଡ଼ିଲା। କାରଣ ରାସ୍ତାସବୁ ବନ୍ୟା ଜଳରେ ଧୋଇ ଯାଇଥିଲା ଏବଂ ଅନେକ ସ୍ଥାନରେ ପୋଲ ଭୁଶୁଡ଼ି ପଡ଼ିଥିଲା। ସେହିପରି ଲଗାତାର ବରଫ ସ୍ଖଳନ ହେଉଥିଲା। ଦିନେ ସନ୍ଧ୍ୟାରେ ସେ ତମ୍ବୁ ଭିତରେ ବସିଥିବା ବେଳେ ଜେନେରାଲ ଚିଆଙ୍ଗ ଚୀନ୍-ଉ ତାଙ୍କ ପାଖରେ ଆସି ପହଞ୍ଚିଲେ ଓ ତାଙ୍କୁ ସୂଚନା ଦେଲେ ଯେ, ଆସନ୍ତାକାଲିର ଯାତ୍ରା ପୂର୍ବ ଦିନମାନଙ୍କଠାରୁ ଆହୁରି ଖରାପ ଓ କ୍ଲାନ୍ତିକର ହେବ। ସେମାନଙ୍କୁ ପାଦରେ ଚାଲିଚାଲି ଯିବା ପାଇଁ ପଡ଼ିବ। ବାସ୍ତବରେ ତାଙ୍କୁ ତାହା ହିଁ କରିବାକୁ ପଡ଼ିଥିଲା। ଅବଶ୍ୟ ପରବର୍ତ୍ତୀ ଦିନମାନଙ୍କରେ ଚିଆଙ୍ଗ ଚୀନ୍-ଉ ତାଙ୍କ ସହିତ ରହିଥିଲେ। ସମଗ୍ର ଯାତ୍ରା କାଳରେ ସେମାନେ ପ୍ରତ୍ୟେକ ଥର ଚୀନ୍ ସେନାଙ୍କ ସାମରିକ ଶିବିରରେ ଅଟକି ରହୁଥିଲେ। ଚୀନ୍ ସୈନିକମାନେ ତାଙ୍କୁ ଓ ତାଙ୍କର ସହଯୋଗୀମାନଙ୍କୁ ଚା'ପାନରେ ଆପ୍ୟାୟିତ କରୁଥିଲେ।

ପ୍ରାୟ ଦୁଇ ସପ୍ତାହ ପରେ ସେମାନେ 'ଡେମୋ' ନାମକ ଗୋଟିଏ ଛୋଟ ସହରରେ ପ୍ରବେଶ କଲେ ଓ ଗୋଟିଏ ଝରଣା କୂଳରେ ତମ୍ବୁ ଟାଣି ରାତ୍ରି ଯାପନ କଲେ। ପାଗ ଖୁବ୍ ଅନୁକୂଳ ଥିଲା। ସେଠାରେ ସେମାନେ ପ୍ରାୟ ଦଶଦିନ ରହିବା ପରେ ପୋୟୁଲ ଅଞ୍ଚଳରେ ପହଞ୍ଚିଲେ। ଏହି ସ୍ଥାନଠାରୁ ରାସ୍ତା ଖୁବ୍ ଭଲ ଥିଲା। ତେଣୁ ସେ କାର୍‌ରେ ବସି ଯାତ୍ରା ଆରମ୍ଭ କଲେ। ଖୁବ୍ କମ୍ ଦିନ ଯାତ୍ରା କରିବା ପରେ ସେ ଖାମ୍‌ର ରାଜଧାନୀ ଚାମ୍‌ଡ଼ୋରେ ପହଞ୍ଚିଗଲେ। ସେଠାରେ ମଧ୍ୟ ତାଙ୍କ ପାଇଁ ଏକ ବିରାଟ ସ୍ୱାଗତ ସମ୍ବର୍ଦ୍ଧନା ସଭାର ଆୟୋଜନ କରାଯାଇଥିଲା। ଏହି ସ୍ଥାନ ଚୀନାମାନଙ୍କର ଶାସନାଧୀନ ଅଞ୍ଚଳ ଥିଲା। ତେଣୁ ସେଠାରେ ଚେୟାରମ୍ୟାନ୍ ମାଓଙ୍କର ଜୟଗାନ କରୁଥିବା ସଙ୍ଗୀତ ପରିବେଷଣ କରାଯାଇଥିଲା।

ଚାମ୍‌ଡ଼ୋରୁ ତେନ୍‌ଜିନ୍‌ଙ୍କୁ ଚୀନ୍ ସୀମା ମଧ୍ୟରେ ଥିବା ପ୍ରଥମ ସହର 'ଚେଙ୍ଗଡ଼ୋ'କୁ ନିଆଗଲା। ସେ ଜିପ୍‌ରେ ବସି ଯାତ୍ରା କରୁଥିଲେ ଏବଂ ଯାତ୍ରାପଥରେ 'ଧର ସି ଧୋ' ନାମକ ଏକ ସ୍ଥାନରେ ସେମାନଙ୍କୁ ଗୋଟିଏ ପାହାଡ଼ ଅତିକ୍ରମ କରିବାକୁ ପଡ଼ିଥିଲା। ଚୀନ୍ ଏବଂ ତିବ୍‌ବତ ମଧ୍ୟରେ ଏହି ପାହାଡ଼ ଏକ ଐତିହାସିକ ସୀମାନ୍ତ

ସ୍ଥଳ ସୃଷ୍ଟି କରୁଥିଲା । ଚେଙ୍ଗଡ଼ୋରେ ପହଞ୍ଚିବା ପରେ ସେ ହଠାତ୍ ଜ୍ୱରାକ୍ରାନ୍ତ ହେଲେ ଏବଂ ଅନେକ ଦିନଧରି ଶଯ୍ୟାଶାୟୀ ହୋଇ ରହିଲେ । ତାଙ୍କର ଶରୀର ସୁସ୍ଥ ହେବା ପରେ ତାଙ୍କୁ ଓ ତାଙ୍କର ସହଯାତ୍ରୀମାନଙ୍କୁ 'ସିଙ୍ଗାଙ୍ଗ' ନିଆଗଲା । ଏହିଠାରେ ପଞ୍ଚେନ୍ ଲାମା ଆସି ତାଙ୍କ ସହିତ ଯୋଗଦେଲେ । ଏଠାରୁ ସେମାନଙ୍କୁ ଏକ ବିମାନ ଯୋଗେ ସିଆନ୍ ନିଆଗଲା । ସିଆନ୍‌ରେ ପହଞ୍ଚିବା ପରେ ସେ ରେଳଯୋଗେ ପେକିଂ ରେଳ ଷ୍ଟେସନ୍‌ରେ ପହଞ୍ଚିଲେ । ପେକିଂରେ ପହଞ୍ଚିବା ବେଳକୁ ତାଙ୍କର ମନ ଖୁବ୍ ଉଦ୍‌ବିଗ୍ନ ଓ ଅସ୍ଥିର ହୋଇପଡ଼ିଥିଲା । ସେ ରେଳଗାଡ଼ିରୁ ଓହ୍ଲାଇ ବାହାରକୁ ଆସିବା ପରେ ଚୀନା ସାଧାରଣତନ୍ତ୍ରୀ ପ୍ରଧାନମନ୍ତ୍ରୀ ଚାଉ-ଏନ୍-ଲାଇ ଏବଂ ଉପରାଷ୍ଟ୍ରପତି ଚୁ ଟେହ୍ ଆସି ତାଙ୍କୁ ସ୍ୱାଗତ ଜଣେଇଲେ । ପରେପରେ ଫୁନ୍‌ସଗ୍ ଓ୍ୱାଙ୍ଗ୍ୟାଲ୍ (Phuntsog Wangyal) ନାମକ ଜଣେ ବ୍ୟକ୍ତି ତାଙ୍କୁ ଏକ ସୁନ୍ଦର ଉଦ୍ୟାନ ପରିବେଷ୍ଟିତ ବଙ୍ଗଳାକୁ ନେଇଗଲେ । ଏହି ବଙ୍ଗଳାଟି ପୂର୍ବରୁ ଜାପାନୀ କୂଟନୈତିକ ଦୂତାବାସ ଅଧୀନରେ ଥିଲା । ଖୁବ୍‌ଶୀଘ୍ର ଫୁନ୍‌ସଗ୍‌ଙ୍କ ସହିତ ତାଙ୍କର ବନ୍ଧୁତା ହୋଇଗଲା । ଫୁନ୍‌ସଗ୍‌ଙ୍କର ଚୀନ୍ ଭାଷାରେ ଗଭୀର ଦକ୍ଷତା ଥିଲା ଓ ସେ ମଧ୍ୟ ଖୁବ୍ ଭଲଭାବରେ ତିବ୍‌ବତ ଭାଷା ଜାଣିଥିଲେ । ଚେୟାରମ୍ୟାନ୍ ମାଓ ଏବଂ ତେନ୍‌ଜିନ୍‌ଙ୍କ ମଧ୍ୟରେ ସାକ୍ଷାତ୍‌କାର ଅନୁଷ୍ଠିତ ହେବା ବେଳକୁ ଫୁନ୍‌ସଗ୍ ସେମାନଙ୍କ ମଧ୍ୟରେ ଖୁବ୍ ଭଲଭାବରେ ଜଣେ ବ୍ୟାଖ୍ୟାକାର (Interpretor)ର ଭୂମିକା ନିର୍ବାହ କରିପାରିଥିଲେ ।

ଏହାର ପରବର୍ତ୍ତୀ ଦିନ ତେନ୍‌ଜିନ୍‌ଙ୍କର ଚେୟାରମ୍ୟାନ୍ ମାଓଙ୍କ ସହିତ ସାକ୍ଷାତ୍ ହେଲା । ଏଥିପାଇଁ ଏକ ଆଡ଼ମ୍ବରପୂର୍ଣ୍ଣ ଭୋଜିସଭାର ଆୟୋଜନ କରାଯାଇଥିଲା । ପ୍ରତ୍ୟେକଙ୍କୁ ପଦମର୍ଯ୍ୟାଦାର ସହିତ ଧାଡ଼ିବାନ୍ଧି ଯିବା ପାଇଁ ପଡ଼ିଥିଲା । ଭୋଜି ସଭା ଆୟୋଜିତ ହୋଇଥିବା କକ୍ଷରେ ସରକାରୀ ଚିତ୍ରୋତ୍ତଳନକାରୀ ଦଳ ରହିଥିଲେ । ସେମାନଙ୍କ ନିକଟରେ ଚେୟାରମ୍ୟାନ୍ ମାଓ ଖୁବ୍ ଶାନ୍ତ ଏବଂ ଚିନ୍ତାଶୂନ୍ୟ ଭାବରେ ଠିଆହୋଇ ରହିଥିଲେ । ଚେୟାରମ୍ୟାନ୍ ମାଓଙ୍କ ସହିତ ତେନ୍‌ଜିନ୍‌ଙ୍କର ପ୍ରଥମ କରମର୍ଦ୍ଦନ ହୋଇଥିଲା । ମୋଟାମୋଟି ଭାବରେ ଚୀନ୍ ରହଣି କାଳରେ ତେନ୍‌ଜିନ୍‌ଙ୍କର ଚେୟାରମ୍ୟାନ୍ ମାଓଙ୍କ ସହିତ ବାରମ୍ବାର ସାକ୍ଷାତ୍ ହୋଇଥିଲା । ଅଧିକାଂଶ ସାକ୍ଷାତ୍‌କାର ବଡ଼ ସମାରୋହ ଅବସରରେ ହୋଇଥିବା ବେଳେ କେତେକ ବ୍ୟକ୍ତିଗତ ସାକ୍ଷାତ୍‌କାର ମଧ୍ୟ ଅନୁଷ୍ଠିତ ହୋଇଥିଲା । ଏହି ବ୍ୟକ୍ତିଗତ ସାକ୍ଷାତ୍‌କାର ବେଳେ ମାଓ ଓ ତେନ୍‌ଜିନ୍‌ଙ୍କ ବ୍ୟତୀତ କକ୍ଷରେ କେବଳ ଫୁନ୍‌ସଗ୍ ଓ୍ୱାଙ୍ଗ୍ୟାଲ୍ ଜଣେ ବ୍ୟାଖ୍ୟାକାର ଭାବରେ ଉପସ୍ଥିତ

ରହୁଥିଲେ। କିଛିଦିନ ମିଳାମିଶା କରିବା ପରେ ତେନ୍‌ଜିନ୍‌ଙ୍କର ହୃଦ୍‌ବୋଧ ହୋଇଥିଲା ଯେ, ଚେୟାରମ୍ୟାନ୍ ମାଓ ଜଣେ ହୃଦୟଗ୍ରାହୀ ମଣିଷ। ଶାରୀରିକ ଦୃଷ୍ଟିରୁ ସେ ଖୁବ୍ ଅସାଧାରଣ ଥିଲେ। ତାଙ୍କର ଶରୀରର ରଙ୍ଗ ବାଦାମୀ ଥିଲା। ତାଙ୍କର କଥାବାର୍ତ୍ତା କରିବାର ଶୈଳୀ ଭିନ୍ନ ଧରଣର ଥିଲା ଓ ସେ ସବୁବେଳେ ଛୋଟଛୋଟ ବାକ୍ୟ ବ୍ୟବହାର କରି କଥାବାର୍ତ୍ତା କରୁଥିଲେ।

ମାଓଙ୍କ ସହିତ ସାକ୍ଷାତ୍ ଆଲୋଚନା ବେଳେ ସେ ତେନ୍‌ଜିନ୍‌ଙ୍କୁ କହିଥିଲେ ଯେ, ପୂର୍ବରୁ ସ୍ୱାକ୍ଷରିତ ହୋଇଥିବା ସତରଦଫାସମ୍ବଳିତ ରାଜିନାମାର ସମସ୍ତ ଧାରାକୁ କାର୍ଯ୍ୟକାରୀ କରିବାର ବେଳ ଅଦ୍ୟାବଧି ଆସି ନଥିବା ସେ ଅନୁଭବ କରୁଛନ୍ତି। ବିଶେଷକରି ସେଥିରୁ ଗୋଟିଏ ଦଫାକୁ ଆଖି ବନ୍ଦକରି ବାଦ୍ ଦିଆଯାଇପାରେ। ସେଇ ଦଫାଟି ହେଉଛି ତିବ୍‌ବତରେ ଏକ ସାମରିକ ବ୍ୟାପାର ଆୟୋଗ ପ୍ରତିଷ୍ଠା କରିବା। ଏହି ଆୟୋଗ ପ୍ରତିଷ୍ଠା ହେବାଦ୍ୱାରା ଚୀନ୍ ସେନାବାହିନୀ ଦେଶକୁ ଅତି ଉତ୍ତମ ଭାବରେ ଶାସନ କରିପାରିବ। ଏଥିସହିତ ସେ ଏକ ପ୍ରସ୍ତାବ ଦେଇ କହିଥିଲେ ଯେ, ତିବ୍‌ବତ ସ୍ୱୟଂଶାସିତ ଅଞ୍ଚଳ ପାଇଁ ଏକ ପ୍ରସ୍ତୁତି କମିଟି ପ୍ରତିଷ୍ଠା କରିବା ଆବଶ୍ୟକ। ସଂସ୍କାରର ଗତି ଯେପରି ତିବ୍‌ବତୀୟ ଅଧିବାସୀମାନଙ୍କର ଇଚ୍ଛା ଓ ନିର୍ଦ୍ଦେଶରେ ପରିଚାଳିତ ହେବ ତାହାକୁ ଏହି କମିଟି ତଦାରଖ କରିବ। ଆଲୋଚନାରୁ ଫେରି ତେନ୍‌ଜିନ୍ ଯେତେବେଳେ ଖବର 'କାସ୍‌ବାଗ୍'ଙ୍କୁ ଦେଲେ ସେମାନେ ଖୁବ୍ ଖୁସି ହୋଇଗଲେ ଓ ଏହାଦ୍ୱାରା ସେମାନଙ୍କର ଅଭିଯାନ କିଛିମାତ୍ରାରେ ସଫଳ ହୋଇଛି ବୋଲି ମନେକଲେ। ଆଉ ଏକ ଅଣ-ଆନୁଷ୍ଠାନିକ ସାକ୍ଷାତ୍‌କାର ବେଳେ ଚେୟାରମ୍ୟାନ୍ ମାଓ ତାଙ୍କୁ କହିଥିଲେ ଯେ, ତେନ୍‌ଜିନ୍ ବେଜିଂ ଆସିଥିବାରୁ ସେ ଖୁବ୍ ଆନନ୍ଦିତ। ତିବ୍‌ବତରେ ଚୀନ୍‌କୁ କେହି ପ୍ରତିରୋଧ କରିବା ଉଚିତ ନୁହେଁ। କାରଣ ତିବ୍‌ବତୀୟମାନଙ୍କୁ ସହାୟତା ଦେବା ଲାଗି ଚୀନ୍ ସଦାସର୍ବଦା ପ୍ରୟାସ କରି ଆସୁଛି। ସର୍ବୋପରି ତିବ୍‌ବତ ଏକ ମହାନ୍ ଦେଶ। ଏହାର ଏକ ବିସ୍ମୟକର ଐତିହ୍ୟ ରହିଛି। ମାତ୍ର ବର୍ତ୍ତମାନ ତାହା ଖୁବ୍ ପଛରେ ପଡ଼ିଯାଇଛି। ତେଣୁ ତିବ୍‌ବତକୁ ଆଗକୁ ନେବା ପାଇଁ ହିଁ ଚୀନ୍ ସହଯୋଗର ହାତ ବଢ଼େଇଦେବା ଲାଗି ଇଚ୍ଛା ପ୍ରକାଶ କରୁଛି। ଅବଶ୍ୟ ଚେୟାରମ୍ୟାନ୍ ମାଓଙ୍କର ଏଭଳି କଥାସବୁକୁ ତେନ୍‌ଜିନ୍ ସହଜରେ ବିଶ୍ୱାସ କରିପାରି ନଥିଲେ। ତାଙ୍କୁ ପ୍ରଭାବିତ କରିବା ପାଇଁ ଚେୟାରମ୍ୟାନ୍ ମାଓ ଏଭଳି କଥାସବୁ ମନକୁ ଖୁସି କରାଇବା ପାଇଁ କହିଥାଇପାରନ୍ତି ବୋଲି ତାଙ୍କର ମନେହୋଇଥିଲା।

ସେ ଯା'ହେଉନା କାହିଁକି ସେ ନିଜର ଦଳ ସହିତ ବେଜିଂରେ ପ୍ରାୟ ଦଶ ସପ୍ତାହ ଅତିବାହିତ କରିଥିଲେ। ସେଠାରେ ସେ ଚୀନ୍ ଭାଷା ଶିଖିବା ମଧ୍ୟ ଆରମ୍ଭ କରି ଦେଇଥିଲେ ଓ ବ୍ୟାୟାମ କରି ନିଜର ସ୍ୱାସ୍ଥ୍ୟରେ ଉନ୍ନତି ଆଣିବାରେ ସକ୍ଷମ ହୋଇଥିଲେ। ବେଜିଂରେ ଅବସ୍ଥାନ କାଳରେ ତେନ୍‌ଜିନ୍ ବହୁ ରାଜନୈତିକ ସଭା, ସାକ୍ଷାତକାର ଓ ସମ୍ମିଳନୀରେ ଯୋଗଦେଇଥିଲେ। ଇତିମଧ୍ୟରେ ଚୀନ୍‌ରେ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ଆସେମ୍ବ୍ଲି ବୈଠକ ବସିଲା ଓ ସେଠାରେ ତେନ୍‌ଜିନ୍‌ଙ୍କୁ ଚୀନ୍ ସାଧାରଣତନ୍ତ୍ରର ଷ୍ଟିୟରିଂ କମିଟିର ଜଣେ ଉପାଧ୍ୟକ୍ଷ କରିଦିଆଗଲା। ଯଦିଓ ଏହି ପଦବୀର କୌଣସି କ୍ଷମତା ନଥିଲା; ତଥାପି ଏଥିସହିତ କିଛି ମର୍ଯ୍ୟାଦା ଓ ସମ୍ମାନ ଯୋଡ଼ିହୋଇ ରହିଥିଲା। ସେ ମଧ୍ୟ ଷ୍ଟିୟରିଂ କମିଟିର ଉପାଧ୍ୟକ୍ଷ ଭାବରେ ବିଭିନ୍ନ ରାଜନୈତିକ ସଭା ଓ ସମ୍ମିଳନୀରେ ଯୋଗଦେଇ ଯଥେଷ୍ଟ ଅନୁଭୂତି ଅର୍ଜନ କରିପାରିଥିଲେ।

ବେଜିଂରେ ଥିବାବେଳେ କେତେକ ଚୀନା ବୌଦ୍ଧଧର୍ମାବଲମ୍ବୀଙ୍କୁ ଶିକ୍ଷାଦାନ କରିବା ନିମନ୍ତେ ତାଙ୍କୁ ଅନୁରୋଧ କରାଗଲା। ଏଥିରେ ତାଙ୍କ ନିକଟରେ ଜଣେ ଚୀନା ସନ୍ନ୍ୟାସୀ ତାଙ୍କର ଅନୁବାଦକ ଭାବରେ ରହିଥିଲେ। ଏହି ବ୍ୟକ୍ତି ଜଣକ ତିବ୍‌ବତରେ ବିଦ୍ୟା ଅଧ୍ୟୟନ କରିଥିଲେ ଓ ଜଣେ ତିବ୍‌ବତୀୟ ଲାମାଙ୍କଠାରୁ ଶିକ୍ଷାପ୍ରାପ୍ତ ହୋଇଥିଲେ। ତେନ୍‌ଜିନ୍ ସେଠାରେ ଅନେକ ସାହାଯ୍ୟକାରୀ ଓ ପରୋପକାରୀ ବ୍ୟକ୍ତିଙ୍କୁ ଭେଟିଥିଲେ। ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ଲିଉ କା-ପିଙ୍ଗ୍। ଏହି ବ୍ୟକ୍ତି ଜଣକ ଥିଲେ ଏକ ସଂଖ୍ୟାଲଘୁ କାର୍ଯ୍ୟାଳୟରେ ଜଣେ ଉଚ୍ଚ ପଦାଧିକାରୀ ବ୍ୟକ୍ତି। ମାର୍କ୍ସବାଦ ଓ ଚୀନ୍ ବିପ୍ଳବ ଉପରେ ତେନ୍‌ଜିନ୍‌ଙ୍କୁ ଶିକ୍ଷାଦାନ କରିବା ନିମନ୍ତେ ତାଙ୍କୁ ନିୟୋଜିତ କରାଯାଇଥିଲା। ତାଙ୍କ ସହିତ ତେନ୍‌ଜିନ୍‌ଙ୍କର ଏଭଳି ବନ୍ଧୁତା ଗଢ଼ିଉଠିଥିଲା ଯେ, ତେନ୍‌ଜିନ୍ ଚୀନ୍ ଛାଡ଼ି ତିବ୍‌ବତ ଫେରିବା ବେଳେ ସେ ଗୋଟିଏ ଛୋଟ ଶିଶୁ ଭଳି କାନ୍ଦି ପକାଇଲେ।

ଚୀନ୍‌ରେ ଅକ୍ଟୋବର ଉତ୍ସବ ପାଳନ ଶେଷ ପର୍ଯ୍ୟନ୍ତ ତେନ୍‌ଜିନ୍ ବେଜିଂରେ ରହିଥିଲେ। ସେହି ବର୍ଷଟି ଚୀନ୍ ସାଧାରଣତନ୍ତ୍ର ପ୍ରତିଷ୍ଠାର ପଞ୍ଚମ ସାମ୍ବତ୍ସରିକ ବର୍ଷ ଥିଲା। ସେଥିଲାଗି ସେଠାକୁ ବହୁ ବୈଦେଶିକ ଉଚ୍ଚ ପଦାଧିକାରୀଙ୍କୁ ଆମନ୍ତ୍ରଣ କରାଯାଇଥିଲା। ଏହି ଅବସରରେ ତାଙ୍କର ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁଙ୍କ ସହିତ ସାକ୍ଷାତ ହୋଇଥିଲା। ଅବଶ୍ୟ ଏହି ସାକ୍ଷାତକାର ଠିକ୍ ଭାବରେ ହୋଇପାରି ନଥିଲା। ତେନ୍‌ଜିନ୍ ନେହରୁଙ୍କ ସହିତ ଠିକ୍ ଭାବରେ ଆଲୋଚନା ମଧ୍ୟ

କରିପାରି ନଥିଲେ। ସେଥିଲାଗି ଖୁବ୍ ନିରାଶ ହୋଇଥିଲେ। ଅବଶ୍ୟ ପରବର୍ତ୍ତୀ ସମୟରେ ନେହରୁଙ୍କ ଅନୁରୋଧକ୍ରମେ ସେ ଭାରତୀୟ ରାଷ୍ଟ୍ରଦୂତଙ୍କ ସହିତ କଥାବାର୍ତ୍ତା ହୋଇଥିଲେ। ମାତ୍ର ତାହା ମଧ୍ୟ ଅସଫଳ ହୋଇଥିଲା। ଏହି ଉତ୍ସବ ଅବସରରେ ତେନ୍‌ଜିନ୍ ସମସ୍ତ ବୈଦେଶିକ ରାଷ୍ଟ୍ର କର୍ମକର୍ତ୍ତାଙ୍କୁ ଭେଟିବାପାଇଁ ଇଚ୍ଛା କରିଥିଲେ ମଧ୍ୟ ତାହା ସମ୍ଭବପର ହୋଇ ନଥିଲା। କାରଣ ଚୀନ୍ କର୍ତ୍ତୃପକ୍ଷ ସେଥିଲାଗି ତାଙ୍କୁ ସୁଯୋଗ କିମ୍ବା ଅନୁମତି ଦେଇ ନଥିଲେ। ଏହାର କାରଣ ମଧ୍ୟ ତେନ୍‌ଜିନ୍‌ଙ୍କୁ ଅଛପା ନଥିଲା। ବାସ୍ତବରେ ତିବ୍‌ବତ ଉପରେ ଆକ୍ରମଣ କରିଥିବା ହେତୁ ଚୀନ୍‌କୁ ବହୁ ଦେଶ ନିନ୍ଦା ଓ ସମାଲୋଚନା କରିସାରିଥିଲେ। ଏ ବିଷୟଟିକୁ ଚୀନାମାନେ ଭୁଲି ନଥିଲେ ଏବଂ ଏହାର ପୁନରାବୃତ୍ତି କରିବାକୁ ଚାହିଁ ନଥିଲେ। ଅପରପକ୍ଷରେ, ଚୀନ୍ ତିବ୍‌ବତ ଉପରେ ଶତ୍ରୁ ମନୋଭାବ ନେଇ ଆକ୍ରମଣ କରି ନଥିଲା, ଏବଂ ତିବ୍‌ବତକୁ ସାହାଯ୍ୟ କରିବାକୁ ଉଦ୍ୟମ କରିଥିଲା କହି ଚୀନ୍ ନିଜର ଭାବମୂର୍ତ୍ତିକୁ ସଜାଡ଼ିବାର ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିବା ସେ ଭଲଭାବରେ ହୃଦୟଙ୍ଗମ କରିପାରିଥିଲେ।

ତେନ୍‌ଜିନ୍ ନିଜର ଦଳ ସହିତ ସମଗ୍ର ଚୀନ୍ ଭ୍ରମଣ କରିବାର ସୁଯୋଗ ପାଇଥିଲେ। ଏହି ଯାତ୍ରା ସମୟରେ ସେ ଥରେ ସୀମା ପାର୍ ହୋଇ ମଙ୍ଗୋଲିଆ ଭିତରକୁ ଚାଲିଯାଇଥିଲେ। ତାଙ୍କ ସହିତ ଯାତ୍ରାକାଳରେ ସେରକନ୍ ରିନ୍‌ପୋଚି ଓ ଅନ୍ୟମାନେ ଥିଲେ। ତାଙ୍କ ପାଇଁ ଏହା ଏକ ଖୁବ୍ ଆନନ୍ଦଦାୟକ ଓ ମର୍ମସ୍ପର୍ଶୀ ଅନୁଭୂତି ଥିଲା। ସେହିସବୁ ସ୍ଥାନ ତିବ୍‌ବତ ସହିତ କିଭଳି ନିବିଡ଼ ଭାବରେ ସମ୍ପୃକ୍ତ ସେ ବିଷୟରେ ଏହି ପରିଭ୍ରମଣ କାଳରେ ହିଁ ସେ ଖୁବ୍ ଭଲଭାବରେ ଅବଗତ ହୋଇ ପାରିଥିଲେ।



# (୧୩) ତିବ୍‌ବତ ଫେରିବା ବେଳ

ଏହା ମଧ୍ୟରେ ତିବ୍‌ବତର ନୂତନ ବର୍ଷ ଆସିଗଲା। ତିବ୍‌ବତର ନୂତନ ବର୍ଷକୁ ଲୋସାର (Losar) ବୋଲି କୁହାଯାଏ। ସେଥିଲାଗି ତେନ୍‌ଜିନ୍ ତାଙ୍କର ସାଥୀ ତଥା ସହଯୋଗୀମାନଙ୍କୁ ଧରି ୧୯୫୫ ମସିହା ଜାନୁଆରୀ ମାସ ଶେଷ ସୁଦ୍ଧା ଭ୍ରମଣ ଶେଷ କରି ପେକିଂକୁ ଫେରି ଆସିଲେ। ସେ ନୂଆବର୍ଷ ପାଳନ ପାଇଁ ଗୋଟିଏ ଭବ୍ୟ ଭୋଜିସଭାର ଆୟୋଜନ କଲେ। ଏହି ଭୋଜିସଭାକୁ ଚେୟାରମ୍ୟାନ୍ ମାଓ ସେ ତୁଙ୍ଗ ଏବଂ ତାଙ୍କର ଚାରି ବଡ଼ (Big Four) ନେତାମାନଙ୍କୁ ଓ ଅନ୍ୟାନ୍ୟ ବହୁ ସଦସ୍ୟଙ୍କୁ ଆମନ୍ତ୍ରଣ କଲେ। ଏହି ଚାରି ବଡ଼ ନେତାଗୋଷ୍ଠୀ ମଧ୍ୟରେ ଚାଉ ଏନ୍-ଲାଇ, ଚୁ ଟେ ଓ ଲୁ ସାଓ-ଚି ସାମିଲ୍ ଥିଲେ। ଭୋଜିସଭା ସନ୍ଧ୍ୟା ସମୟରେ ଅନୁଷ୍ଠିତ ହୋଇଥିଲା। ଭୋଜିସଭାରେ ଯୋଗ ଦେଇଥିବା ଚେୟାରମ୍ୟାନ୍ ମାଓ ଏବଂ ଅନ୍ୟ ନେତାମାନେ ବେଶ୍ ବନ୍ଧୁଭାବାପନ୍ନ ମନୋଭାବ ପ୍ରଦର୍ଶନ କରିଥିଲେ। ଭୋଜିସଭା ଅବସରରେ ତେନ୍‌ଜିନ୍ ମୁଠାଏ ସାମ୍ପା (ଅଟା) ଧରି ଉପରକୁ ଫିଙ୍ଗୁଥିଲେ। ଏହା ଚେୟାରମ୍ୟାନ୍ ମାଓଙ୍କୁ ବିଚିତ୍ର ମନେ ହୋଇଥିଲା। ଏହା କ'ଣ ବୋଲି ପଚାରିବାରୁ ତେନ୍‌ଜିନ୍ ତାଙ୍କୁ ବୁଝାଇ ଦେଲେ ଯେ, ଏହା ହେଉଛି ଏକ ପ୍ରତୀକାତ୍ମକ ସମର୍ପଣ। ଏହା ଶୁଣି ଚେୟାରମ୍ୟାନ୍ ମାଓ ଖୁବ୍ ଖୁସି ହୋଇଗଲେ ଓ ସେ ମଧ୍ୟ ମୁଠାଏ ସାମ୍ପା ଧରି ଉପରକୁ ଫୋପାଡ଼ିଲେ। ତେବେ ଅଚାନକ ତାଙ୍କର ମନୋଭାବ ବଦଳିଗଲା। ସେ ଆଉ ମୁଠାଏ ସାମ୍ପା ଧରି ମୁଖମଣ୍ଡଳରେ ମାରାତ୍ମକ ଚାହାଣି ଖେଳାଇ ତାକୁ ଚଟାଣ ଉପରକୁ ନିକ୍ଷେପ କଲେ।

ଏହି ଗୋଟିଏ ଘଟଣା ଭୋଜିସଭାର ସନ୍ଧ୍ୟାଟିକୁ ସମ୍ପୂର୍ଣ୍ଣ ଭାବରେ ନଷ୍ଟ କରିଦେଲା। ଏହି ଦୃଶ୍ୟଟି ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶିତ ହେଲା। ଏମିତିକି ଚିତ୍ରଟିକୁ ତିବ୍‌ବତର ବିଭିନ୍ନ ସମ୍ବାଦ ସରବରାହ ସଂସ୍ଥାକୁ ମଧ୍ୟ ପଠାଇ ଦିଆଯାଇଥିଲା। ସେ ଚୀନ୍ ଗସ୍ତ ସାରି ତିବ୍‌ବତ ଫେରି ଆସିବା ପରେ ମଧ୍ୟ ତିବ୍‌ବତର ଏକ ସମ୍ବାଦପତ୍ର ସେ ଧରଣର ଏକ ଚିତ୍ର ପ୍ରକାଶ କରିଥିବା ତେନ୍‌ଜିନ୍‌ଙ୍କ ଦୃଷ୍ଟିଗୋଚର ହେଲା। ଏହି ଚିତ୍ରରେ ଚେୟାରମ୍ୟାନ୍ ମାଓ ଓ ସେ ଏକତ୍ର ବସିଥିଲେ ଏବଂ ତେନ୍‌ଜିନ୍ ମାଓଙ୍କ

ଆଡ଼କୁ ମୁହଁ ବୁଲେଇ ଦୁଇହାତରେ କିଛି ଦୁର୍ବୋଧ ଭଙ୍ଗୀ ପ୍ରଦର୍ଶନ କରୁଥିଲେ । ଏଥିରେ ସମ୍ବାଦପତ୍ରର ସମ୍ପାଦକ ଲେଖିଥିଲେ ଯେ, ନବବର୍ଷର ମିଠା ବିସ୍କୁଟ୍ (Khabse) କିପରି ପ୍ରସ୍ତୁତ କରିବାକୁ ହୁଏ ସେଇକଥା ଚୀନ୍‌ର ମହାନ୍ କର୍ଣ୍ଣଧାରଙ୍କୁ ମହାମହିମ ଦଲାଇ ଲାମା ବୁଝାଇ ଦେଉଛନ୍ତି ।

ଚୀନ୍ ଛାଡ଼ି ତିବ୍‌ବତକୁ ଫେରିବାର ବେଳ ଆସି ଉପନୀତ ହୋଇଗଲା । ୧୯୫୫ ମସିହାର ବସନ୍ତ କାଳରେ ତେନଜିନ୍ ସ୍ୱଦେଶକୁ ଫେରିବାକୁ ନିଷ୍ପତ୍ତି ନେଲେ । ସେଥିଲାଗି ଦିନ ମଧ୍ୟ ଧାର୍ଯ୍ୟ ହୋଇଗଲା । ତେବେ ତା'ର ଗୋଟିଏ ଦିନ ପୂର୍ବରୁ ସେ ଷ୍ଟିୟରିଂ କମିଟିର ଗୋଟିଏ ଅଧିବେଶନରେ ଯୋଗଦେଲେ । ସେହି ଅଧିବେଶନରେ ଲୁ ରାଉ-ଚି ଅଧ୍ୟକ୍ଷତା କରୁଥିଲେ । ଲୁ ରାଉ-ଚି ତାଙ୍କର ଅଭିଭାଷଣ ଦେଉଥିଲେ । ହଠାତ୍ ତେନ୍‌ଜିନ୍‌ଙ୍କର ଜଣେ ନିରାପତ୍ତାରକ୍ଷୀ ଦୌଡ଼ିଦୌଡ଼ି କକ୍ଷ ଭିତରକୁ ପଶିଆସିଲେ ଓ ତାଙ୍କୁ କହିଲେ ଯେ, ଚେୟାରମ୍ୟାନ୍ ମାଓ ତାଙ୍କୁ ଏଇକ୍ଷଣି ସାକ୍ଷାତ କରିବା ପାଇଁ ଚାହୁଁଛନ୍ତି । ସେ ତାଙ୍କୁ ସେଥିଲାଗି ଅପେକ୍ଷା କରି ରହିଛନ୍ତି । ସେ ତୁରନ୍ତ ଯାଇ ତାଙ୍କୁ ସାକ୍ଷାତ୍ କରିବା ଦରକାର । ଏକଥା ଶୁଣି ତେନ୍‌ଜିନ୍ ଦ୍ୱନ୍ଦ୍ୱରେ ପଡ଼ିଗଲେ ଓ କ'ଣ କରିବେ ହଠାତ୍ କିଛି ଚିନ୍ତା କରିପାରିଲେ ନାହିଁ । ଲୁ ରାଉ-ଚି'ଙ୍କ ବକ୍ତବ୍ୟ ଅଧା ହୋଇଥିଲା । ତେଣୁ ହଠାତ୍ ବୈଠକ ଅଧାରୁ ଛାଡ଼ି ଚାଲିଯିବା ଠିକ୍ କଥା ନୁହେଁ । ସେପଟେ ଚେୟାରମ୍ୟାନ୍ ମାଓଙ୍କୁ ମଧ୍ୟ ନିରାଶ କରିବା ଆଦୌ ଉଚିତ କଥା ନୁହେଁ । ତେଣୁ ସେ ଦ୍ୱନ୍ଦ୍ୱରେ ପଡ଼ି ସଭାକକ୍ଷ ଛାଡ଼ି ବାହାରକୁ ଆସିଲେ ଓ ତୁରନ୍ତ ଯାଇ ଚେୟାରମ୍ୟାନ୍ ମାଓଙ୍କ କାର୍ଯ୍ୟାଳୟରେ ପହଞ୍ଚିଲେ । ସତକୁସତ ଚେୟାରମ୍ୟାନ୍ ମାଓ ତାଙ୍କୁ ଅପେକ୍ଷା କରି ବସିଥିଲେ । ତାହା ମାଓ ଏବଂ ତାଙ୍କ ମଧ୍ୟରେ ଅନ୍ତିମ ସାକ୍ଷାତ ଥିଲା । ସେ ତିବ୍‌ବତ ଫେରିବା ପୂର୍ବରୁ ମାଓ ସେ ତୁଙ୍ଗ ସରକାର ପରିଚାଳନା ସମ୍ବନ୍ଧୀୟ କେତେକ ପରାମର୍ଶ ଦେଲେ । ସଭାସମିତି କିଭଳି ଆୟୋଜନ କରାଯିବ, ଜନମତକୁ କିଭଳି ସଂଗଠିତ କରାଯିବ ଏବଂ ମୌଳିକ ପ୍ରସଙ୍ଗଗୁଡ଼ିକ ଉପରେ କିପରି ନିଷ୍ପତ୍ତି ଗ୍ରହଣ କରାଯିବ ସେସବୁ ବିଷୟରେ ତାଙ୍କୁ ବୁଝାଇଥିଲେ । ମାଓ କହିଥିଲେ ଯେ, ଯେକୌଣସି ପ୍ରକାର ଭୌତିକ ପ୍ରଗତିରେ ଯୋଗାଯୋଗ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ ଏବଂ ସେ କ୍ଷେତ୍ରରେ ଯଥାସମ୍ଭବ ଅଧିକ ତିବ୍‌ବତୀୟ ଯୁବକଙ୍କୁ ତାଲିମ୍ ଦେବା ଉପରେ ସେ ଗୁରୁତ୍ୱାରୋପ କରିବା ଉଚିତ । ଶେଷରେ ମାଓ ତାଙ୍କ ନିକଟକୁ ଚାଲି ଆସିଥିଲେ ଓ କହିଥିଲେ ଯେ, ଧର୍ମ ହେଉଛି ଏକ ବିଷ । ପ୍ରଥମତଃ ଏହା

ଜନସଂଖ୍ୟା ହ୍ରାସ କରେ। କାରଣ ଏହାଦ୍ୱାରା ସନ୍ନ୍ୟାସୀ ସନ୍ନ୍ୟାସିନୀମାନେ ଅବିବାହିତ ରହିଥାନ୍ତି। ଦ୍ୱିତୀୟତଃ, ଏହା ଭୌତିକ ପ୍ରଗତିକୁ ଉପେକ୍ଷା କରିଥାଏ।

ମାଓଙ୍କର ଏଇ ଶେଷକଥା ପଦକ ଶୁଣିବା ପରେ ତେନ୍‌ଜିନ୍‌ଙ୍କ ମୁଖମଣ୍ଡଳର ରୂପରେଖ ବଦଳିଗଲା। ସେ ନିଜ ଭିତରେ ଏକ ତୀବ୍ର ଜ୍ୱାଳା ଅନୁଭବ କଲେ। ମନେମନେ ମାଓଙ୍କୁ କହିଲେ ଯେ, ତା'ହେଲେ ତୁମେ ହେଉଛ ଜଣେ ଧର୍ମବିଧ୍ୱଂସକ। ସେତେବେଳକୁ ସନ୍ଧ୍ୟାର ବିଳମ୍ବିତ ପ୍ରହର ହୋଇଯାଇଥିଲା। ଚେୟାରମ୍ୟାନ୍ ମାଓ ଯେପରି ତାଙ୍କର ମନୋଭାବକୁ ପଢ଼ି ନପାରନ୍ତି ତେନ୍‌ଜିନ୍ ସେଭଳି ସତର୍କତା ଅବଲମ୍ବନ କରି ନିଜର ମୁହଁକୁ ଅଧା ଲୁଚେଇ କିଛି ଲେଖୁଥିବା ଠାଣିରେ ଆଗକୁ ନଇଁପଡ଼ିଥାନ୍ତି। ସୌଭାଗ୍ୟ ବଶତଃ, ଆଉ ମାତ୍ର ଅଳ୍ପ ସମୟ ପରେ ମାଓ ତାଙ୍କର ସାକ୍ଷାତକାର ଶେଷ କରିଦେଲେ। ସେ ଯେତେବେଳେ ହାତ ମିଳାଇବା ପାଇଁ ଉଠି ଠିଆହେଲେ ସେତେବେଳେ ତେନ୍‌ଜିନ୍ ମାନସିକ ଚାପରୁ ମୁକ୍ତି ପାଇଥିବା ଅନୁଭବ କଲେ। ତେନ୍‌ଜିନ୍‌ଙ୍କ କାର୍ ବାହାରେ ଅପେକ୍ଷା କରି ରହିଥିଲା। ମାଓ ଯାଇ କାର୍ କବାଟ ଖୋଲିଦେଲେ ଓ ତେନ୍‌ଜିନ୍ ତା' ଭିତରେ ବସିବାପରେ ପୁଣି କବାଟ ବନ୍ଦ କରିଦେଲେ।

ଏହାର ପରବର୍ତ୍ତୀ ଦିନ। ତିବ୍ବତ ଫେରି ଆସିବା ପାଇଁ ତେନ୍‌ଜିନ୍ ବେଜିଂ ଛାଡ଼ିଲେ। କ୍ୱିନ୍‌ଘାଇ ରାଜପଥର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ସାରିଥିଲା। ତେଣୁ ତାଙ୍କର ଫେରିବାର ଗତି ପୂର୍ବାପେକ୍ଷା ଦ୍ରୁତତର ହୋଇଥିଲା। ତେବେ ବାଟରେ ସେ ଦୁଇତିନିଦିନ ରହିବା ପାଇଁ ନିଷ୍ପତ୍ତି ନେଇଥିଲେ। ଅଧିକ ସଂଖ୍ୟକ ତିବ୍ବତୀୟଙ୍କୁ ଭେଟି ତାଙ୍କର ଚୀନ୍ ଗସ୍ତର ଅନୁଭୂତି ସମ୍ପର୍କରେ ଅବଗତ କରାଇବା ଏବଂ ଭବିଷ୍ୟତ ପାଇଁ ତାଙ୍କର କି ଯୋଜନା ରହିଛି ସେ ବିଷୟରେ ଜଣାଇବା ପାଇଁ ତେନ୍‌ଜିନ୍ ଏଭଳି ଏକ ନିଷ୍ପତ୍ତି ନେଇଥିଲେ। ଚୀନ୍ ସମ୍ପର୍କରେ ତାଙ୍କର ଧାରଣା ମୋଟାମୋଟି ଭଲ ଥିଲା। ଧର୍ମକୁ ନେଇ ଚେୟାରମ୍ୟାନ୍ ମାଓଙ୍କ ବିଚାରଧାରା ତାଙ୍କୁ କେତେକାଂଶରେ କ୍ଷୁବ୍ଧ କରିଥିଲେ ମଧ୍ୟ ସେ ଜଣେ ଛଳନାକାରୀ ବ୍ୟକ୍ତି ନୁହନ୍ତି ବୋଲି ତେନ୍‌ଜିନ୍ ବିଚାର କରୁଥିଲେ। ସେ ତିବ୍ବତର ସୁଦୂର ପୂର୍ବାଞ୍ଚଳରେ ଥିବା ଟାସିକିଏଲ୍ ପରିଦର୍ଶନରେ ଗଲେ। ସେଠାରେ ତାଙ୍କୁ ସମ୍ବର୍ଦ୍ଧନା ଦେବା ନିମନ୍ତେ ବିପୁଳ ସଂଖ୍ୟାରେ ଜନସମାଗମ ହୋଇଥିଲା। ହଜାର ହଜାର ସଂଖ୍ୟାରେ ଲୋକ ଏକତ୍ର ହୋଇ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରିଥିଲେ। ଲାସା ଫେରିବା ବାଟରେ ଯେତେ ଅଧିକ ସଂଖ୍ୟକ ଲୋକଙ୍କୁ ଭେଟିବା ସମ୍ଭବ ସେ ଭେଟିଲେ। ତାଙ୍କୁ ଦେଖିବା ପାଇଁ ଲୋକଙ୍କ ମଧ୍ୟରେ

ରହିଥିବା ଆଗ୍ରହକୁ ଦେଖି ତେନ୍‌ଜିନ୍ ଅଭିଭୂତ ହୋଇପଡ଼ିଲେ। ଏପରିକି ରୋଗଗ୍ରସ୍ତ ଓ ବୃଦ୍ଧ ଲୋକମାନେ ମଧ୍ୟ ହଜାର ହଜାର ସଂଖ୍ୟାରେ ତାଙ୍କୁ ଦେଖିବା ପାଇଁ ଆସିଥିଲେ। କେବଳ ତିବ୍‌ବତର ଲୋକମାନେ ନୁହନ୍ତି; ଏପରିକି ଚୀନ୍‌ର ବହୁ ଲୋକ ମଧ୍ୟ ତାଙ୍କ ଦର୍ଶନର ସୁଯୋଗକୁ ହାତଛଡ଼ା କରିବା ପାଇଁ ଚାହିଁ ନଥିଲେ। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ତିବ୍‌ବତୀୟ ଲୋକମାନଙ୍କର ମାନସିକତା, ସେମାନଙ୍କର ଅଭାବ ଓ ଆବଶ୍ୟକତାସବୁକୁ ବୁଝିବା ଲାଗି ଏହା ତେନ୍‌ଜିନ୍‌ଙ୍କୁ ଏକ ସୁଯୋଗ ଆଣି ଦେଇଥିଲା।

ତିବ୍‌ବତରେ ଥିବା ଚୀନ୍ କର୍ତ୍ତୃପକ୍ଷଙ୍କର ତାଙ୍କ ପ୍ରତି ବେଶ୍ କୌତୂହଳପୂର୍ଣ୍ଣ ମନୋଭାବ ଥିଲା। ସେମାନେ ସେମାନଙ୍କର ଚୀନାମୁଖ୍ୟଙ୍କୁ ଦଲାଇ ଲାମାଙ୍କଠୁ ନ୍ୟୂନ ଦୃଷ୍ଟିରେ ଦେଖୁଥିଲେ। ଥରେ ଜଣେ ସରକାରୀ କର୍ମଚାରୀ କହିଥିଲେ ଯେ, ଚେୟାରମ୍ୟାନ୍ ମାଓଙ୍କ ତୁଳନାରେ ଦଲାଇ ଲାମା ଅଧିକ ଲୋକପ୍ରିୟ ଅଟନ୍ତି। ତାଙ୍କୁ ଯେତେ ଲୋକ ଶ୍ରଦ୍ଧା କରନ୍ତି ଚୀନାମାନେ ମାଓଙ୍କୁ ସେତିକି ଭଲପାଆନ୍ତି ନାହିଁ। ଥରେ ଜଣେ ଜଗୁଆଳି ତାଙ୍କ ଗାଡ଼ି ନିକଟକୁ ଆସିଲା ଓ ସେ ଦଲାଇ ଲାମାଙ୍କୁ କେଉଁଠି ଭେଟି ପାରିବ ବୋଲି ପଚାରିଲା। ଜଗୁଆଳି ଜଣଙ୍କୁ ତେନ୍‌ଜିନ୍ ପୂର୍ବରୁ ଜାଣିଥିଲେ ଓ ସେ ଅନ୍ୟମାନଙ୍କ ଉପରେ ଉତ୍ପାତ ଦେଖାଉଥିବା କଥା ଶୁଣିଥିଲେ। ତେନ୍‌ଜିନ୍ ନିଜକୁ ଦେଖାଇଦେଇ କହିଲେ ଯେ, ସେ ଏଇଠାରେ ହିଁ ଦଲାଇ ଲାମାଙ୍କୁ ଭେଟିପାରିବ। ସେ ହିଁ ହେଉଛନ୍ତି ଦଲାଇ ଲାମା। ଏତିକି ଶୁଣିବା ମାତ୍ରକେ ଜଗୁଆଳି ଜଣକ ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲା ଓ ସଙ୍ଗେସଙ୍ଗେ ମୁଣ୍ଡରୁ ଟୋପି କାଢ଼ି ଆଶୀର୍ବାଦ ଭିକ୍ଷାକଲା। ଏହିପରି ଅନେକ ଘଟଣା ଘଟୁଥିଲା। ସେ ଯେତେବେଳେ ଚେଙ୍ଗ୍‌ଡ଼ୋ ଛାଡ଼ିଲେ ସେତେବେଳେ ଚୀନ୍‌ର ସରକାରୀ କର୍ମଚାରୀମାନେ କାନ୍ଦି ପକାଇଥିଲେ। କାରଣ ତେନ୍‌ଜିନ୍ ସମସ୍ତଙ୍କୁ ଭଲ ପାଉଥିଲେ ଓ ସୌହାର୍ଦ୍ଦ୍ୟରେ ବାନ୍ଧି ରଖୁଥିଲେ।

ଲାସାରେ ପହଞ୍ଚିବାର ଅଳ୍ପକିଛି ଦିନ ପୂର୍ବରୁ ତେନ୍‌ଜିନ୍‌ଙ୍କର ଚାଉ ଏନ୍-ଲାଇଙ୍କ ସହିତ ସାକ୍ଷାତ ହୋଇଥିଲା। ଖାମ୍‌ର ନାମକ ଏକ ସ୍ଥାନରେ ଭୂମିକମ୍ପ ହୋଇଥିଲା ଓ ଚାଉ ଏନ୍-ଲାଇ ସେହି ଭୂକମ୍ପ କ୍ଷତିଗ୍ରସ୍ତ ଅଞ୍ଚଳ ବୁଲି ଦେଖିବା ପାଇଁ ଏକ ବିମାନରେ ଆସି ସେଠାରେ ପହଞ୍ଚିଥିଲେ। ଏହା ତେନ୍‌ଜିନ୍‌ଙ୍କ ପାଇଁ ଏକ ଆକସ୍ମିକ ସାକ୍ଷାତକାର ଥିଲା। ସେଠାରେ ଚାଉ ଏନ୍-ଲାଇ ତାଙ୍କୁ ଧର୍ମ ସମ୍ପର୍କରେ କିଛି ସକାରାତ୍ମକ କଥା କହିଥିଲେ। ଏହା ତାଙ୍କୁ ଖୁବ୍ ଆଶ୍ଚର୍ଯ୍ୟ କରିଦେଇଥିଲା।



# (୧୪) ଚୀନ୍ ନେତୃତ୍ୱ ପ୍ରତି ସନ୍ଦେହ

୧୯୫୫ ମସିହା ଜୁନ୍ ମାସରେ ତେନ୍‌ଜିନ୍ ଆସି ଲାସାରେ ପହଞ୍ଚିଲେ। ଲାସାରେ ପହଞ୍ଚି ଦେଶବାସୀଙ୍କୁ ଦେଖିବାକୁ ତାଙ୍କର ମନ ଖୁବ୍ ବ୍ୟାକୁଳ ହୋଇଉଠିଲା। ସେହିପରି ତେନ୍‌ଜିନ୍‌ଙ୍କୁ ଦେଖିବା ପାଇଁ ମଧ୍ୟ ଲୋକମାନଙ୍କ ମଧ୍ୟରେ ନାହିଁ ନଥିବା ଆଗ୍ରହ ସୃଷ୍ଟି ହୋଇଥିଲା। ତାଙ୍କୁ ସମ୍ବର୍ଦ୍ଧନା ଜଣେଇବା ପାଇଁ ହଜାର ହଜାର ଲୋକ ଏକତ୍ରିତ ହୋଇଥିଲେ। ତାଙ୍କର ଦୀର୍ଘଦିନର ଅନୁପସ୍ଥିତି ତିବ୍‌ବତୀୟମାନଙ୍କ ମଧ୍ୟରେ ଅବସାଦ ଆଣି ଦେଇଥିଲା ଓ ସେ ଫେରି ଆସିଥିବାରୁ ଲୋକମାନେ ଆଶ୍ୱସ୍ତ ହୋଇଥିଲେ। ଚୀନ୍‌ରୁ ଫେରିବା ବାଟରେ ତେନ୍‌ଜିନ୍ ବହୁ ଲୋକଙ୍କୁ ଭେଟିଥିଲେ ଓ ବିଭିନ୍ନ ସମ୍ପ୍ରଦାୟର ନେତାମାନଙ୍କର ପ୍ରତିନିଧି ଦଳ ସହିତ ଆଲୋଚନା କରିଥିଲେ। ଚୀନାମାନଙ୍କର ନୂତନ ନୀତିନିୟମରେ ସମସ୍ତେ ଅତିଷ୍ଠ ବୋଲି ସେ ସର୍ବତ୍ର ଜାଣିବାକୁ ପାଇଲେ ଏବଂ ଏହାକୁ କିପରି ଦୂର କରାଯାଇପାରିବ, ତାହାର ଉପାୟ ଚିନ୍ତା କରିବାକୁ ଲୋକମାନେ ତେନ୍‌ଜିନ୍‌ଙ୍କୁ ଅନୁରୋଧ କଲେ।

ଲାସାରେ ସବୁକିଛି ମୋଟାମୋଟି ଠିକ୍‌ଠାକ୍ ରହିଥିବା କଥା ସେ ଅନୁଭବ କଲେ। କେବଳ ଗାଡ଼ି ମୋଟର ସଂଖ୍ୟା କିଛି ବଢ଼ିଯାଇଥିଲା। ଖାଦ୍ୟାଭାବ ପରିସ୍ଥିତି ସୁଧୁରି ଯାଇଥିଲା। ସେ ଚୀନ୍‌ରୁ ସକୁଶଳ ଲାସା ଫେରି ଆସିଥିବାରୁ ଲୋକମାନଙ୍କ ମଧ୍ୟରେ ସୁପ୍ତ ରହିଥିବା ଆଶା ପୁନର୍ଜୀବିତ ହୋଇଥିଲା। ଚୀନ୍‌ର ଚେୟାରମ୍ୟାନ୍ ମାଓତେସ ତୁଙ୍ଗ ତାଙ୍କ ଉପରେ ଆସ୍ଥା ପ୍ରକଟ କରିଥିବାରୁ ଖୋଦ୍ ତେନ୍‌ଜିନ୍ ମଧ୍ୟ ଆଶାବାଦୀ ହୋଇଉଠିଥିଲେ। ତେବେ ବିଶ୍ୱର କେତେକ ରାଷ୍ଟ୍ର ତିବ୍‌ବତ ଆଡୁ ମୁହଁ ଫେରେଇ ନେବା ବିଷୟ ତାଙ୍କ ଭିତରେ ବେଳେବେଳେ ନୈରାଶ୍ୟ ସୃଷ୍ଟି କରୁଥିଲା। ତିବ୍‌ବତ ପ୍ରତି ଭାରତର ଉଦାସୀନତା କଥା ମନେପକେଇ ସେ ଅଧିକରୁ ଅଧିକ ଦୁଃଖୀ ହୋଇପଡୁଥିଲେ। ନିକଟତମ ପ୍ରତିବେଶୀ ରାଷ୍ଟ୍ର ଭାବରେ ଭାରତ ଯେ ତିବ୍‌ବତ ପ୍ରତି ଚୀନ୍‌ର ମନୋଭାବକୁ ପସନ୍ଦ କରିବ ନାହିଁ ତେନ୍‌ଜିନ୍‌ଙ୍କ ମନରେ ଏପରି ଏକ ଭାବନା ବସା ବାନ୍ଧିଥିଲା। ସେ ଭାରତକୁ ତିବ୍‌ବତର ଏକ ଅଭିଜ୍ଞ ଏବଂ ବିଶ୍ୱସ୍ତ ଉପଦେଷ୍ଟା ଭାବରେ ବିଶ୍ୱାସ କରୁଥିଲେ। ମାତ୍ର ପରିତାପର ବିଷୟ ଯେ, ସେହି

ଭାରତ ହିଁ ତିବ୍ବତ ଉପରେ ଚୀନ୍‌ର ଦାବିକୁ ଗ୍ରହଣ କରି ନେଇଥିଲା। ୧୯୫୪ ମସିହା ଏପ୍ରିଲ୍ ମାସରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହରୁ ଏକ ନୂତନ ଚୀନ୍-ଭାରତ ରାଜିନାମାରେ ସ୍ୱାକ୍ଷର କରିଥିଲେ। ଏଥିରେ ପଞ୍ଚଶୀଳ ନାମକ ଏକ ସ୍ମାରକପତ୍ର ଥିଲା। ଏଥିରେ ଉଲ୍ଲେଖ ଥିଲା ଯେ, କୌଣସି ପରିସ୍ଥିତିରେ ଭାରତ ଏବଂ ଚୀନ୍ ଜଣେ ଅନ୍ୟଜଣଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବ ନାହିଁ। ଆଉ ସବୁଠୁ ଦୁଃଖର ବିଷୟ, ଭାରତ ପଞ୍ଚଶୀଳ ସ୍ମାରକପତ୍ରକୁ ସହମତି ପ୍ରଦାନ କରିଥିଲା, ଯେଉଁଥିରେ ତିବ୍ବତକୁ ଚୀନ୍‌ର ଏକ ଅଂଶବିଶେଷ ଭାବରେ ଉଲ୍ଲେଖ କରାଯାଇଥିଲା।

ଏହି ସମୟରେ ଖାମ୍ ଓ ଚାମ୍‌ଡୋଠାରେ ଥିବା ଚୀନା କର୍ତ୍ତୃପକ୍ଷଙ୍କ ଦୌରାତ୍ମ୍ୟ ଅହେତୁକ ଭାବରେ ବୃଦ୍ଧି ପାଇଲା ଏବଂ ବହୁ ଦୁଃସମ୍ବାଦ ଆସି ତାଙ୍କ ନିକଟରେ ପହଞ୍ଚୁଥିଲା। ଚୀନାମାନେ ସାଧାରଣ ଲୋକମାନଙ୍କୁ ଭିନ୍ନଭିନ୍ନ ଆଳରେ ଶୋଷଣ କରୁଥିଲେ ଓ ନିର୍ଯାତନା ଦେଉଥିଲେ। ସେମାନଙ୍କ ଉପରେ ଏକତରଫା ଭାବରେ 'ସଂସ୍କାର'ର ଚାପ ପ୍ରୟୋଗ କରୁଥିଲେ। ବାସଗୃହ, ଭୂସମ୍ପତ୍ତି ଓ ଗୋ-ମହିଷାଦି ପଶୁଙ୍କ ଉପରେ ନୂତନ କର ଧାର୍ଯ୍ୟ କରାଗଲା। ସନ୍ନ୍ୟାସାଶ୍ରମଗୁଡ଼ିକରେ ଥିବା ଆସବାବପତ୍ର ଉପରେ ମଧ୍ୟ ଶୁଳ୍କ ବସାଗଲା। ବଡ଼ବଡ଼ ଭୂସମ୍ପତ୍ତିସବୁକୁ ବାଜ୍ୟାପ୍ତ କରିଦିଆଗଲା। ଜମି ମାଲିକମାନଙ୍କୁ ସର୍ବସାଧାରଣରେ ଅଭିଯୁକ୍ତ କରାଯାଇ ଆବଶ୍ୟକତା ସ୍ଥଳେ ସେମାନଙ୍କୁ ମୃତ୍ୟୁଦଣ୍ଡରେ ମଧ୍ୟ ଦଣ୍ଡିତ କରାଯାଉଥିଲା। ସେତିକି ନୁହେଁ, ସେମାନେ ସନ୍ନ୍ୟାସାଶ୍ରମର କାର୍ଯ୍ୟପଦ୍ଧତିରେ ମଧ୍ୟ ସିଧାସଳଖ ହସ୍ତକ୍ଷେପ କରିବାରେ ଲାଗିଥିଲେ। ଧର୍ମର ବିରୁଦ୍ଧାଚରଣ କରିବାକୁ ଲୋକମାନଙ୍କୁ ମତାଉଥିଲେ। ସନ୍ନ୍ୟାସୀ ଓ ସନ୍ନ୍ୟାସିନୀମାନଙ୍କୁ ଗୁରୁତର ଭାବରେ ଶାରୀରିକ ଯନ୍ତ୍ରଣା ଦେଉଥିଲେ ଓ ସେମାନଙ୍କୁ ସର୍ବସାଧାରଣ ସ୍ଥାନମାନଙ୍କରେ ଅପମାନିତ କରୁଥିଲେ। ୧୯୫୫ର ଶେଷ ଆଡ଼କୁ ଚୀନାମାନଙ୍କର ଏହି ଅତ୍ୟାଚାରର ମାତ୍ରା ଖୁବ୍ ବଢ଼ିଗଲା। ଚୀନାମାନେ ବିପ୍ଳବୀ ଖାମ୍ପାମାନଙ୍କ ଦୃଢ଼ ହସ୍ତରେ ଦମନ କଲେ। ସର୍ବସାଧାରଣ ସ୍ଥାନମାନଙ୍କରେ ସେମାନଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରାଗଲା। କେବଳ କଠୋର ଦଣ୍ଡଦ୍ୱାରା ହିଁ ଲୋକମାନଙ୍କର ମନ ପରିବର୍ତ୍ତନ କରାଯାଇପାରିବ ବୋଲି ଚୀନାମାନେ ଦୃଢ଼ ବିଶ୍ୱାସ ଥିଲା।

୧୯୫୬ ମସିହା ଶୀତକାଳରେ ତିବ୍ବତର ନବବର୍ଷ (ଲୋସାର) ପର୍ବ ଆସି ପହଞ୍ଚିଗଲା। ଏହି ନବବର୍ଷ ପାଳନ ଅବସରରେ ତେନ୍‌ଜିନ୍ ତାଙ୍କର ରାଷ୍ଟ୍ରୀୟ ଆଧାତ୍ମିକ ପରାମର୍ଶଦାତାଙ୍କ ସହିତ ସାକ୍ଷାତ୍ କରିବାର ସୁଯୋଗ ପାଇଲେ। ଏହି ସାକ୍ଷାତ୍କାରଟି

ମଧ୍ୟ ବେଶ୍ ଆକସ୍ମିକ ଏବଂ କୌତୂହଳପୂର୍ଣ୍ଣ ହୋଇଥିଲା। ତାଙ୍କର ରାଷ୍ଟ୍ରୀୟ ଆଧ୍ୟାତ୍ମିକ ପରାମର୍ଶଦାତାମାନେ ଘୋଷଣା କରିଥିଲେ ଯେ, ଖୁବ୍ ଶୀଘ୍ର 'ମନୋବାଞ୍ଛା ପୂର୍ଣ୍ଣକାରୀ ରତ୍ନ'ର ଆଲୋକ ପାଶ୍ଚାତ୍ୟ ଆକାଶରେ ଉଦ୍‌ଭାସିତ ହେବ। ତିବ୍‌ବତୀୟମାନେ ଦଲାଇ ଲାମାଙ୍କୁ 'ମନୋବାଞ୍ଛା ପୂର୍ଣ୍ଣକାରୀ ରତ୍ନ' ଭାବରେ ବିବେଚନା କରିଥାନ୍ତି। ଏଥିରୁ ତେନ୍‌ଜିନ୍ ଭାବିଲେ ଯେ, ବୋଧହୁଏ ଏହା ହେଉଛି ତାଙ୍କର ଭାରତ ଯାତ୍ରାର ପୂର୍ବାଭାସ ଓ ଭବିଷ୍ୟବାଣୀ। ଏହି ସମୟରେ ଖାମ୍ ଓ ଆମ୍‌ଡ୍ରୋରୁ ଶହଶହ ସଂଖ୍ୟକ ଶରଣାର୍ଥୀ ଆସି ଲାସାରେ ପହଞ୍ଚିଲେ। ଫଳରେ ରାଜଧାନୀ ଲାସାରେ କ୍ରୋଧ ଓ ଉତ୍ତେଜନାର ପରିବେଶ ସୃଷ୍ଟି ହୋଇଥିଲା। ନବବର୍ଷ ପାଳନ ଉତ୍ସବ ରାଜନୈତିକ ଉଷ୍ମତାରେ ଭରିଗଲା। ଚୀନାମାନଙ୍କର ନିନ୍ଦାଗାନ କରି ଚାରିଆଡ଼େ ପ୍ରଚାରପତ୍ର ମରାଯାଇଥିଲା ଓ ପୁସ୍ତିକା ବଣ୍ଟନ କରାଯାଇଥିଲା। ଫଳରେ ଚୀନାମାନେ କ୍ରୋଧରେ ଅନ୍ଧ ପାଲଟିଯାଇ ତିନିଜଣଙ୍କୁ ବନ୍ଦୀ କରି ନାନାଦି ନିର୍ଯାତନା ଦେଇଥିଲେ ଓ ସେମାନଙ୍କୁ ଗଣତନ୍ତ୍ର ବିରୋଧୀ ବୋଲି ଆଖ୍ୟା ଦେଇଥିଲେ। ନବବର୍ଷ ଉତ୍ସବପରେ ଆମ୍‌ଡ୍ରୋ ଏବଂ ଖାମ୍ପା ବ୍ୟବସାୟୀମାନେ se-tri-chenmo ନାମକ ଏକ ଉତ୍ସବ ପାଳନ କରିବା ପାଇଁ ଅର୍ଥ ଆଦାୟ କରିବା ଆରମ୍ଭ କରିଦେଲେ। ଏହି ଉତ୍ସବ ପାଳନ କରି ଦଲାଇ ଲାମାଙ୍କ ଦୀର୍ଘ ତଥା ନିରାମୟ ଜୀବନ ଲାଗି ତିବ୍‌ବତର ରକ୍ଷାକାରୀ ଦେବଦେବୀଙ୍କ ନିକଟରେ ପ୍ରାର୍ଥନା କରାଯାଇଥାଏ। ସବୁଠୁ ଆଶ୍ଚର୍ଯ୍ୟର କଥା, ଲୋକମାନେ ଦଲାଇ ଲାମାଙ୍କ ଉପରେ ଏଭଳି ଦୃଢ଼ ଆସ୍ଥା ପ୍ରକଟ କରିଥିଲେ ଯେ, ସେହିବର୍ଷ ସବୁବର୍ଷଠାରୁ ଅଧିକ ଅର୍ଥ ଆଦାୟ କରାଯାଇଥିଲା। ଫଳରେ ସେମାନେ ଦଲାଇ ଲାମାଙ୍କୁ ଏକ ବଡ଼ ରତ୍ନଖଚିତ ସିଂହାସନ ଉପହାର ପ୍ରଦାନ କରିଥିଲେ। ଏହି ଅବସରରେ ମଧ୍ୟ ବୁବି ଗ୍ୟାଙ୍ଗ୍‌ଡ୍ରକ (Cbusbi Gangdruk) ନାମକ ଏକ ମିତ୍ରଗୋଷ୍ଠୀ ଗଠନ କରାଯାଇଥିଲା। ବୁବି ଗ୍ୟାଙ୍ଗ୍‌ଡ୍ରକ୍‌ର ଆକ୍ଷରିକ ଅର୍ଥ ହେଲା- ଚାରିନଦୀ, ଛଅ ପର୍ବତମାଳା ଏବଂ ଖାମ୍ ଓ ଆମ୍‌ଡ୍ରୋ ଦୁଇ ପ୍ରଦେଶର ଏହା ପାରମ୍ପରିକ ନାମ। ସୂଚନାଯୋଗ୍ୟ ଯେ, ପରବର୍ତ୍ତୀକାଳରେ ଏହା ଏକ ବ୍ୟାପକ ଗରିଲା ପ୍ରତିରୋଧକୁ ସଞ୍ଚାଳିତ କରିଥିଲା।

୧୯୫୬ ମସିହା ଏପ୍ରିଲ ମାସରେ ଚୀନ୍ ସାଧାରଣତନ୍ତ୍ର ଉପପ୍ରଧାନମନ୍ତ୍ରୀ ଓ ବୈଦେଶିକ ମନ୍ତ୍ରୀ ମାର୍ଶାଲ ଚେନ୍ ୟି ଚେୟାରମ୍ୟାନ୍ ମାଓଙ୍କ ପ୍ରତିନିଧି ରୂପେ ଏକ ବୃହତ୍ ଦଳର ନେତୃତ୍ୱ ନେଇ ପେକିଂରୁ ଆସି ତିବ୍‌ବତରେ ପହଞ୍ଚିଲେ। ତେନ୍‌ଜିନ୍ ଚୀନ୍ ପରିଦର୍ଶନ କାଳରେ ଚେନ୍ ୟିଙ୍କ ସହିତ ମିଳାମିଶା କରିଥିଲେ। ଚେନ୍ ୟି

ଜଣେ ଦୟାଳୁ ଓ ଉତ୍ତମ ସ୍ୱଭାବର ମଣିଷ ଥିଲେ। ବକ୍ତା ହିସାବରେ ମଧ୍ୟ ତାଙ୍କର ଅଶେଷ ଖ୍ୟାତି ରହିଥିଲା। ଥରେ ସେ ଅବିରତ ଭାବରେ ସାତଘଣ୍ଟା କାଳ ବକ୍ତୃତା ଦେଇଥିବାର ନଜିର ଅଛି। ଏଥିସହିତ ସେ ଜଣେ ମେଳାପୀ, ସଦା ଆନନ୍ଦିତ ଓ ବିଳାସପ୍ରିୟ ବ୍ୟକ୍ତି ଥିଲେ। ତାଙ୍କ ନିକଟରେ ଆତ୍ମବିଶ୍ୱାସ ଭରପୂର ହୋଇ ରହିଥିଲା। ତାଙ୍କର ସ୍ୱାଗତ ନିମନ୍ତେ ଭବ୍ୟ ସମାରୋହର ଆୟୋଜନ କରାଯାଇଥିଲା। ଗୋଟିଏ ଚୀନା ସାମରିକ ବ୍ୟାଣ୍ଡପାର୍ଟି ଯନ୍ତ୍ର ସଙ୍ଗୀତ ପରିବେଷଣ କରିଥିଲେ ଓ କମ୍ୟୁନିଷ୍ଟ ସଙ୍ଗୀତ ଗାନ କରାଯାଇଥିଲା। ସମଗ୍ର ପରିବେଶ ଉତ୍ସବମୁଖର ହୋଇଉଠିଥିଲା। ଚେନ୍ ୟି ଅପେକ୍ଷାକୃତ କ୍ଷୁଦ୍ର ଭାଷଣ ପ୍ରଦାନ କରିଥିଲେ। ସେହି ବକ୍ତୃତା ପ୍ରଦାନ ଅବସରରେ ସେ ଘୋଷଣା କରିଥିଲେ ଯେ, ତିବ୍‌ବତକୁ ତା'ର ଅନଗ୍ରସର ଅବସ୍ଥାରୁ ମୁକ୍ତ କରିବା ଲାଗି ଆବଶ୍ୟକ ସଂସ୍କାର ବ୍ୟବସ୍ଥା ପ୍ରବର୍ତ୍ତନ କରାଯିବ। ତିବ୍‌ବତୀୟମାନେ ଚୀନ୍‌ର ଜାତୀୟତା ସ୍ତରକୁ ଉନ୍ନୀତ ହେବାର ଏକାନ୍ତ ଆବଶ୍ୟକତା ରହିଛି। ଏହି ଅବସରରେ ଟେନ୍‌ଜିନ୍ ତାଙ୍କ ସ୍ୱଳ୍ପ ସମୟ ଅଭିଭାଷଣରେ ଦୃଢ଼ ଭାବରେ କହିଥିଲେ ଯେ, ଚୀନାମାନେ ସଂସ୍କାର ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ତିବ୍‌ବତୀମାନଙ୍କର ସମସ୍ତ ସର୍ତ୍ତକୁ ପାଳନ କରିବା ଦରକାର। କେବଳ ଲୋକମାନେ ଚାହୁଁଥିବା ସଂସ୍କାର ବ୍ୟବସ୍ଥା ପ୍ରବର୍ତ୍ତନ ହେବ ଏବଂ ସେମାନଙ୍କର ଉପାସନା କରିବାର ସ୍ୱାଧୀନତା ଅକ୍ଷୁଣ୍ଣ ରହିବ।

ଶିକ୍ଷା, କୃଷି, ଅର୍ଥ, ଯୋଗାଯୋଗ, ସ୍ୱାସ୍ଥ୍ୟ, ଧର୍ମ ଓ ନିରାପତ୍ତା ଆଦିର ପରିଚାଳନା ପାଇଁ ନୂତନ ସରକାରୀ ବିଭାଗ ସୃଷ୍ଟି କରିବା ବ୍ୟବସ୍ଥା ତିବ୍‌ବତ ସ୍ୱୟଂଶାସିତ ଅଞ୍ଚଳ ପ୍ରସ୍ତୁତି କମିଟିର ସମ୍ବିଧାନରେ ଉଲ୍ଲେଖ ଥିଲା। ଚାମ୍‌ଡ଼ୋର ପ୍ରଶାସନିକ ଦାୟିତ୍ୱ ମଧ୍ୟ ଲାସାକୁ ଫେରାଇ ଦିଆଯିବାର ପ୍ରତିଶ୍ରୁତି ଥିଲା। ଏକାବନ ଜଣ ଆଞ୍ଚଳିକ ପ୍ରତିନିଧିଙ୍କୁ ନେଇ ଏକ କମିଟି ଗଠନ କରାଯିବାର ଥିଲା। କିନ୍ତୁ ବାସ୍ତବ କ୍ଷେତ୍ରରେ ସେମିତି କିଛି ହୋଇ ନଥିଲା। କାଗଜ କଲମରେ ଏହି କମିଟି ସ୍ୱାୟତ୍ତ ଶାସନ ପ୍ରତିଷ୍ଠା ଦିଗରେ ଅଗ୍ରସର ହେବ ବୋଲି ପ୍ରତିଶ୍ରୁତିବଦ୍ଧ ଥିଲେ ମଧ୍ୟ ବାସ୍ତବତା ଥିଲା ସମ୍ପୂର୍ଣ୍ଣ ଭିନ୍ନ। ଚେନ୍ ୟି କମିଟିର ସଦସ୍ୟମାନଙ୍କର ନାମ ଘୋଷଣା କରିବା ପରେ ଜଣାପଡ଼ିଲା ଯେ, କମିଟିରେ ଥିବା ଅଳ୍ପ କେତେଜଣ ସଦସ୍ୟଙ୍କୁ ବାଦ୍ ଦେଲେ ଅନ୍ୟ ସମସ୍ତେ ଚୀନାମାନଙ୍କର ଚାଟୁକାର ଥିଲେ। ବାସ୍ତବରେ ତିବ୍‌ବତୀୟମାନଙ୍କ ନିମନ୍ତେ ଏହା ଏକ ଛଳନା ତଥା ପ୍ରତାରଣା ଥିଲା। ଅବଶ୍ୟ କମିଟିର ସଦସ୍ୟ ଭାବରେ ଲବସାଙ୍ଗ୍ ସାମଟେନ୍‌ଙ୍କୁ ନିଯୁକ୍ତ କରାଯାଇଥିଲା। ଲବସାଙ୍ଗ ସାମଟେନ୍ ଜଣେ ଦୟାଳୁ ଭଦ୍ରବ୍ୟକ୍ତି ଥିଲେ।

ତିବ୍‌ବତୀୟ ସ୍ୱୟଂଶାସିତ ଅଞ୍ଚଳ ପ୍ରସ୍ତୁତି କମିଟି ଉଦ୍‌ଘାଟନର ଅଳ୍ପଦିନ ପରେ ତେନ୍‌ଜିନ୍ ଶୁଣିବାକୁ ପାଇଲେ ଯେ, ଖାମ୍‌ରେ ଚୀନା କର୍ତ୍ତୃପକ୍ଷ ସ୍ଥାନୀୟ ନେତାମାନଙ୍କୁ ତାଙ୍କ ପକ୍ଷରେ ଯୋଗ ଦେବାଲାଗି ପ୍ରରୋଚିତ କରୁଛନ୍ତି । ସେମାନଙ୍କୁ ଡାକି ଏକତ୍ର କରି ଗଣତାନ୍ତ୍ରିକ ସଂସ୍କାର ପ୍ରବର୍ତ୍ତନ କରିବା ପାଇଁ ଭୋଟ୍ ଦେବାକୁ ସେମାନେ ପ୍ରବର୍ତ୍ତାଇ ଥିଲେ । ଏହି ସଂସ୍କାରର ଅସଲ ଉଦ୍ଦେଶ୍ୟ ଥିଲା ହଜାର ହଜାର କୃଷି ସମବାୟ ସମିତିର ପ୍ରତିଷ୍ଠା କରିବା । ସେ ମଧ୍ୟ ତାହାକୁ ସ୍ୱୀକୃତି ଦେଇଥିଲେ । ତେବେ ବହୁଲୋକ ଏଥିରେ ଆଗ୍ରହ ପ୍ରକାଶ କରି ନଥିଲେ । ଏହାର ଗୋଟିଏ ମାସ ପରେ ଏହି ଭିନ୍ନମତ ପୋଷଣ କରୁଥିବା ଲୋକମାନଙ୍କୁ ଚାମ୍‌ଡୋର ଉତ୍ତର-ପୂର୍ବ ଦିଗରେ ଜୋମଧା ଜୋଙ୍ଗ୍ ନାମକ ଏକ ଦୁର୍ଗକୁ ଡକାଇ ନିଆଗଲା । ଲୋକମାନେ ଦୁର୍ଗ ଭିତରକୁ ପଶୁପଶୁ ପାଞ୍ଚ ହଜାର ଚୀନା ସୈନ୍ୟ ଦୁର୍ଗକୁ ଘେରିଗଲେ ଓ ସେମାନଙ୍କୁ କହିଲେ ଯେ, ଯଦି ସେମାନେ ସଂସ୍କାରକୁ ଗ୍ରହଣ କରିବାକୁ ତଥା ସେଗୁଡ଼ିକୁ କାର୍ଯ୍ୟକାରୀ କରିବାରେ ସାହାଯ୍ୟ ସହଯୋଗ କରିବାକୁ ପ୍ରତିଶ୍ରୁତି ନ ଦିଅନ୍ତି ତା'ହେଲେ ସେମାନଙ୍କୁ ମୁକ୍ତ କରାଯିବ ନାହିଁ । ଦୁଇ ସପ୍ତାହ ବନ୍ଦୀ ଭାବରେ ରହିବା ପରେ ଖାମ୍ପାମାନେ ଅନନ୍ୟୋପାୟ ହୋଇ ସେମାନଙ୍କ ପ୍ରସ୍ତାବରେ ରାଜି ହୋଇଗଲେ । ବାସ୍ତବରେ ସେମାନଙ୍କ ନିକଟରେ ଅନ୍ୟକିଛି ବିକଳ୍ପ ନ ଥିଲା । ଅବଶ୍ୟ ସେହିଦିନ ରାତିରେ ଏହି ଖାମ୍ପାମାନେ ଦୁର୍ଗରୁ ଖସି ପଳାଇଯିବାରେ ସମର୍ଥ ହୋଇଥିଲେ । ମାତ୍ର ସେମାନେ ଚୀନାମାନଙ୍କ ଆଖିରେ ଜଣେ ଜଣେ ପଳାତକ ଓ ବିଦ୍ରୋହୀ ପାଲଟିଗଲେ । ଠିକ୍ ଏହି ସମୟରେ ତେନ୍‌ଜିନ୍‌ଙ୍କୁ ଖାମ୍‌ର କାର୍ଜିଠାରେ ଚୀନା କର୍ତ୍ତୃପକ୍ଷଙ୍କଦ୍ୱାରା ପ୍ରକାଶିତ ଗୋଟିଏ ସମ୍ବାଦପତ୍ରର ଖଣ୍ଡିଏ କପି ପ୍ରଦାନ କରାଗଲା । ଏହି ସମ୍ବାଦପତ୍ରରେ ଧାଡ଼ିଏ କଟାମୁଣ୍ଡର ଏକ ଆଲୋକିତ ଚିତ୍ର ପ୍ରକାଶିତ ହୋଇଥିଲା ଓ ତା' ତଳକୁ ଲେଖାଯାଇଥିଲା ଯେ, ଏସବୁ ପ୍ରତିକ୍ରିୟାଶୀଳ ଅପରାଧୀଙ୍କ କଟାମୁଣ୍ଡ । ତେନ୍‌ଜିନ୍‌ଙ୍କ ପାଇଁ ଚୀନ୍ ନୃଶଂସତାର ଏହା ପ୍ରଥମ ବାସ୍ତବ ପ୍ରମାଣ ଥିଲା । ଏହାପରେ ତିବ୍‌ବତ ସ୍ୱୟଂଶାସିତ ଅଞ୍ଚଳ ପ୍ରସ୍ତୁତି କମିଟି ତାଙ୍କୁ ଏକ କପଟାଚରଣ ବୋଲି ମନେହେଲା । ତାଙ୍କ ଭିତରୁ ସମସ୍ତ ଆଶା ମଧ୍ୟ ଲୋପ ପାଇଗଲା । ତାଙ୍କର ହୃଦୟ ଦ୍ରବୀଭୂତ ହେବାରେ ଲାଗିଲା । ସେ କ୍ରମଶଃ ଭାଙ୍ଗି ପଡ଼ିଲେ । ତେବେ ସେ ସ୍ୱାଭାବିକ ଭାବରେ ବାହ୍ୟ କାର୍ଯ୍ୟସବୁ ସମ୍ପନ୍ନ କରୁଥିଲେ । ତାଙ୍କ ଗୃହ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ସେ ଧ୍ୟାନ, ଜପ, ପ୍ରାର୍ଥନା ଓ ଅଧ୍ୟୟନ ଆଦି କାର୍ଯ୍ୟ ସମ୍ପାଦନ କରୁଥିଲେ । ଧର୍ମୀୟ ଉତ୍ସବ ଅନୁଷ୍ଠାନମାନଙ୍କରେ ଯୋଗ ଦେଉଥିଲେ ।

ଅନେକ ସମୟରେ ପରିଭ୍ରମଣରେ ଯିବା ଲାଗି ତେନ୍‌ଜିନ୍ ତାଙ୍କର କର୍ତ୍ତୃତ୍ୱ ଜାହିର କଲେ ଓ ବିଭିନ୍ନ ସନ୍ନ୍ୟାସାଶ୍ରମ ପରିଦର୍ଶନରେ ଗଲେ। ସେଥିପାଇଁ ତାଙ୍କୁ ଥରକୁଥର ଲାସା ଛାଡ଼ି ବାହାରକୁ ଯିବା ପାଇଁ ପଡ଼ିଲା। ଏହାଦ୍ୱାରା ସେ ବିଭିନ୍ନ ଲୋକଙ୍କ ସହିତ ମିଳାମିଶା କରିବାର ସୁଯୋଗ ପାଇଲେ ଓ ସେମାନଙ୍କର ମନୋଭାବ ସହଜରେ ଜାଣିପାରିଲେ। ସେ ଏହି ପରିଭ୍ରମଣକାଳରେ ଲାସାର ଉତ୍ତରକୁ ଥିବା ପୂର୍ବତନ ରାଜପ୍ରତିନିଧିଙ୍କ ପୀଠ ରେଟିଙ୍ଗ ସନ୍ନ୍ୟାସାଶ୍ରମ ପରିଦର୍ଶନରେ ଗଲେ। ରେଟିଙ୍ଗ ସନ୍ନ୍ୟାସାଶ୍ରମରେ ପହଞ୍ଚି ଆଶ୍ରମର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରତିମୂର୍ତ୍ତି ସମ୍ମୁଖରେ ସମ୍ମାନ ପ୍ରଦର୍ଶନ କରିବାକୁ ଗଲେ। ତେବେ ଆଶ୍ଚର୍ଯ୍ୟର କଥା ଯେ, ସେହି ପ୍ରତିମୂର୍ତ୍ତି ସମ୍ମୁଖରେ ପହଞ୍ଚିବା ପରେ କୌଣସି କାରଣ ନ ଥାଇ ତେନ୍‌ଜିନ୍ ଅତ୍ୟନ୍ତ ଭାବବିହ୍ୱଳ ହୋଇପଡ଼ିଲେ। ସେହି ସ୍ଥାନ ସହିତ ତାଙ୍କର ଦୀର୍ଘକାଳର ସମ୍ପର୍କ ଥିବା ଭଳି ତାଙ୍କର ଅନୁଭବ ହୋଇଥିଲା।

୧୯୫୬ ମସିହା ଗ୍ରୀଷ୍ମକାଳରେ ଘଟିଥିବା ଏକ ଅପ୍ରୀତିକର ଘଟଣା ତେନ୍‌ଜିନ୍‌ଙ୍କ ମାନସିକ ସ୍ଥିତିକୁ ଦୋହଲାଇ ଦେଲା। ଏହି ସମୟରେ ଖାମ୍ପା ତଥା ଆମ୍‌ଡୋୱା ସ୍ୱାଧୀନତା ସଂଗ୍ରାମୀ ଗୋଷ୍ଠୀ ବିପୁଳ ସଫଳତା ହାସଲ କରିବା ଆରମ୍ଭ କଲେ। ସେମାନେ ମେ'-ଜୁନ୍ ମାସ ଶେଷ ସୁଦ୍ଧା ଅନେକ ସେତୁ ଓ ଚୀନ୍ ସାମରିକ ରାସ୍ତାର ବହୁ ଅଂଶକୁ ଧ୍ୱଂସ କରିଦେଲେ। ଏଥିରେ ଚୀନ୍ ଉତ୍ତ୍ୟକ୍ତ ହୋଇ ଅଧିକ ୪୦ ହଜାର ସୈନ୍ୟ ନିଯୁକ୍ତ କରିବାକୁ ବାଧହେଲା। ଚୀନା ସୈନ୍ୟମାନେ ଯେ ବିଦ୍ରୋହୀମାନଙ୍କୁ ସହଜରେ ପରାଜିତ କରିପାରିବେ ଓ ଖାମ୍‌ର ଲିଥାଙ୍ଗଠାରେ ସେ ରହୁଥିବା ସନ୍ନ୍ୟାସାଶ୍ରମକୁ ଆକାଶମାର୍ଗରୁ ବୋମା ବର୍ଷଣ କରି ଧ୍ୱଂସ କରିଦେଇ ପାରିବେ, ଏକଥା ଚିନ୍ତାକରି ସେ କାନ୍ଦି ପକେଇଲେ। ମଣିଷମାନେ ପରସ୍ପର ପ୍ରତି କିଭଳି ଏପରି ନିଷ୍ଠୁର ହୋଇପାରନ୍ତି ସେ ଏକଥା ମଧ୍ୟ ବିଶ୍ୱାସ କରିପାରି ନ ଥିଲେ।

ଦିନକୁଦିନ ଚୀନା ସୈନ୍ୟମାନଙ୍କର ଦୌରାତ୍ମ୍ୟ ବୃଦ୍ଧି ପାଇବାକୁ ଲାଗିଥିଲା। ସେମାନେ ସାଧାରଣ ନାଗରିକ ଏପରିକି ସନ୍ନ୍ୟାସିନୀମାନଙ୍କୁ ମଧ୍ୟ ଛାଡ଼ି ନଥିଲେ। ସନ୍ନ୍ୟାସୀ ଓ ସନ୍ନ୍ୟାସିନୀମାନଙ୍କୁ ବନ୍ଦୀ କରିନେଇ ପରସ୍ପର ସହିତ ସହବାସ କରିବା ପାଇଁ ସେମାନଙ୍କୁ ବାଧ୍ୟ କରୁଥିଲେ। ସେତିକି ନୁହେଁ, ସେମାନଙ୍କଦ୍ୱାରା ନରହତ୍ୟା ମଧ୍ୟ କରାଇଥିଲେ। ଏଭଳି ପରିପ୍ରେକ୍ଷୀରେ ତେନ୍‌ଜିନ୍ କ'ଣ କରିବେ କିଛି ଚିନ୍ତାକରି ପାରୁ ନ ଥିଲେ। ଜେନେରାଲ ଚିଆଙ୍ଗ କୁଓ-ହା'ଙ୍କ ସହିତ ସେ ତତ୍କାଳ ସାକ୍ଷାତ୍

କରିବାକୁ ଦାବିକଲେ ଏବଂ ଚେୟାରମ୍ୟାନ୍ ମାଓଙ୍କୁ ବ୍ୟକ୍ତିଗତ ପତ୍ର ଲେଖିବାକୁ ଇଚ୍ଛା କରୁଛନ୍ତି ବୋଲି ସେ ଜଣେଇ ଦେଲେ। ସେ ଜୋର୍‌ଦେଇ କହିଲେ ଯେ, ଯଦି ଚୀନାମାନେ ଏଭଳି ଆଚରଣ ପ୍ରଦର୍ଶନ ଜାରି ରଖନ୍ତି ତା'ହେଲେ ତିବ୍‌ବତୀୟମାନଙ୍କର ସେମାନଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ତୁଟିଯିବ। ମାତ୍ର ଜେନେରାଲ ଚିଆଙ୍ଗ କୁଓ-ହା ତାଙ୍କର ମନୋଭାବକୁ ବୁଝିବେ କ'ଣ ଓଲଟି ଅପ୍ରାସଙ୍ଗିକ ଯୁକ୍ତିସବୁ କରିବା ଆରମ୍ଭ କରିଦେଲେ। କୁଆଡ଼େ ତେନ୍‌ଜିନ୍ ଯାହା କହୁଥିଲେ ସେସବୁ ତାଙ୍କର ମାତୃଭୂମି ପାଇଁ ଅତ୍ୟନ୍ତ ଅପମାନଜନକ ଥିଲା। ଏଭଳି ପାଗଳାମି ପ୍ରଦର୍ଶନ କରି ଜେନେରାଲ୍ ଚିଆଙ୍ଗ କୁଓ-ହା ନିଜ ଜିଦ୍‌ରେ ଅଟଳ ରହିଲେ। ତେନ୍‌ଜିନ୍‌ଙ୍କର ଆଉ କିଛି କରିବାର ଚାରା ନ ଥିଲା। କେବଳ ଚେୟାରମ୍ୟାନ୍ ମାଓଙ୍କୁ ଏକ ପତ୍ର ଲେଖିଲେ। ମାତ୍ର ଦୁର୍ଭାଗ୍ୟର ବିଷୟ, ମାଓଙ୍କଠାରୁ ତାଙ୍କ ପତ୍ରର କୌଣସି ପ୍ରତ୍ୟୁତ୍ତର ମିଳିଲା ନାହିଁ। ସେ ଏଥିରେ ନିରାଶ ନ ହୋଇ ସରକାରୀ ଯୋଗାଯୋଗ ମାଧ୍ୟମରେ ଅନ୍ୟ ଏକ ପତ୍ର ପ୍ରେରଣ କଲେ। ମାତ୍ର ତାହାର କୌଣସି ସୁଫଳ ମିଳିଲା ନାହିଁ। ଏପରି ମାସ ମାସ ବିତିଗଲା ପରେ ବେଜିଂରୁ କୌଣସି ପ୍ରତ୍ୟୁତ୍ତର ନ ମିଳିବା ହେତୁ ତେନ୍‌ଜିନ୍ ଖୁବ୍ ବ୍ୟଥିତ ହୋଇପଡ଼ିଲେ। ପ୍ରଥମଥର ପାଇଁ ସେ ଚୀନା ନେତୃମଣ୍ଡଳୀଙ୍କୁ ସନ୍ଦେହ କରିବା ଆରମ୍ଭ କଲେ।



# (୧୫) ଭାରତରୁ ଆମନ୍ତ୍ରଣ

୧୯୫୬ ମସିହା ବସନ୍ତ କାଳରେ ଜଣେ ଅତ୍ୟନ୍ତ ସ୍ୱାଗତଯୋଗ୍ୟ ତଥା ସମ୍ମାନନୀୟ ବ୍ୟକ୍ତି ଆସି ଲାସାରେ ପହଞ୍ଚିଲେ । ଏହି ଅତିଥି ଜଣକ ଥିଲେ ସିକିମ୍‌ର ଯୁବରାଜ । ସେ ଥିଲେ ସିକିମ୍ ସିଂହାସନର ଉତ୍ତରାଧିକାରୀ । କ୍ଷୁଦ୍ର ସିକିମ୍ ରାଜ୍ୟଟି ଡ୍ରୋମୋର ଅନତିଦୂରରେ ଅବସ୍ଥିତ ଥିଲା ଓ ଏହା ଭାରତ ସହିତ ତିବ୍‌ବତର ରହିଥିବା ସୀମାନ୍ତର ଗୋଟିଏ ଅଂଶ ଭାବରେ ବିବେଚିତ ହେଉଥିଲା । ସିକିମ୍ ଯୁବରାଜ ଜଣେ ସଦାପ୍ରସନ୍ନ ଓ ଉଦାର ମଣିଷ ଥିଲେ । ସେ ଭାରତୀୟ ମହାବୋଧି ସମାଜର ଅଧ୍ୟକ୍ଷ ଥିଲେ ଓ ସେ ସେହି ସମାଜଠାରୁ ଏକ ପତ୍ର ନେଇ ତାଙ୍କ ନିକଟକୁ ଆସିଥିଲେ । ସମଗ୍ର ଉପମହାଦେଶର ବୌଦ୍ଧଧର୍ମାବଲମ୍ବୀଙ୍କର ପ୍ରତିନିଧିତ୍ୱ କରୁଥିବା ଏହି ସଂଗଠନ ପକ୍ଷରୁ ଭଗବାନ ବୁଦ୍ଧଙ୍କର ୨,୫୦୦ତମ ଜନ୍ମ ବାର୍ଷିକୀ ପାଳନ କରାଯାଉଥିଲା ଓ ସେହି ଉପଲକ୍ଷେ ଆୟୋଜିତ ବୁଦ୍ଧଜୟନ୍ତୀ ମହୋତ୍ସବରେ ଯୋଗଦେବା ଲାଗି ତେନ୍‌ଜିନ୍‌ଙ୍କୁ ନିମନ୍ତ୍ରଣ କରାଯାଇଥିଲା ।

ଏହା ତାଙ୍କ ପାଇଁ ଏକ ଅତି ଉତ୍ତମ ଏବଂ ଆକାଂକ୍ଷିତ ଖବର ଥିଲା । ସେ ଏହା ଜାଣି ଖୁବ୍ ଆନନ୍ଦିତ ହେଲେ । କାରଣ ତିବ୍‌ବତୀୟଙ୍କ ପାଇଁ ଆର୍ଯ୍ୟଭୂମି ଭାରତବର୍ଷ ଏକ ପୁଣ୍ୟ ତୀର୍ଥସ୍ଥଳ ଥିଲା । ତେନ୍‌ଜିନ୍‌ଙ୍କ ଭିତରେ ଭାରତ ଆସିବା ଲାଗି ଗଭୀର ଆକାଂକ୍ଷା ଥିଲା । ତେଣୁ ସେ ଚିଠିଟିକୁ ଧରି ଚୀନା ସରକାରଙ୍କ ଅନୁମତି ଆଣିବା ପାଇଁ ଜେନେରାଲ ଫାନ୍ ମିଙ୍ଗ (Fan Ming)ଙ୍କ ନିକଟକୁ ଗଲେ । ଫାନ୍ ମିଙ୍ଗ ଜଣେ ଭିନ୍ନ ଧରଣର ବ୍ୟକ୍ତି ଥିଲେ । ସେ ତେନ୍‌ଜିନ୍‌ଙ୍କୁ ଆଦରର ସହିତ ସ୍ୱାଗତ କଲେ । ମାତ୍ର ତାଙ୍କର ଭାରତର ନିମନ୍ତ୍ରଣ ପ୍ରସ୍ତାବକୁ ସହଜରେ ସ୍ୱୀକାର କଲେ ନାହିଁ ଓ ପ୍ରସ୍ତାବଟିକୁ ଟାଳିବାରେ ଲାଗିଗଲେ । ସେ ତାଙ୍କୁ କହିଥିଲେ ଯେ, ଭାରତ ଏକ ବିପଜ୍ଜନକ ସ୍ଥାନ । ସେଠାରେ ବହୁ ପ୍ରତିକ୍ରିୟାଶୀଳ ବ୍ୟକ୍ତି ଅଛନ୍ତି । ତା'ଛଡ଼ା ପ୍ରସ୍ତୁତି କମିଟି ଏବେ ବ୍ୟସ୍ତ ଥିବାରୁ ତାଙ୍କୁ ଅନ୍ୟ ଦେଶକୁ ଛଡ଼ାଯିବ କି ନାହିଁ ତାହା ଏକ ଅନିଶ୍ଚିତ ବିଷୟ । ଏତଦ୍‌ବ୍ୟତୀତ, ଚିଠିଟି ଗୋଟିଏ ଧାର୍ମିକ ସଂସ୍ଥାରୁ ଆସିଛି । ଏହା ଭାରତ ସରକାରଙ୍କର

ନିମନ୍ତ୍ରଣ ପତ୍ର ନୁହେଁ। ତେଣୁ ତାହାକୁ ନେଇ ସେ ବ୍ୟସ୍ତ ହେବା ଉଚିତ ନୁହେଁ କି ଆଗ୍ରହ ପ୍ରକାଶ କରିବା ମଧ୍ୟ ସମୀଚୀନ ନୁହେଁ।

ଫାନ୍ ମିଙ୍ଗଙ୍କଠାରୁ ଏହିକଥା ଶୁଣି ତେନ୍‌ଜିନ୍‌ଙ୍କ ଭିତରେ ନୈରାଶ୍ୟ ଜାତ ହେଲା ଓ ତାଙ୍କ ଭାରତ ଯିବାର ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା ଭାବି ସେ ସମ୍ପୂର୍ଣ୍ଣ ହତାଶ ହୋଇ ଭାଙ୍ଗିପଡ଼ିଲେ। ଏହା ମଧ୍ୟରେ ଅନେକ ମାସ ବିତିଗଲା। ବୁଦ୍ଧ ଜୟନ୍ତୀ ସମ୍ପର୍କରେ ଆଉକିଛି ଖବର ଶୁଣିବାକୁ ମିଳିଲା ନାହିଁ। ଠିକ୍ ଅକ୍ଟୋବର ମାସର ମଧ୍ୟଭାଗରେ ତାଙ୍କୁ ଫାନ୍ ମିଙ୍ଗ ପ୍ରଶ୍ନକଲେ ଯେ, ସେ ଭାରତ ଯିବା ଲାଗି କାହାକୁ ପ୍ରତିନିଧି ଦଳର ନେତା ମନୋନୀତ କରବାକୁ ଚାହୁଁଛନ୍ତି କି ? ଏକଥା ଭାରତୀୟମାନଙ୍କୁ ଜଣାଇବାକୁ ପଡ଼ିବ। ତାଙ୍କର କନିଷ୍ଠ ଗୃହ ଶିକ୍ଷକ ତ୍ରିଜାଙ୍ଗ ରିନ୍‌ପୋଚିଙ୍କୁ ପ୍ରତିନିଧି ଦଳର ନେତା ଭାବରେ ଭାରତ ପଠାଇବାକୁ ଚାହୁଁଛନ୍ତି ବୋଲି ତେନ୍‌ଜିନ୍ ଉତ୍ତର ଦେଲେ। ଏଥିସହିତ ସେ ଜଣେଇଦେଲେ ଯେ, ଅନୁମୋଦନ ମିଳିବା ମାତ୍ରେ ଯାତ୍ରା ଆରମ୍ଭ କରିବାକୁ ତାଙ୍କର ପ୍ରତିନିଧି ଦଳ ପ୍ରସ୍ତୁତ ହୋଇ ରହିଛନ୍ତି। ଇତିମଧ୍ୟରେ ଦୁଇ ସପ୍ତାହ ଅତିବାହିତ ହୋଇଗଲା। ତେନ୍‌ଜିନ୍ ଭାରତ ଗସ୍ତ କରିବାର ଇଚ୍ଛାକୁ ମନରୁ ସମ୍ପୂର୍ଣ୍ଣ ଭାବରେ ପାସୋରି ଦେବାକୁ ଆରମ୍ଭ କଲେ। ମାତ୍ର ସେତିକିବେଳେ ଚିଆଙ୍ଗ ଚାଉ-ଉ ପେକିଂରୁ ଫେରି ହଠାତ୍ ତାଙ୍କୁ ଖବର ଦେଲେ ଯେ, ଚୀନ୍ ସରକାର ସବୁ ବିଷୟକୁ ବିଚାରକୁ ନେଇ ଏକଥା ସ୍ଥିର କରିଛନ୍ତି ଯେ ସେ ଭାରତ ଗଲେ ଚଳିବ। ଚିଆଙ୍ଗ ଚାଉ-ଉ'ଙ୍କ କଥା ଶୁଣି ସେ ନିଜ କାନକୁ ମଧ୍ୟ ବିଶ୍ୱାସ କରିପାରିଲେ ନାହିଁ। ତାଙ୍କ ଭିତରୁ ମରିଯାଇଥିବା ଆଶା ଯେମିତି ପୁଣିଥରେ ସତେଜ ହୋଇଉଠିଲା। ସେ ଆନନ୍ଦରେ ବିଭୋର ହୋଇଉଠିଲେ। ତେବେ ଚିଆଙ୍ଗ ଚାଉ-ଉ ତାଙ୍କୁ ସତର୍କ କରାଇଦେଇ କହିଲେ ଯେ, ସେ ସେଠାରେ ଖୁବ୍ ସତର୍କ ଓ ସାବଧାନ ହୋଇ ରହିବେ। ଭାରତରେ ଅନେକ ପ୍ରତିକ୍ରିୟାଶୀଳ ଶକ୍ତି ଓ ଗୁପ୍ତଚର ଅଛନ୍ତି। ଯଦି ସେ ସେମାନଙ୍କ ସହିତ ମିଶି କିଛି କରିବାକୁ ଉଦ୍ୟମ କରନ୍ତି ତା'ହେଲେ ହଙ୍ଗେରୀ ଓ ପୋଲାଣ୍ଡରେ ଯାହା ଘଟିଲା ତିବ୍‌ବତରେ ମଧ୍ୟ ତାହାର ପୁନରାବୃତ୍ତି ହେବ। ଏଠାରେ ଉଲ୍ଲେଖଯୋଗ୍ୟ ଯେ, ହଙ୍ଗେରୀ ଓ ପୋଲାଣ୍ଡରେ ଦେଖା ଦେଇଥିବା ବିଦ୍ରୋହକୁ ରୁଷ୍ ସରକାର ଅତି ନୃଶଂସ ଭାବରେ ଦମନ କରିଥିଲେ। ଚିଆଙ୍ଗ ଚାଉ-ଉ ତେନ୍‌ଜିନ୍‌ଙ୍କୁ ସେହି ବିଷୟରେ ସତର୍କ କରାଇ ଦେଇଥିଲେ। ଏକଥା ଶୁଣି ତେନ୍‌ଜିନ୍ ଭାରତ ଯିବା ଖବରରେ ତାଙ୍କ ଭିତରେ ଯେଉଁ ଉଦ୍ଦୀପନା ସୃଷ୍ଟି ହୋଇଥିଲା ତାହାକୁ ଚପାଇ ରଖିଲେ। ତା' ପରିବର୍ତ୍ତେ ବ୍ୟସ୍ତ ବିବ୍ରତ

ଦିଶିବାର ଅଭିନୟ କଲେ। ଏକଥା ଦେଖି ଜେନେରାଲ୍ ଚିଆଙ୍ଗ ଚାଉ-ଉ'ଙ୍କ ମନରେ ତାଙ୍କ ପ୍ରତି ଆସ୍ଥା ଆସିଗଲା ଓ ସେ ତାଙ୍କୁ ଆଶ୍ୱାସନା ଦେଇ କହିଲେ ଯେ, ଏଥିରେ ତାଙ୍କର ବ୍ୟସ୍ତ ହେବା ଦରକାର ନାହିଁ। ସେ ଯଦି କୌଣସି ଅସୁବିଧାର ସମ୍ମୁଖୀନ ହୁଅନ୍ତି ତା'ହେଲେ ତାଙ୍କୁ ସାହାଯ୍ୟ କରିବା ପାଇଁ ଚୀନ୍‌ର ରାଷ୍ଟ୍ରଦୂତ ସବୁବେଳେ ସେଠାରେ ପ୍ରସ୍ତୁତ ହୋଇ ରହିଥିବେ।

ସେତିକିରେ ତେନ୍‌ଜିନ୍ ଏବଂ ଜେନେରାଲ୍ ଚିଆଙ୍ଗ ଚାଉ-ଉ'ଙ୍କ ମଧ୍ୟରେ ସାକ୍ଷାତକାର କାର୍ଯ୍ୟକ୍ରମ ଶେଷହେଲା। କେତେକ ଗତାନୁଗତିକ ଉପଚାର ପରେ ଜେନେରାଲ୍ ଚିଆଙ୍ଗ ଚାଉ-ଉ ତାଙ୍କଠାରୁ ବିଦାୟ ନେଇ ଚାଲିଗଲେ ଓ ତେନ୍‌ଜିନ୍ ସେହି ଶୁଭ ଖବରଟିକୁ ତାଙ୍କର ବ୍ୟକ୍ତିଗତ କର୍ମଚାରୀମାନଙ୍କୁ ଶୁଣାଇବା ନିମନ୍ତେ ଅତ୍ୟନ୍ତ ବ୍ୟଗ୍ର ହୋଇଉଠିଲେ। ଚୀନ୍ ସରକାର ହଠାତ୍ କ'ଣ ପାଇଁ ମତ ପରିବର୍ତ୍ତନ କରି ତାଙ୍କୁ ଭାରତ ଯିବା ନିମନ୍ତେ ଅନୁମତି ପ୍ରଦାନ କଲେ ତାହାକୁ ନେଇ ଅନେକ କୌତୂହଳପୂର୍ଣ୍ଣ କାହାଣୀ ଶୁଣିବାକୁ ମିଳିଲା। ସେଥିରୁ ଗୋଟିଏ ହେଲା ଯେ, ତେନ୍‌ଜିନ୍ ଭାରତ ନ ଆସିବା ଖବର ଶୁଣି ଖୋଦ୍ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଚୀନ୍ ସରକାରଙ୍କୁ ବ୍ୟକ୍ତିଗତ ଭାବରେ ଚୀନ୍ ସରକାରଙ୍କୁ ଅନୁରୋଧ କରି ତାଙ୍କୁ ଭାରତ ପଠାଇବା ପାଇଁ କହିଥିଲେ। ଚୀନ୍ ସରକାର ନେହରୁଙ୍କ ଅନୁରୋଧକୁ ଟାଳିପାରିଲେ ନାହିଁ। କାରଣ ସେପରି କରିଥିଲେ ଉଭୟ ଦେଶର ସମ୍ପର୍କରେ ଫାଟ ସୃଷ୍ଟି ହେବାର ସମ୍ଭାବନା ରହିଥିଲା।

୧୯୫୬ ମସିହା ନଭେମ୍ବର ମାସ ଶେଷ ଆଡ଼କୁ ତେନ୍‌ଜିନ୍ ଭାରତ ଯିବା ଲାଗି ଲାସା ଛାଡ଼ିଲେ। ତାଙ୍କ ସହିତ ଏକ ଛୋଟ ସହଯାତ୍ରୀ ଦଳ ଥିଲେ। ସେମାନେ ସାମରିକ ପଥରେ ସିକିମ୍ ପର୍ଯ୍ୟନ୍ତ କାର୍‌ରେ ବସି ଯାତ୍ରାକଲେ। ସିଗାସେ (shigatse)ଠାରେ ପଞ୍ଚେନ୍ ଲାମାଙ୍କୁ ସାଥିରେ ନେବା ନିମନ୍ତେ କିଛି ସମୟ ଅଟକିଥିଲେ ଓ ତା'ପରେ ନାଥୁଲା ଗିରିପଥ ପୂର୍ବରୁ ଅବସ୍ଥିତ ଶେଷ ଶିବିର ପର୍ଯ୍ୟନ୍ତ ଯାତ୍ରା କରିଥିଲେ। ସେଠାରୁ ସେମାନେ ସମସ୍ତେ କାର୍‌ରୁ ଓହ୍ଲାଇ ଘୋଡ଼ା ପିଠିରେ ବସି ଯାତ୍ରା ଆରମ୍ଭ କଲେ। ଏହିଠାରୁ ହିଁ ସେମାନଙ୍କ ସହିତ ଥିବା ଜେନେରାଲ୍ ଟିନ୍ ମିଙ୍ଗ୍-ଯି ବିଦାୟ ନେଇଥିଲେ। ତେବେ ତାଙ୍କର ଭାରତ ଗସ୍ତକୁ ନେଇ ସେ ବିବ୍ରତ ହୋଇପଡ଼ିଥିଲେ ଓ ତାଙ୍କ ପ୍ରତି ବିପଦ ଥିବା ସେ ଆଶଙ୍କା କରୁଥିଲେ। ତେଣୁ କେତେକ ସତର୍କବାଣୀ ଶୁଣେଇ ଶେଷରେ ସେ ପଛକୁ ଫେରିଆସିଲେ। ନାଥୁ ଗିରିପଥର ଶୀର୍ଷରେ

ଏକ ସ୍ତୂପ ଥିଲା ଓ ତା' ଉପରେ ରଙ୍ଗୀନ ପତାକା ଉଡୁଥିଲା। ସେଠାରେ ଗୋଟିଏ ଲେଖାଏଁ ପଥର ରଖିବା ଏକ ପ୍ରଥା ଥିଲା। ତେଣୁ ତେନ୍‌ଜିନ୍‌ଙ୍କ ସମେତ ତାଙ୍କର ସହଯାତ୍ରୀ ଦଳ ସ୍ତୂପ ଉପରେ ଗୋଟିଏ ପଥର ରଖିଲେ ଓ ସିକିମ୍ ମଧ୍ୟକୁ ପ୍ରବେଶ କରିବା ପୂର୍ବରୁ Lba Gyal Lo ବୋଲି ଉଚ୍ଚ କଣ୍ଠରେ ଚିତ୍କାର କଲେ। Lba Gyal Loର ଅର୍ଥ ହେଉଛି ଈଶ୍ୱରଙ୍କର ଜୟହେଉ (Victory to the Gods)।

ଗିରିପଥର ଠିକ୍ ତଳକୁ ସେମାନଙ୍କୁ ସ୍ୱାଗତ କରିବାର ବନ୍ଦୋବସ୍ତ କରାଯାଇଥିଲା। ଗୋଟିଏ ସାମରିକ ବ୍ୟାଣ୍ଡ୍‌ବାଜା ଦଳ ଓ ଅନେକ ସରକାରୀ କର୍ମଚାରୀ ସେମାନଙ୍କୁ ସ୍ୱାଗତ କରିବା ନିମନ୍ତେ ଅପେକ୍ଷା କରି ରହିଥିଲେ। ବ୍ୟାଣ୍ଡବାଜା ଦଳ ସେମାନଙ୍କୁ ଉଭୟ ତିବ୍‌ବତୀୟ ଓ ଭାରତୀୟ ଜାତୀୟ ସଙ୍ଗୀତ ତଥା ବାଦ୍ୟ ପରିବେଷଣ କରି ଭବ୍ୟ ସ୍ୱାଗତ ଜଣାଇଥିଲେ। ସରକାରୀ କର୍ମକର୍ତ୍ତାଙ୍କ ମଧ୍ୟରେ ଜଣେ ଲାସାରେ ଥିବା ପୂର୍ବତନ ଭାରତୀୟ ରାଷ୍ଟ୍ରଦୂତ, ସିକିମ୍‌ର ତତ୍କାଳୀନ ରାଜନୈତିକ ଉଚ୍ଚପଦାଧିକାରୀ ଶ୍ରୀଯୁକ୍ତ ଆପା ବି. ପିନ୍ଥ ଓ ଅନ୍ୟଜଣେ ସିକିମ୍‌ବାସୀ ସୋନାମ୍ ଟପ୍‌ଗ୍ୟାଲ୍ କାଜି ଥିଲେ। ସୋନାମ୍ ଟପ୍‌ଗ୍ୟାଲ କାଜି ଭାରତ ପରିଦର୍ଶନ କାଳରେ ତାଙ୍କର ଅନୁବାଦକ ଭାବରେ କାର୍ଯ୍ୟ ତୁଲାଇଥିଲେ। ଏମାନଙ୍କ ବ୍ୟତୀତ ସେଠାରେ ମହାରାଜକୁମାର ଥୋଣ୍ଡୋପ୍ ନାମ୍‌ଗ୍ୟାଲ୍ ମଧ୍ୟ ଉପସ୍ଥିତ ରହିଥିଲେ। ସ୍ୱାଗତ ସମ୍ଭାଷଣ ପରେ ରାତ୍ରୀଯାପନ ନିମନ୍ତେ ସେମାନଙ୍କୁ ସୋଙ୍ଗୋ ହ୍ରଦ କୂଳରେ ଅବସ୍ଥିତ ଗୋଟିଏ ବସତିକୁ ନିଆଗଲା। ସେଠାରେ ନିଜର ପାଞ୍ଚଜଣ ଭାଇଙ୍କ ସହିତ ତାଙ୍କର ସାକ୍ଷାତ ହେଲା। ସେମାନେ ଥିଲେ ଟାକ୍‌ସେର ଗିନ୍‌ପୋଚି, ଗ୍ୟାଲୋ ଥୋଣ୍ଡୁପ୍, ଲବସାଙ୍ଗ ସାମଟେନ୍ ଓ ସବା ସାନଭାଇ ତେନ୍‌ଜିନ୍ ଚୋଗ୍ୟାଲ୍। ଏମାନଙ୍କ ମଧ୍ୟରୁ ଟାକ୍‌ସେର ଓ ଗ୍ୟାଲୋ ଥୋଣ୍ଡୁପ୍‌ଙ୍କୁ ସେ ଆଦୌ ଦେଖି ନଥିଲେ।

ତା' ପରଦିନ ସେମାନେ ସିକିମ୍‌ର ରାଜଧାନୀ ଗ୍ୟାଙ୍ଗ୍‌ଟକ୍‌ରେ ପହଞ୍ଚିଲେ। ସେଠାରେ ସିକିମ୍‌ର ମହାରାଜା ସାର୍ ଟାସୀ ନାମଗ୍ୟାଲ୍ ଆସି ତାଙ୍କୁ ସ୍ୱାଗତ କଲେ। ଗ୍ୟାଙ୍ଗଟକ୍‌ରେ ସେ ଗୋଟିଏ ରାତି ବିତାଇଲେ। ତା' ପରଦିନ ସକାଳେ ଉଠି ସେମାନେ ବାଗ୍‌ଡୋଗ୍ରା ବିମାନ ବନ୍ଦର ଅଭିମୁଖେ ଯାତ୍ରା କଲେ।



# (୧୬) ଭାରତରେ ତେନ୍‌ଜିନ୍

ବାଗ୍‌ଡୋଗ୍ରା ବିମାନ ବନ୍ଦରରୁ ତାଙ୍କୁ ଭାରତ ନେଇଯିବା ପାଇଁ ଏକ ସ୍ୱତନ୍ତ୍ର ବିମାନ ଅପେକ୍ଷା କରି ରହିଥିଲା। ଏଥିରେ ସେମାନେ ବେଶ୍ ଆରାମ୍‌ରେ ଆହ୍ଲାବାଦ ଅଭିମୁଖେ ଯାତ୍ରା ଆରମ୍ଭ କଲେ। ତେନ୍‌ଜିନ୍ ଚୀନ୍‌ରେ ମଧ୍ୟ ବିମାନ ଯାତ୍ରା କରିଥିଲେ। ମାତ୍ର ତାଙ୍କ ମତରେ ଚୀନ୍ ବିମାନ ଯାତ୍ରା ତୁଳନାରେ ଭାରତୀୟ ବିମାନ ଯାତ୍ରା ଖୁବ୍ ଆରାମଦାୟକ ଓ ଆନନ୍ଦପୂର୍ଣ୍ଣ ଥିଲା। ଆହ୍ଲାବାଦ୍‌ଠାରେ ସେମାନେ କିଛି ସମୟ ଅଟକି ରହି ମଧ୍ୟାହ୍ନ ଭୋଜନ ଶେଷକଲେ। ଏହାପରେ ଭାରତର ରାଜଧାନୀ ନୂଆଦିଲ୍ଲୀର ପାଲାମ୍ ବିମାନ ବନ୍ଦର ତାଙ୍କର ଲକ୍ଷ୍ୟସ୍ଥଳ ଥିଲା। ଭାରତ ଆକାଶର ହଜାର ହଜାର ଫୁଟ ଉଚ୍ଚରେ ବିମାନରେ ବସି ଯାତ୍ରା କରୁଥିବା ବେଳେ ତେନ୍‌ଜିନ୍ ଖୁବ୍ ବିସ୍ମିତ ଓ ଭାବବିହ୍ୱଳ ହୋଇପଡୁଥିଲେ। କାରଣ ଭାରତ ତାଙ୍କ ପାଇଁ ଏକ ତୀର୍ଥଭୂମି ଥିଲା। ପୁଣି ସେ ଚୀନ୍ ଏବଂ ଭାରତ ମଧ୍ୟରେ ଥିବା ଚଳଣିକୁ ତୁଳନା କରି ଆଶ୍ଚର୍ଯ୍ୟଚକିତ ହୋଇପଡୁଥିଲେ। ସେ ଭାରତରେ ପାଦ ଥାପିବାମାତ୍ରେ ଚୀନ୍‌ଠାରୁ ଭାରତର ଲୋକମାନଙ୍କର ଜୀବନଶୈଳୀ ଯେ କେତେ ଭିନ୍ନ ତଥା ମହତ୍ ସେକଥା ମର୍ମେମର୍ମେ ଅନୁଭବ କରିପାରୁଥିଲେ। ଭାରତ ସମସ୍ତଙ୍କ ପ୍ରତି ଉନ୍ମୁକ୍ତ ରହି ଅନ୍ତର ମଧ୍ୟରେ ପରମ ତୃପ୍ତିର ସହିତ କାଳାତିପାତ କରୁଛି ବୋଲି ସେ ଅନୁଭବ କରିପାରୁଥିଲେ। ତେନ୍‌ଜିନ୍‌ଙ୍କୁ ନେଇ ଯାଉଥିବା ବିମାନ ପରିଶେଷରେ ଯାଇ ରାଜଧାନୀ ନୂଆଦିଲ୍ଲୀରେ ଅବତରଣ କଲା। ତାଙ୍କୁ ସମ୍ମାନ ଜଣାଇବା ପାଇଁ ଗାର୍ଡ଼ ଅଫ୍ ଅନର୍‌ର ବ୍ୟବସ୍ଥା କରାଯାଇଥିଲା। ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହରୁ ଏବଂ ଉପରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ତାଙ୍କୁ ସ୍ୱାଗତ୍ କରିବା ଲାଗି ବିମାନ ବନ୍ଦରରେ ଉପସ୍ଥିତ ରହିଥିଲେ। ଚୀନ୍‌ରେ ତାଙ୍କୁ ଦିଆଯାଇଥିବା ସମ୍ମାନ ଓ ଉତ୍ସବଠାରୁ ଏହା ଖୁବ୍ ଉଚ୍ଚକୋଟୀର ଥିଲା। ସେ ଖୁବ୍ ସହଜ ଭାବରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଏବଂ ଉପରାଷ୍ଟ୍ରପତି ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କ ସହିତ ବ୍ୟକ୍ତିଗତ ଭାବରେ ମିଳାମିଶା କରିପାରିଥିଲେ। ସେମାନଙ୍କର ମିଳାମିଶା ଓ କଥାବାର୍ତ୍ତାରେ ଥିବା ଆନ୍ତରିକତା ଓ ଭଲପାଇବାକୁ ସେ ଖୁବ୍ ଭଲଭାବରେ ଅନୁଭବ କରିପାରୁଥିଲେ।

ଡକ୍ଟର ରାଜେନ୍ଦ୍ର ପ୍ରସାଦ ଭାରତର ତତ୍‌କାଳୀନ ରାଷ୍ଟ୍ରପତି ଥିଲେ। ତାଙ୍କୁ ଭେଟିବା ପାଇଁ ତେନ୍‌ଜିନ୍‌ଙ୍କୁ ବିମାନ ବନ୍ଦରରୁ ସିଧାସଳଖ ରାଷ୍ଟ୍ରପତି ଭବନକୁ ନିଆଗଲା। ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଥିଲେ ଜଣେ ବୟସ୍କ, ଧୀରସ୍ଥିର, ଶାନ୍ତ, ନମ୍ର ଓ ଭଦ୍ର ସ୍ୱଭାବର ମଣିଷ। ତାଙ୍କ ବ୍ୟବହାରରେ ସେ ମୁଗ୍ଧ ହୋଇଗଲେ। ତା'ପରଦିନ ସେ ଯମୁନା ନଦୀ ତଟସ୍ଥ ମହାତ୍ମା ଗାନ୍ଧୀଙ୍କ ସମାଧିସ୍ଥଳ 'ରାଜଘାଟ' ପରିଦର୍ଶନରେ ଗଲେ। ସେହି ସ୍ଥାନଟି ଖୁବ୍ ଶାନ୍ତ, ମଧୁର ଓ ମନୋରମ ଥିଲା। ମହାତ୍ମା ଗାନ୍ଧୀଙ୍କ ସମାଧି ପୀଠରେ ପାଦଦେଇ ତେନ୍‌ଜିନ୍ ନିଜକୁ ଧନ୍ୟ ଓ ଭାଗ୍ୟବାନ ମନେକଲେ। ଅହିଂସାର ପୂଜାରୀ ମହାତ୍ମା ଗାନ୍ଧୀଙ୍କ ପ୍ରତି ତାଙ୍କର ମସ୍ତକ ଶ୍ରଦ୍ଧା ଓ ଭକ୍ତିରେ ନଇଁଗଲା। ତେବେ ମହାତ୍ମା ଗାନ୍ଧୀଙ୍କୁ ସଶରୀରରେ ଦେଖିପାରି ନଥିବା ହେତୁ ସେ ନିଜକୁ ହତଭାଗ୍ୟ ମନେକରୁଥିଲେ।

ଏହାର ପରବର୍ତ୍ତୀ ଦିନମାନଙ୍କରେ ବୁଦ୍ଧ ଜୟନ୍ତୀ ଉତ୍ସବ ଆୟୋଜିତ ହେଲା। ଏହି ଅବସରରେ ସେ ଭଗବାନ ବୁଦ୍ଧଙ୍କ ବାଣୀ ଉପରେ ରହିଥିବା ତାଙ୍କର ଅଟଳ ବିଶ୍ୱାସ ସମ୍ପର୍କରେ ମତବ୍ୟକ୍ତ କରିଥିଲେ। ସେ କହିଥିଲେ ଯେ, ବୁଦ୍ଧଙ୍କ ବାଣୀକୁ ଗ୍ରହଣ କଲେ ତାହା କେବଳ ବ୍ୟକ୍ତିବିଶେଷଙ୍କ ମନରେ ଅଖଣ୍ଡ ଶାନ୍ତି ଆଣିଦେବ ନାହିଁ, ଅଧିକନ୍ତୁ ଦେଶଦେଶ ମଧ୍ୟରେ ବି ଶାନ୍ତି ସଦ୍‌ଭାବ ତଥା ସୌହାର୍ଦ୍ଦ୍ୟ ବୃଦ୍ଧିରେ ସହାୟକ ହେବ। ବୁଦ୍ଧ ଜୟନ୍ତୀ ଅବସରରେ ସେ ଅନେକ ଗାନ୍ଧୀବାଦୀ ନେତାଙ୍କ ସହିତ ମିଳାମିଶା କରିବାର ସୁଯୋଗ ପାଇଥିଲେ ଏବଂ ସେମାନଙ୍କଠାରୁ ବାପୁଙ୍କ ବିଷୟରେ ଜାଣି ନିଜକୁ ଧନ୍ୟ ମନେକରିଥିଲେ।

ତେନ୍‌ଜିନ୍ ଦିନକୁଦିନ ଭାରତ ସମ୍ପର୍କରେ ବହୁ ଅଜଣା ଅନୁଭୂତି ଆହରଣ କରୁଥିଲେ। ଚୀନ୍‌ଠାରୁ ଯେ ଭାରତ ବହୁଗୁଣରେ ଶ୍ରେଷ୍ଠ ଏହି ଧାରଣା ତାଙ୍କର ଦୃଢ଼ୀଭୂତ ହେଉଥିଲା। ଚୀନ୍ ଗସ୍ତ କରିବା ବେଳେ ସେ ଅନେକ ଭୋଜିସଭାରେ ଯୋଗ ଦେଇଥିଲେ। ଭାରତରେ ବିଭିନ୍ନ ସଭାସ୍ଥଳକୁ ମଧ୍ୟ ତାଙ୍କୁ ଆମନ୍ତ୍ରଣ କରାଯାଇଥିଲା। ତେବେ ଦୁଇଦେଶ ମଧ୍ୟରେ ଯାହା ଗୁରୁତ୍ୱପୂର୍ଣ୍ଣ ପ୍ରଭେଦ ସେ ଅନୁଭବ କରୁଥିଲେ ତାହା ହେଉଛି ଭାରତରେ ଏକ ନିଷ୍କାପଟ ଆନ୍ତରିକ ପରିବେଶ ବିରାଜମାନ କରୁଥିଲା, ଯାହା ଚୀନ୍‌ରେ ସେ ଆଦୌ ଦେଖିବାକୁ ପାଇ ନଥିଲେ। ଲୋକମାନଙ୍କୁ ଭୟଭୀତ କରାଇ ସେମାନଙ୍କର ମନ ଓ ମତ ପରିବର୍ତ୍ତନ କରିବାକୁ ଚୀନାମାନେ ଗୁରୁତ୍ୱ ଦେଉଥିବାବେଳେ ଭାରତୀୟମାନେ ଏହାର ସମ୍ପୂର୍ଣ୍ଣ ବିପରୀତ ଥିଲେ। କେବଳ

ପାରସ୍ପରିକ ସଦ୍‌ଭାବର ବିକାଶ ମାଧ୍ୟମରେ ତଥା ସତ୍ୟତା ଆଧାରରେ ବନ୍ଧୁତା ପ୍ରତିଷ୍ଠା ହୋଇପାରିବ ବୋଲି ଭାରତୀୟମାନେ ବିଶ୍ୱାସ କରୁଥିଲେ । ଏହିଭଳି ଅନୁଭୂତି ଅର୍ଜନ କରିବା ପରେ ତେନ୍‌ଜିନ୍ ଭାରତକୁ ହୃଦୟଭରି ଭଲପାଇ ବସିଥିଲେ ଓ ସବୁଦିନ ଲାଗି ଭାରତରେ ରହିଯିବାର ଚିନ୍ତା ତାଙ୍କ ମନରେ ଜାତ ହୋଇଥିଲା । ତେଣୁ ପଣ୍ଡିତ ନେହରୁଙ୍କ ସହିତ ସାକ୍ଷାତ୍ କରିବା ସମୟରେ ସେ ଭାରତରେ ରାଜନୈତିକ ଆଶ୍ରୟ (Political Asylum) ଲୋଡ଼ିବା ବିଷୟ ଉପସ୍ଥାପିତ କରିବେ ବୋଲି ଦୃଢ଼ ଭାବରେ ନିଷ୍ପତ୍ତି ଗ୍ରହଣ କଲେ ଓ ଯଥାଶୀଘ୍ର ନେହରୁଙ୍କୁ ଜଣାଇଦେଇଥିଲେ ।

ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କ ସହିତ ତାଙ୍କର ଅନେକଥର ସାକ୍ଷାତ ଆଲୋଚନା ହୋଇଥିଲା । ନେହରୁ ଜଣେ ଦୀର୍ଘଦେହୀ, ସୌମ୍ୟଦର୍ଶୀ ମଣିଷ ଥିଲେ ଓ ତାଙ୍କର ଚେହେରାକୁ ଛୋଟ ଗାନ୍ଧୀ ଟୋପି ଖୁବ୍ ମାନୁଥିଲା । ଚୀନ୍‌ର ମାଓଙ୍କ ତୁଳନାରେ ତାଙ୍କ ଭିତରେ କମ୍ ଆତ୍ମପ୍ରତ୍ୟୟ ଥିବା ଭଳି ଜଣାପଡୁଥିଲା । ମାତ୍ର ସେ ମାଓଙ୍କ ଭଳି ଏକଛତ୍ରବାଦୀ ନଥିଲେ । ପ୍ରଥମ ସାକ୍ଷାତ ବେଳେ ତିବ୍‌ବତ କିଭଳି ଚୀନ୍‌ଦ୍ୱାରା ପ୍ରତାରିତ ହେଉଛି, ତିବ୍‌ବତୀୟମାନେ ଚୀନାମାନଙ୍କ ସହିତ କିପରି ଖାପ୍‌ଖୁଆଇ ଚଳିପାରୁ ନାହାନ୍ତି ସେ ବିଷୟରେ ତେନ୍‌ଜିନ୍ ପଣ୍ଡିତ ନେହରୁଙ୍କୁ ପୁଙ୍ଖାନୁପୁଙ୍ଖ ଭାବେ ଅବଗତ କରାଇ ଦେଇଥିଲେ । ନେହରୁ ଖୁବ୍ ଧୈର୍ଯ୍ୟର ସହିତ ତାଙ୍କର କଥାସବୁ ଶୁଣୁଥିଲେ ଓ ଆଗ୍ରହର ସହିତ ମୁଣ୍ଡ ଟୁଙ୍ଗାରୁଥିଲେ । ତେବେ ତାଙ୍କର ଦୀର୍ଘ ଆଳାପ ଯେ, ନେହରୁଙ୍କୁ ବ୍ୟସ୍ତ କରାଉଥିଲା ସେକଥା ତେନ୍‌ଜିନ୍ ବେଶ୍ ଭଲ ଭାବରେ ହୃଦୟଙ୍ଗମ କରିପାରୁଥିଲେ । ଶେଷରେ ନେହରୁ ତାଙ୍କ ଆଡ଼କୁ ଚାହିଁଲେ ଓ କହିଲେ– ଏ କ୍ଷେତ୍ରରେ ଭାରତ ଯେ ତିବ୍‌ବତକୁ କୌଣସି ପ୍ରକାର ସମର୍ଥନ କରିପାରିବ ନାହିଁ, ତାହା ସେ ହୃଦୟଙ୍ଗମ କରିବା ଉଚିତ ।

ଏହା କୌଣସି ଦୃଷ୍ଟିକୋଣରୁ ତିବ୍‌ବତ ପାଇଁ ଏକ ଶୁଭ ସମାଚାର ନଥିଲା । ତେବେ ଏହା ମଧ୍ୟ ତାଙ୍କ ପାଇଁ ଆଦୌ ଅପ୍ରତ୍ୟାଶିତ ଖବର ନଥିଲା । ତାଙ୍କୁ ଏମିତି ଏକ ଉତ୍ତର ମିଳିପାରେ ବୋଲି ସେ ପୂର୍ବରୁ ପ୍ରସ୍ତୁତ ହୋଇଥିଲେ । ସେଥିରେ ତେନ୍‌ଜିନ୍ ଆଦୌ ବିଚଳିତ ହେଲେନାହିଁ । ତା’ ପରିବର୍ତ୍ତେ ସେ ଭାରତରେ ନିର୍ବାସିତ ଜୀବନ ଅତିବାହିତ କରିବାକୁ ବିଚାର କରୁଛନ୍ତି ବୋଲି ନେହରୁଙ୍କୁ ଜଣାଇଲେ । ଏଥିରେ ବି ନେହରୁଙ୍କର ଆପତ୍ତି ଥିଲା । ସେ କହିଲେ ଯେ, ତେନ୍‌ଜିନ୍ ନିଜ ଦେଶକୁ ଫେରିଯାଇ ସତର ଦଫା ରାଜିନାମା ଭିତ୍ତିରେ ଚୀନାମାନଙ୍କ ସହିତ କାର୍ଯ୍ୟ କରିବା ଉଚିତ । ମାତ୍ର

ତେନ୍‌ଜିନ୍ ଦୃଢ଼ ସ୍ୱରରେ ନେହରୁଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ ଓ କହିଲେ ଯେ, ସେ ଚୀନାମାନଙ୍କ ସହିତ ସହଯୋଗ ଭିତ୍ତିରେ କାର୍ଯ୍ୟ କରିବା ପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରିଛନ୍ତି। ମାତ୍ର ପ୍ରତ୍ୟେକ ଥର ଚୀନା ସରକାର ତାଙ୍କର ବିଶ୍ୱାସ ଭଙ୍ଗ କରିଛନ୍ତି। ବର୍ତ୍ତମାନ ପୂର୍ବ-ତିବ୍‌ବତର ଅବସ୍ଥା ଅତି ଦୟନୀୟ ହୋଇପଡ଼ିଛି। ସେଥିଲାଗି ଏକ ପ୍ରବଳ, ହିଂସ୍ର ଓ ପ୍ରତିଶୋଧମୂଳକ ଗଣଆନ୍ଦୋଳନ ମୁଣ୍ଡ ଟେକିବାର ଆଶଙ୍କା ମଧ ରହିଛି। ଯଦି ତାହା ହୁଏ ତା'ହେଲେ ସମଗ୍ର ଦେଶ ଧ୍ୱଂସ ହୋଇଯିବ। ସବୁକଥା ଶୁଣିସାରି ନେହରୁ କହିଲେ ଯେ, ଆସନ୍ତାକାଲି ଚାଉ ଏନ୍-ଲାଇ ଦିଲ୍ଲୀ ଆସୁଛନ୍ତି। ଏହି ବାଟ ଦେଇ ସେ ୟୁରୋପ୍ ଯିବେ। ଚାଉ ଏନ୍-ଲାଇଙ୍କୁ ସେ ଏହି ବିଷୟରେ ବ୍ୟକ୍ତିଗତ ଭାବରେ କହିବେ ଏବଂ ତାଙ୍କ ସାକ୍ଷାତର ବ୍ୟବସ୍ଥା କରିଦେବେ।

ବାସ୍ତବରେ ତାହାହିଁ ହେଲା। ତା'ପର ଦିନ ସନ୍ଧ୍ୟାରେ ଚାଉଙ୍କ ସହିତ ତେନ୍‌ଜିନ୍‌ଙ୍କର ସାକ୍ଷାତ୍ ହେଲା। ସେ ତିବ୍‌ବତରେ ଘଟୁଥିବା ଘଟଣା ସବୁକୁ ନେଇ ତାଙ୍କର ଉଦ୍‌ବେଗ ବ୍ୟକ୍ତ କଲେ। ସେହିଭଳି ଭାରତୀୟ ପାର୍ଲିଆମେଣ୍ଟ କିଭଳି ଜନସାଧାରଣଙ୍କର ମନୋଭାବକୁ ବୁଝି କାର୍ଯ୍ୟ କରୁଛି ସେକଥା ମଧ ଜଣାଇଲେ। ଚାଉ କହିଲେ ଯେ, ୟା ମଧରେ ଚୀନ୍‌ରେ ଦ୍ୱିତୀୟ ଆସେମ୍ବ୍ଲି ଅଧିବେଶନ ଅନୁଷ୍ଠିତ ହୋଇଯାଇଛି ଏବଂ ସେଥିରେ ତିବ୍‌ବତର ସମସ୍ୟା ସବୁକୁ ନେଇ ବିପୁଳ ପରିବର୍ତ୍ତନ ଘଟିଛି। ତା'ପରେ ଚାଉ ତାଙ୍କୁ ପଚାରିଲେ ଯେ, ସେ ଭାରତରେ ରହିବା ପାଇଁ ବିଚାର କରୁଛନ୍ତି ବୋଲି ଏକ ଗୁଜବ ଶୁଣିବାକୁ ପାଇଛନ୍ତି। ମାତ୍ର ଏହା ଏକ ଭୁଲ୍ ନିଷ୍ପତ୍ତି ହେବ। ତାଙ୍କର ଦେଶ ତାଙ୍କୁ ଚାହେଁ ଓ ଦେଶବାସୀମାନେ ମଧ ତାଙ୍କଠାରୁ ଅନେକ କିଛି ଆଶା କରନ୍ତି। ତାଙ୍କର ଦୁଇଭାଇ ଟାକ୍‌ସେର ରିନ୍‌ପୋଚି ଓ ଗ୍ୟାଲୋ ଥୋଣ୍ଡୁପ୍ ମଧ ଦିଲ୍ଲୀରେ ଥିବା ବେଳେ ଚାଉଙ୍କୁ ସାକ୍ଷାତ କରିଥିଲେ। କେତେକ ଭାରତୀୟ ସମ୍ବାଦପତ୍ରରେ ଚାଉ ଏନ୍ ଲାଇଙ୍କୁ ତିରସ୍କାର କରାଯାଇଥିଲା। ସେ ଯା' ହେଉନା କାହିଁକି ତେନ୍‌ଜିନ୍ ପରିଶେଷରେ ଭାରତର ପବିତ୍ର ପୀଠଗୁଡ଼ିକୁ ତୀର୍ଥଯାତ୍ରା ପାଇଁ ବାହାରିଲେ। ସେ ପ୍ରଥମେ ସାଞ୍ଚି ଗଲେ ଓ ସାଞ୍ଚିରୁ ଅଜନ୍ତା ଏବଂ ତା'ପରେ ସାରନାଥ ଯାତ୍ରା କଲେ। ବିହାରର ପ୍ରଖ୍ୟାତ ବୌଦ୍ଧ ବିଶ୍ୱବିଦ୍ୟାଳୟ ନାଳନ୍ଦା ପରିଦର୍ଶନ କରି ତେନ୍‌ଜିନ୍ ଅଭିଭୂତ ହୋଇପଡ଼ିଲେ। ପରିଶେଷରେ ସେ ଯାଇ ବୋଧଗୟାରେ ପହଞ୍ଚିଲେ। ଭଗବାନ ବୁଦ୍ଧଦେବ ଏହିଠାରେ ହିଁ ଜ୍ଞାନାଲୋକ ପ୍ରାପ୍ତ ହୋଇଥିଲେ। ସେଠାରେ ପହଞ୍ଚି ସେ ଖୁବ୍ ଭାବବିହ୍ୱଳ ହୋଇପଡ଼ିଲେ। ମାତ୍ର ସେଠାରେ ସେ ଅଧିକ

ସମୟ ବିତାଇ ପାରିଲେ ନାହିଁ । କାରଣ ଚାଉ ଏନ୍-ଲାଇଙ୍କଠାରୁ ସେ ଏକ ତାରବାର୍ତ୍ତା ପାଇଲେ, ଯେଉଁଥିରେ ତାଙ୍କୁ ତୁରନ୍ତ ଦିଲ୍ଲୀ ଫେରିଆସିବା ଲାଗି ନିର୍ଦ୍ଦେଶ ଦିଆଯାଇଥିଲା । ସେହିଭଳି ତା'ପର ଦିନ ସାରନାଥରେ ଥିବାବେଳେ ଜେନେରାଲ୍ ଚିଆଙ୍ଗ ଚିନ୍-ୟୁ'ଙ୍କ ପାଖରୁ ତାଙ୍କୁ ଏକ ତାରବାର୍ତ୍ତା ମିଳିଲା । ସେ ସଙ୍ଗେସଙ୍ଗେ ଲାସା ଫେରି ଆସନ୍ତୁ ବୋଲି ସେହି ତାରବାର୍ତ୍ତାରେ ଜେନେରାଲ୍ ଚିଆଙ୍ଗ ଚିନ୍-ୟୁ ତାଙ୍କୁ ଅନୁରୋଧ କରିଥିଲେ । ସେ ଲେଖିଥିଲେ ଯେ, କିଛି ଅନ୍ତର୍ଘାତୀ ପ୍ରତିକ୍ରିୟାଶୀଳ ବ୍ୟକ୍ତି ଓ ସେମାନଙ୍କର କିଛି ସାମ୍ରାଜ୍ୟବାଦୀ ସହଯୋଗୀ ମିଶି ଏକ ବିଦ୍ରୋହର ଷଡ଼ଯନ୍ତ୍ର ଆରମ୍ଭ କରିଛନ୍ତି । ତେଣୁ ସେ ତୁରନ୍ତ ଲାସାରେ ପହଞ୍ଚିବା ଦରକାର ।

ସେ ଆଉ କାଳବିଳମ୍ବ ନକରି ଦିଲ୍ଲୀ ଫେରିଆସିଲେ । ସେଠାରୁ ସେ ଚୀନ୍ ରାଷ୍ଟ୍ରଦୂତଙ୍କ କାର୍‌ରେ ବସି ଦୂତାବାସରେ ଆସି ପହଞ୍ଚିଲେ ଓ ସେଠାରେ ଚାଉ ଏନ୍-ଲାଇଙ୍କୁ ସାକ୍ଷାତ୍ କଲେ । ଚାଉ ତାଙ୍କୁ କହିଲେ ଯେ, ତିବ୍‌ବତର ପରିସ୍ଥିତି କ୍ରମଶଃ ଜଟିଳ ହେଉଛି ଆଉ ବିଦ୍ରୋହୀଙ୍କୁ ଦୃଢ଼ ହସ୍ତରେ ଦମନ କରିବା ଲାଗି ଚୀନା କର୍ତ୍ତୃପକ୍ଷ ପ୍ରସ୍ତୁତ ହୋଇ ରହିଛନ୍ତି । ଏକଥା ଶୁଣିବା ପରେ ଚୀନାମାନଙ୍କର ଦମନ ଲୀଳା ତାଙ୍କ ଆଖିଆଗରେ ଜଳଜଳ ହୋଇ ଭାସିଉଠିଲା । ଅବଶ୍ୟ ଚାଉ ସଙ୍ଗେସଙ୍ଗେ ପ୍ରସଙ୍ଗ ବଦଳେଇ ଦେଲେ ଓ ତାଙ୍କୁ ପଚାରିଲେ ଯେ, ଚୀନ୍‌ର ଆଧ୍ୟାତ୍ମିକ ଗୁରୁ ଟାଙ୍ଗ ସେନ୍ (Tang Sen)ଙ୍କର ଏକ ସ୍ମାରକୀକୁ ଉପହାର ସ୍ୱରୂପ ନାଳନ୍ଦାର ଗୋଟିଏ ସଂଗଠନକୁ ପ୍ରଦାନ କରାଯିବାର କାର୍ଯ୍ୟକ୍ରମ ରହିଛି । ସେ ଚୀନ୍ ସାଧାରଣତନ୍ତ୍ରର ପ୍ରତିନିଧି ହିସାବରେ ସେହି ଉପହାର ପ୍ରଦାନ କରିବା ଲାଗି ସେଠାକୁ ଯିବା ପାଇଁ ପ୍ରସ୍ତୁତ ଅଛନ୍ତି କି ? ଏହି ଉତ୍ସବରେ ପଣ୍ଡିତ ନେହରୁ ଯୋଗ ଦେଉଥିବା ଖବର ତେନ୍‌ଜିନ୍ ଆଗରୁ ଜାଣିଥିଲେ । ତେଣୁ ସେ ତୁରନ୍ତ ଚାଉ ଏନ୍-ଲାଇଙ୍କ ପ୍ରସ୍ତାବକୁ ଗ୍ରହଣ କରିନେଲେ । ତେବେ ନାଳନ୍ଦାଠାରେ ସେ ଦେଖିଲେ ଯେ, ପଣ୍ଡିତ ନେହରୁଙ୍କ ନିକଟରେ 'ସତର ଦଫା ରାଜିନାମା'ର ଗୋଟିଏ ପ୍ରତିଲିପି ରହିଥିଲା । ସେ ତିବ୍‌ବତ ଫେରିଯାଇ ରାଜିନାମା ଅନୁଯାୟୀ ସହଯୋଗ ଭିତ୍ତିରେ କାର୍ଯ୍ୟ କରିବା ନିମନ୍ତେ ନେହରୁ ତାଙ୍କୁ ପରାମର୍ଶ ଦେଲେ । ଏଥି ସହିତ ସ୍ପଷ୍ଟ କରିଦେଲେ ଯେ, ଭାରତ ତିବ୍‌ବତକୁ କୌଣସି ପ୍ରକାର ସାହାଯ୍ୟ କିମ୍ବା ସହଯୋଗ କରିପାରିବ ନାହିଁ । ସେ ବରଂ ଚାଉ ଏନ୍-ଲାଇଙ୍କ କହିବା ଅନୁଯାୟୀ କାର୍ଯ୍ୟ କରିବା ଆବଶ୍ୟକ । ମାତ୍ର ତେନ୍‌ଜିନ୍ ନେହରୁଙ୍କ କଥାରେ ଆଦୌ ସହମତ ହେଲେ ନାହିଁ । ପଣ୍ଡିତ ନେହରୁ ତାଙ୍କର ମତ ପରିବର୍ତ୍ତନ କରି କହିଲେ ଯେ,

ଭାରତ ହେଉଛି ଏକ ସ୍ୱାଧୀନ ରାଷ୍ଟ୍ର। ତେନ୍‌ଜିନ୍ ଏଠାରେ କୌଣସି ଆଇନ୍ ଭଙ୍ଗ କରିବେ ନାହିଁ ବୋଲି ସେ ଆଶା ପୋଷଣ କରନ୍ତି। ଏହାପରେ ସେ ତାଙ୍କର ଭାରତ ଭ୍ରମଣର ସମସ୍ତ ବ୍ୟବସ୍ଥା କରିଦେଲେ।

୧୯୫୭ ମସିହା ଫେବୃଆରୀ ମାସରେ ସେ ତାଙ୍କର ସହଯାତ୍ରୀମାନଙ୍କ ସହିତ ରେଳଯୋଗେ କଲିକତା ଯାତ୍ରା କଲେ। ତାଙ୍କ ସହିତ ତାଙ୍କର ମା' ମଧ୍ୟ ଥିଲେ। ସେମାନେ କଲିକତାରେ କିଛିଦିନ ଅବସ୍ଥାନ କଲେ। କଲିକତାରୁ ସେମାନେ କାଲିମପଙ୍ଗ ଯାତ୍ରା କଲେ। କାଲିମପଙ୍ଗର ଏକ ଭୁଟାନୀ ପରିବାରର ବାସଭବନରେ ଏକଦା ତାଙ୍କର ପୂର୍ବାଧିକାରୀ ନର୍ବାସନ ଦଣ୍ଡ ବେଳେ ଅବସ୍ଥାନ କରିଥିଲେ। ସେ ସେହି ପରିବାରକୁ ଭେଟିଲେ। ସେମାନେ ତେନ୍‌ଜିନ୍‌ଙ୍କୁ ତାଙ୍କର ପୂର୍ବାଧିକାରୀ ବ୍ୟବହାର କରିଥିବା ପ୍ରକୋଷ୍ଠରେ ହିଁ ରଖାଇଲେ। ଏହା ତେନ୍‌ଜିନ୍‌ଙ୍କ ପାଇଁ ଏକ ଅତି ବିସ୍ମୟକର ଅନୁଭୂତି ଥିଲା। ସେ ସେଠାରେ ରହୁଥିବା ବେଳେ ତାଙ୍କର ପୂର୍ବତନ ପ୍ରଧାନମନ୍ତ୍ରୀ ଲୁଖାଂଗ୍ୱା ଲାସାରୁ ଆସି ତାଙ୍କୁ ସାକ୍ଷାତ୍ କଲେ। ଲୁଖାଂଗ୍ୱା ତାଙ୍କୁ କହିଲେ ଯେ, ସେ ବର୍ତ୍ତମାନ ଲାସା ନ ଫେରି ସେଇଠାରେ ହିଁ ରହିଯିବା ଆବଶ୍ୟକ। ତାଙ୍କର ଦୁଇଭାଇ ମଧ୍ୟ ଲୁଖାଂଗ୍ୱାଙ୍କ ପରାମର୍ଶକୁ ସମର୍ଥନ ଜଣାଇଲେ। ସେମାନେ ଭାରତର ଅନେକ ସହାନୁଭୂତିଶୀଳ ଗାନ୍ଧିବାଦୀ ରାଜନେତାଙ୍କ ସହିତ ମିଳାମିଶା କରୁଥିଲେ, ଯେଉଁମାନେ ତାଙ୍କର ସ୍ୱାଧୀନତାକୁ ଅକୁଣ୍ଠ ଚିତ୍ତରେ ସମର୍ଥନ ଜଣାଉଥିଲେ। ତେଣୁ ସେମାନେ ଆଶା କରୁଥିଲେ ଯେ, ଭାରତରେ ଶରଣାର୍ଥୀ ଭାବରେ ରହିବା ପାଇଁ ହୁଏତ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ତାଙ୍କୁ ଦିନେ ନା ଦିନେ ଅନୁମତି ପ୍ରଦାନ କରିବେ। ହେଲେ ସେପରି ହେବ ବୋଲି ତେନ୍‌ଜିନ୍‌ଙ୍କର କୌଣସି ହୃଦବୋଧ ହେଉ ନଥିଲା। କାରଣ ନେହରୁଙ୍କ ମନୋଭାବ ତାଙ୍କୁ ଅଜଣା ନଥିଲା। ସେଥିଲାଗି ସେ କ'ଣ କରିବେ କ'ଣ ନକରିବେ ତାହା ସ୍ଥିର କରି ନପାରି ରାଷ୍ଟ୍ରୀୟ ଆଧ୍ୟାତ୍ମିକ ପରାମର୍ଶଦାତାଙ୍କର ପରାମର୍ଶ ଲୋଡ଼ିଲେ। ମାତ୍ର ସେ ତିବ୍‌ବତ ପ୍ରତ୍ୟାବର୍ତ୍ତନ କରନ୍ତୁ ବୋଲି ରାଷ୍ଟ୍ରୀୟ ପରାମର୍ଶଦାତାମାନେ ତାଙ୍କୁ ପରାମର୍ଶ ଦେଲେ। କିନ୍ତୁ ଏହାକୁ ଲୁଖାଂଗ୍ୱା ଦୃଢ଼ଭାବରେ ଖଣ୍ଡନ କରିଦେଇ କହିଲେ ଯେ, ମଣିଷମାନେ ନିରାଶ ହେବାବେଳେ ଭଗବାନଙ୍କର ଶରଣାପନ୍ନ ହୁଅନ୍ତି ଏବଂ ଭଗବାନ ନିରାଶ ହେବାବେଳେ ସେହି ମଣିଷମାନେ ହିଁ ମିଥ୍ୟା କହିଥାନ୍ତି (When men become desperate they consult the Gods. And when the Gods become desperate they tell lies!)।

ତାଙ୍କୁ ତିବ୍‌ବତ ପ୍ରତ୍ୟାବର୍ତ୍ତନ କରାଇ ନଦେବା ପାଇଁ ଲୁଖାଂଗ୍ୱାଙ୍କ ପରି ତାଙ୍କର ଦୁଇ ଭାଇ ମଧ୍ୟ ଅଡ଼ି ବସିଲେ। ଲୁଖାଂଗ୍ୱାଙ୍କ ଭଳି ସେମାନେ ମଧ୍ୟ ବେଶ୍ ପ୍ରଭାବଶାଳୀ ଓ ହୃଦୟଗ୍ରାହୀ ମଣିଷ ଥିଲେ। ସେମାନଙ୍କ ଦୃଷ୍ଟିରେ ସେ ଭାରତରେ ରହିଯିବା ହିଁ ସର୍ବୋତ୍କୃଷ୍ଟ ପନ୍ଥା ଥିଲା। ଏହାଦ୍ୱାରା ବୈଦେଶିକ ସମର୍ଥନ ଲୋଡ଼ିବା ସମ୍ଭବ ହେବ ବୋଲି ସେମାନେ ବିଚାର କରୁଥିଲେ।

ଏସବୁ ସତ୍ତ୍ୱେ ତେନ୍‌ଜିନ୍ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇ ସେ ତିବ୍‌ବତ ଫେରିବେ ବୋଲି ସମସ୍ତଙ୍କୁ ଜଣେଇ ଦେଲେ। ୧୯୫୭ ମସିହା ମାର୍ଚ୍ଚ ମାସ ଶେଷବେଳକୁ ସେ ଲାସା ପ୍ରତ୍ୟାବର୍ତ୍ତନ କଲେ। ସୀମାନ୍ତରେ ପହଞ୍ଚି ନିଜର ଭାରତୀୟ ବନ୍ଧୁମାନଙ୍କୁ ବିଦାୟ ଦେବାବେଳେ ତାଙ୍କର ଅନ୍ତର ଆତ୍ମା କାନ୍ଦି ଉଠିଥିଲା। ସମସ୍ତେ ମଧ୍ୟ ଶୋକ ବିହ୍ୱଳ ହୋଇପଡ଼ିଥିଲେ।



# (୧୭) ଚୀନା ଦପ୍ତର ଯିବା ନୋହିଲା

ତେନ୍‌ଜିନ୍ ଭାରତ ଗସ୍ତସାରି ତିବ୍‌ବତ ସୀମାରେ ପହଞ୍ଚିଲେ । ସେଠାରୁ ସେ ଡ୍ରୋମୋ, ଗ୍ୟାନ୍‌ସେ ଓ ସିଗାସେ ବାଟଦେଇ ଲାସାକୁ ଫେରିଲେ । ଫେରିବା ବାଟରେ ପ୍ରତ୍ୟେକ ସ୍ଥାନରେ ଅଟକି ବଡ଼ବଡ଼ ଜନସମାରୋହକୁ ଉଦ୍‌ବୋଧନ ଦେଇଥିଲେ । ଏହିସବୁ ସମାବେଶକୁ ସେ ଉଭୟ ତିବ୍‌ବତୀୟ ଏବଂ ଚୀନା ଅଧିକାରୀ ତଥା କର୍ମକର୍ତ୍ତାଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ଉଦ୍‌ବୋଧନ ବେଳେ ସେ ଆଧ୍ୟାତ୍ମିକତା, ନୀତିବାଣୀ ସହିତ ସାମ୍ପ୍ରତିକ ଘଟନାବଳୀକୁ ଉପସ୍ଥାପନ କରି ଲୋକମାନଙ୍କ ମନରେ ସଚେତନତା ସୃଷ୍ଟି କରିବାର ପ୍ରୟାସ କରିଥିଲେ । ସତର ଦଫା ରାଜିନାମାର ନୀତିଗୁଡ଼ିକୁ କଠୋର ଭାବରେ ପାଳନ କରିବାପାଇଁ ମଧ୍ୟ ସେ ବିନମ୍ର ଭାବରେ ନିବେଦନ କରିଥିଲେ । ତାଙ୍କର କଥାସବୁ ଚୀନା ଲୋକମାନଙ୍କୁ ସନ୍ତୁଷ୍ଟ କରିବାରେ ସହାୟକ ହୋଇଥିଲା । ତାଙ୍କର ଯାତ୍ରାକାଳରେ ପୂର୍ବାଞ୍ଚଳରେ ଚାଲିଥିବା ଯୁଦ୍ଧ ସମ୍ବାଦ ପାଇ ସେ କେତେକାଂଶରେ ବ୍ୟଥିତ ହୋଇପଡ଼ିଥିଲେ । ତାଙ୍କ ଭିତରେ ଥିବା ଅହେତୁକ ଆଶାବାଦ ସେଥିରେ ବ୍ୟାଘାତପ୍ରାପ୍ତ ହୋଇଥିଲା । ଦିନେ ରାଜନୈତିକ କମିଶନର ଜେନେରାଲ ଟାନ୍ କୁଆନ୍-ସେନ୍ ତାଙ୍କୁ ସାକ୍ଷାତ୍ କଲେ ଓ ସେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅସ୍ତ୍ରତ୍ୟାଗ କରିବା ପାଇଁ ନିର୍ଦ୍ଦେଶ ଦିଅନ୍ତୁ ବୋଲି ତାଙ୍କୁ ଅନୁରୋଧ କଲେ । ତେନ୍‌ଜିନ୍ ନିଜେ ମଧ୍ୟ ସେକଥା ଚାହୁଁଥିଲେ । ତେଣୁ ସେ ନିଜର ସନ୍ଦେଶ ଦେଇ ଜଣେ ଲାମାଙ୍କୁ ସ୍ୱାଧୀନତା ସଂଗ୍ରାମୀଙ୍କ ନିକଟକୁ ପଠାଇଲେ । ମାତ୍ର ସ୍ୱାଧୀନତା ସଂଗ୍ରାମୀମାନେ ତାଙ୍କର ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଲେ । ୧୯୫୭ ମସିହା ଏପ୍ରିଲ୍ ମାସ ଏକ ତାରିଖ ଦିନ ସେ ଲାସାରେ ପହଞ୍ଚିଲେ । ଲାସାରେ ପହଞ୍ଚି ଜାଣିଲେ ଯେ, ସମଗ୍ର ତିବ୍‌ବତର ପରିସ୍ଥିତି ଖୁବ୍ ବିଗିଡ଼ି ଯାଇଛି । ଏହା କେବଳ ଚୀନାମାନଙ୍କର ନିୟନ୍ତ୍ରଣରୁ ନୁହେଁ; ଅଧିକନ୍ତୁ ତାଙ୍କ ନିଜର ନିୟନ୍ତ୍ରଣରୁ ମଧ୍ୟ ଅତି ଦ୍ରୁତଗତିରେ ଖସି ଚାଲିଯାଉଛି ।

ଗ୍ରୀଷ୍ମକାଳର ମଧ୍ୟଭାଗରେ ସମଗ୍ର ଖାମ୍ ଓ ଆମ୍‌ଡ଼ୋରେ ଲଗାତାର ଯୁଦ୍ଧ ଚାଲିଲା । ତିବ୍‌ବତର ସ୍ୱାଧୀନତା ସଂଗ୍ରାମୀମାନେ ଗାମ୍ପୋଟାସୀଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲେ ଓ ସେମାନଙ୍କ ସଂଖ୍ୟା ଦିନକୁଦିନ ବୃଦ୍ଧି ପାଉଥିଲା । ଚୀନାମାନେ ମଧ୍ୟ

ଭୟଙ୍କର ହୋଇଉଠିଥିଲେ। ସେମାନେ ଆକାଶମାର୍ଗରୁ ବୋମା ବର୍ଷଣ କରି ଗ୍ରାମ ଜନପଦ ସବୁକୁ ଶ୍ମଶାନରେ ପରିଣତ କରିଦେଇଥିଲେ। ଖାମ୍ ଓ ଆମ୍‌ଡ଼ୋର ହଜାରହଜାର ଲୋକ ଭୟରେ ଲାସାକୁ ଚାଲିଆସି ସମତଳ ଭୂମିରେ ଆଶ୍ରୟ ନେଇଥିଲେ। ଚୀନାମାନଙ୍କର ଦମନ ନୀତି ଅତି ପୈଶାଚିକ ଥିଲା। ସେମାନେ ଲୋକମାନଙ୍କୁ ମୁଣ୍ଡକାଟ କରି, ପୋଡ଼ି, ପିଟିପିଟି ଓ ଜିଅନ୍ତା ମାଟିତଳେ ପୋତିଦେଇ ହତ୍ୟା କରୁଥିଲେ। ଦଉଡୁଥିବା ଘୋଡ଼ା ଗୋଡ଼ରେ ଲୋକମାନଙ୍କୁ ବାନ୍ଧି ଦେଇ ଘୋଷାରି ଘୋଷାରି ମାରୁଥିଲେ। 'ଦଲାଇ ଲାମା' ଦୀର୍ଘଜୀବୀ ହୁଅନ୍ତୁ ବୋଲି କହୁଥିବା ଲୋକମାନଙ୍କର ଜିଭକୁ ସେମାନେ ମାଂସକଟା ଛୁରୀରେ କାଟି ଦେଉଥିଲେ। ଆଗକୁ ପରିସ୍ଥିତି ଆହୁରି ଅଧିକ ଭୟାନକ ହେବ ବୋଲି ତାଙ୍କର ଆଶଙ୍କା ହୋଇଗଲା। ଏହାସତ୍ତ୍ୱେ ତେନ୍‌ଜିନ୍ ତାଙ୍କ ଶେଷ ସନ୍ନ୍ୟାସୀୟ ପରୀକ୍ଷା ଶେଷ କରିବେ ବୋଲି ନିଷ୍ପତ୍ତି ନେଲେ ଓ ଘୋଷଣା କରିଦେଲେ। ଯଥାସମ୍ଭବ ଶୀଘ୍ର ସ୍ନାତକ ଉପାଧି ହାସଲ କରିନେବା ଉଚିତ ହେବ ବୋଲି ସେ ମନେ କରୁଥିଲେ। ଏତଦ୍‌ବ୍ୟତୀତ, ପରବର୍ତ୍ତୀ ବର୍ଷ ସେ ଲାସାକୁ ପଣ୍ଡିତ ନେହରୁଙ୍କ ଆଗମନକୁ ଅପେକ୍ଷା କରି ରହୁଥିଲେ।

ଏହି ସମୟରେ ସେ ନର୍ବୁଲିଙ୍ଗକାରେ ରହୁଥିଲେ। ପୂର୍ବପରି ନିତ୍ୟକର୍ମ ଶେଷ କରୁଥିଲେ; ଜପ, ତପ, ଧ୍ୟାନ, ପ୍ରାର୍ଥନା ଓ ଧର୍ମଶାସ୍ତ୍ର ଅଧ୍ୟୟନ କରୁଥିଲେ। ବିଶେଷଜ୍ଞ ଶିକ୍ଷକମାନେ ଆସି ତାଙ୍କୁ ଶିକ୍ଷାଦାନ କରୁଥିଲେ। ୧୯୫୮ ମସିହାର ବସନ୍ତ କାଳ ଆସି ଉପନୀତ ହେଲା। ସେ ନର୍ବୁଲିଙ୍ଗକାର ଏକ ନୂଆ ଉଆସରେ ରହିଲେ। ପ୍ରତ୍ୟେକ ଆନୁକ୍ରମିକ ଦଲାଇ ଲାମାଙ୍କ ପାଇଁ ଏହା ଏକ ପରମ୍ପରା। ଜୁଏଲ୍ ପାର୍କ ମଧ୍ୟରେ ତାଙ୍କୁ ନିଜ ବାସଭବନ ବାଛି ନେବାକୁ ପଡ଼ିଲା। ସେତେବେଳେ ସମଗ୍ର ଖାମ୍ ଓ ଆମ୍‌ଡୋ ଏବଂ କେନ୍ଦ୍ର ତିବ୍‌ବତରେ ଯୁଦ୍ଧ କ୍ରମେ ତୀବ୍ରତର ହେଉଥିଲା। ସ୍ୱାଭାବିକ ଭାବରେ ସେ କେବେ କୌଣସି ଯୁଦ୍ଧ ଦେଖି ନଥିଲେ। ତେବେ ଏକଦା ଜଣେ ବୃଦ୍ଧ ଲାମାଙ୍କଠାରୁ ଏକ ଯୁଦ୍ଧର କାହାଣୀ ଶୁଣି ସେ ଭୟଭୀତ ହୋଇପଡ଼ିଥିଲେ। ୧୯୫୮ ମସିହାର ଦ୍ୱିତୀୟାର୍ଦ୍ଧରେ ସେହିଭଳି ଏକ ସଂକଟମୟ ମୁହୂର୍ତ୍ତ ଆସି ଉପନୀତ ହୋଇଗଲା। ସେତିକିବେଳେ ସ୍ୱାଧୀନତା ସଂଗ୍ରାମୀ ଦଳର ସଦସ୍ୟମାନେ ସେଥାଙ୍ଗଠାରେ ଥିବା ଏକ ବିରାଟ ଚୀନ୍ ସୈନ୍ୟଙ୍କ ଦୁର୍ଗରକ୍ଷୀ ଦଳକୁ ଅବରୋଧ କରି ନେଇଥିଲେ। ସେ ଏତିକିବେଳେ ଜେନେରାଲ ଟାନ୍ କୁଆନ୍-ସେନ୍‌ଙ୍କର ଅସଲ ଚେହେରା ଦେଖିପାରିଲେ। ସେ ପ୍ରାୟ ପ୍ରତି ସପ୍ତାହରେ ତାଙ୍କ ନିକଟକୁ ଆସି ତାଙ୍କୁ ପ୍ରବର୍ତ୍ତାଉଥିଲେ।

ଏମିତି କିଛିଦିନ ବିତିବା ପରେ ସେ ସେହି ବ୍ୟକ୍ତି ଜଣଙ୍କୁ ଘୃଣା କରିବାକୁ ଲାଗିଲେ ଓ ତାଙ୍କର ପ୍ରକୋଷ୍ଠକୁ ଯିବା ଲାଗି ଭୟ କଲେ ।

ଜେନେରାଲ ଟାନ୍ କୁଆନ୍-ସେନ୍ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ତିବ୍ବତୀୟ ସେନାବାହିନୀକୁ ସଂଗଠିତ କରିବା ପାଇଁ ତାଙ୍କୁ ପ୍ରବର୍ତ୍ତାଉଥିଲେ । ମାତ୍ର ସେ ତାହା କରିପାରିବେ ନାହିଁ ବୋଲି ରୋକ୍‌ଠୋକ୍ କହିଦେଲେ । କାରଣ ସେପରି କଲେ ସୈନ୍ୟମାନେ ମଧ୍ୟ ବିଦ୍ରୋହୀଙ୍କ ପକ୍ଷକୁ ଚାଲିଯିବେ ବୋଲି ତାଙ୍କର ଆଶଙ୍କା ହେଉଥିଲା । ତେନ୍‌ଜିନ୍‌ଙ୍କଠାରୁ ଏକଥା ଶୁଣିବା ପରେ ଜେନେରାଲ୍ ଟାନ୍ କୁଆନ୍-ସେନ୍ ଖୁବ୍ ରାଗିଗଲେ ଓ ଏହାର ପରିଣତି ଖୁବ୍ ଭୟଙ୍କର ହେବ ବୋଲି ତାଙ୍କୁ ଧମକ୍ ଦେଇଗଲେ । ପରିଶେଷରେ, ଦେଶ ବାହାରେ ଥିବା ଟାକ୍‌ସେର ରିନ୍‌ପୋଚି, ଗ୍ୟାଲୋ ଥୋଣ୍ଡୁପ୍ ତଥା ତାଙ୍କର ପୂର୍ବତନ କର୍ମଚାରୀମାନଙ୍କୁ ଦୋଷୀ ସାବ୍ୟସ୍ତ କରିବା ସହିତ ସେମାନଙ୍କର ତିବ୍ବତୀୟ ନାଗରିକତ୍ୱ ରଦ୍ଦ କରିଦେବା ପାଇଁ ତାଙ୍କୁ ନିର୍ଦ୍ଦେଶ ଦେଲେ । ତେନ୍‌ଜିନ୍ ଏଥର ତାଙ୍କର ନିର୍ଦ୍ଦେଶକୁ ପାଳନ କରି ସେମାନଙ୍କର ନାଗରିକତ୍ୱ ରଦ୍ଦ କରିଦେଲେ । କାରଣ ତେନ୍‌ଜିନ୍ ଭାବିଲେ ଯେ, ସେମାନେ ଦେଶ ବାହାରେ ଥାଇ ନିରାପଦରେ ରୁହନ୍ତୁ । ଦ୍ୱିତୀୟତଃ, ସେ ସାମୟିକ ଭାବରେ ଚୀନ୍ କର୍ତ୍ତୃପକ୍ଷଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାଙ୍କର ନିର୍ଦ୍ଦେଶ ମାନିବା ଆବଶ୍ୟକ ବୋଲି ଭାବିଲେ । ଇତିମଧ୍ୟରେ ତାଙ୍କୁ ଗୋଟିଏ ଦୁଃସମ୍ବାଦ ମିଳିଲା । ସେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହରୁଙ୍କ ତିବ୍ବତ ଆଗମନକୁ ଅପେକ୍ଷା କରି ରହିଥିବାବେଳେ ଚୀନା କର୍ତ୍ତୃପକ୍ଷ ତାହାକୁ ବାତିଲ୍ କରିଦେଲେ । ତିବ୍ବତରେ ଭାରତର ପ୍ରଧାନମନ୍ତ୍ରୀଙ୍କ ନିରାପତ୍ତା ନେଇ କୌଣସି ସୁନିଶ୍ଚିତତା ନଥିବାରୁ ପଣ୍ଡିତ ନେହରୁଙ୍କ ଗସ୍ତକୁ ବାତିଲ୍ କରିଦିଆଗଲା ବୋଲି ଜେନେରାଲ୍ ଟାନ୍ କୁଆନ୍-ସେନ୍ ଘୋଷଣା କରିଦେଲେ । ଏହା ତାଙ୍କୁ ଗଭୀର ଭାବରେ ଦୁଃଖିତ କରିଥିଲା ।

୧୯୫୮ ମସିହା ଗ୍ରୀଷ୍ମ କାଳ ଶେଷଭାଗରେ ତେନ୍‌ଜିନ୍ ତାଙ୍କର ଶେଷ ସନ୍ନ୍ୟାସ ପରୀକ୍ଷାର ପ୍ରଥମ ଭାଗ ପାଇଁ ଡ୍ରେପଙ୍ଗ ଓ ପରେ ସେରା ସନ୍ନ୍ୟାସାଶ୍ରମ ଗଲେ । ଡ୍ରେପଙ୍ଗ ତ୍ୟାଗ କରିବା ପୂର୍ବରୁ ପରମ୍ପରା ଅନୁଯାୟୀ ସନ୍ନ୍ୟାସାଶ୍ରମ ପଛରେ ଥିବା ସର୍ବୋଚ୍ଚ ପର୍ବତଶିଖର ଦେଶକୁ ସେ ଯାଇ ସେଠାରୁ ମାଇଲ୍ ମାଇଲ୍ ଦୂରରେ ଅବସ୍ଥିତ ମନୋରମ ଦୃଶ୍ୟ ଅବଲୋକନ କରିଥିଲେ । ପରୀକ୍ଷା ଶେଷକରି ସେ ଲାସା ପ୍ରତ୍ୟାବର୍ତ୍ତନ କଲେ । ଲାସାରେ ପହଞ୍ଚି ସେ ଜାଣିବାକୁ ପାଇଲେ ଯେ, ସମସ୍ତ ପରୀକ୍ଷାରେ ସେ କୃତିତ୍ୱର

ସହିତ ସଫଳ ହୋଇଛନ୍ତି। ତେବେ ସେ ଲାସାରେ ପହଞ୍ଚିବା ବେଳକୁ ଲାସାର ପରିସ୍ଥିତି ଖୁବ୍ ଦୟନୀୟ ହୋଇପଡ଼ିଥିଲା। ଚୀନାମାନଙ୍କର ନୃଶଂସତା ବଢ଼ି ଯାଇଥିଲା। ହଜାର ହଜାର ଶରଣାର୍ଥୀ ଚୀନାମାନଙ୍କଠାରୁ ନିଜକୁ ରକ୍ଷା କରିବା ପାଇଁ ଲାସାକୁ ଚାଲିଆସି ମୁକ୍ତ ଆକାଶ ତଳେ ପଡ଼ି ରହିଥିଲେ। ଏସବୁ ଭିତରେ ଗୋଟିଏ କଥା ତାଙ୍କୁ ଆଶ୍ୱସ୍ତ କରୁଥିଲା ଯେ, ବାସ୍ତବରେ ସେତେବେଳ ପର୍ଯ୍ୟନ୍ତ କୌଣସି ପ୍ରତ୍ୟକ୍ଷ ଯୁଦ୍ଧ ଲାଗି ନଥିଲା। ଏହି ଅବସରରେ ସେ ତାଙ୍କର ବିତର୍କକୁ ଜାରି ରଖିବା ପାଇଁ ଗାଣ୍ଡେନ୍ ଯାତ୍ରା କରିବା କଥା ଚିନ୍ତା କଲେ। ମାତ୍ର ତାଙ୍କର କେତେଜଣ ପରାମର୍ଶଦାତା ତାଙ୍କୁ ଦକ୍ଷିଣକୁ ଯାତ୍ରା କରିବା ପାଇଁ ପରାମର୍ଶ ଦେଲେ। ପ୍ରଥମତଃ, ଦକ୍ଷିଣ ଭାଗ ବୌଦ୍ଧଧର୍ମର ରକ୍ଷକମାନଙ୍କ ହାତରେ ସୁରକ୍ଷିତ ଥିଲା। ଦ୍ୱିତୀୟରେ, ସେ ଦକ୍ଷିଣକୁ ଗଲେ ସତର ଦଫା ରାଜିନାମାକୁ ପ୍ରତ୍ୟାଖ୍ୟାନ କରିବେ ବୋଲି ତାଙ୍କର ପରାମର୍ଶଦାତାମାନେ ବିଚାର କରୁଥିଲେ। ମାତ୍ର ତେନ୍‌ଜିନ୍ ଜାଣିଥିଲେ ଯେ, ଏଥିରେ କୌଣସି ସୁଫଳ ମିଳିବ ନାହିଁ। ତା' ପରିବର୍ତ୍ତେ ଚୀନାମାନେ ପ୍ରତ୍ୟକ୍ଷ ଓ ପୂର୍ଣ୍ଣାଙ୍ଗ ଆକ୍ରମଣ କରିବା ସକାଶେ ସୁଯୋଗ ପାଇଯିବେ। ଏକଥା ଚିନ୍ତାକରି ସେ ଗାଣ୍ଡେନ୍ ଯିବା ପ୍ରସ୍ତାବକୁ ମନରୁ ପାସୋରି ଦେଲେ ଓ ନୂଆବର୍ଷ ଉତ୍ସବ ପାଳନ ଅବସରରେ ଦେବାକୁ ଥିବା ଶେଷ ପରୀକ୍ଷା ଲାଗି ପଠନ କାର୍ଯ୍ୟ ଆରମ୍ଭ କରିଦେଲେ। ମାତ୍ର ସେ ପଠନରେ ମନ ଲଗାଇ ପାରିଲେ ନାହିଁ। କାରଣ ପ୍ରତ୍ୟେକ ଦିନ ଚୀନାମାନଙ୍କର ଦୌରାତ୍ମ୍ୟ ସମ୍ପର୍କିତ ଖବର ତାଙ୍କ ନିକଟରେ ଆସି ପହଞ୍ଚୁ ଥିଲା ଓ ତାହା ତାଙ୍କର ଏକାଗ୍ରତାକୁ ବିଚଳିତ କରି ପକାଉଥିଲା। ସେ ଛ' ନିୟୁତ ତିବ୍ବତୀୟଙ୍କ ପ୍ରତି ଥିବା ତାଙ୍କର ଉତ୍ତରଦାୟିତା କଥା ଚିନ୍ତାକରି ଅସ୍ଥିର ହୋଇ ପଡୁଥିଲେ।

ଶେଷରେ ନୂତନ ବର୍ଷ ଆସି ପହଞ୍ଚିଗଲା ଓ ପରମ୍ପରା ଅନୁସାରେ ନୂତନ ବର୍ଷ ଉତ୍ସବ ଉପଲକ୍ଷେ ସେ ନର୍ବୁଲିଙ୍ଗକା ଛାଡ଼ି ଜୋଖାଙ୍ଗକୁ ଗଲେ। ତାଙ୍କର ଶେଷ ପରୀକ୍ଷାର ବେଳ ମଧ୍ୟ ଆସି ପହଞ୍ଚିଗଲା। ଜୋଖାଙ୍ଗର ପରିସ୍ଥିତି ଆପାତତଃ ଭଲ ଥିଲା। ସନ୍ନ୍ୟାସୀମାନେ ହାତରେ ପ୍ରାର୍ଥନା ଚକ୍ର ଧରି ତିବ୍ବତର ଜାତୀୟ ମନ୍ତ୍ର 'ଓଁ ମଣିପଦ୍ମେ ହୁମ୍' ଆବୃତ୍ତି କରୁଥିଲେ। ଲୋକମାନେ ମନ୍ଦିରରେ ଆସି ଗହଳି ଲଗାଉଥିଲେ। ଖୁବ୍ ଜାକଜମକର ସହିତ ନୂତନ ବର୍ଷରେ ଉତ୍ସବାନୁଷ୍ଠାନ ଶେଷ ହେଲା। ଏହାପରେ ଜେନେରାଲ ଚିଆଙ୍ଗ ଚିନ୍-ୟୁ'ଙ୍କଠାରୁ ନିମନ୍ତ୍ରଣ ଆସି ପହଞ୍ଚିଲା। ନୃତ୍ୟଗୋଷ୍ଠୀର ନାଟ୍ୟ କାର୍ଯ୍ୟକ୍ରମ ସେ କେଉଁଦିନ ଦେଖିବାକୁ ଯାଇପାରିବେ ବୋଲି ଜେନେରାଲ୍

ଚିଆଙ୍ଗ ଚିନ୍-ୟୁ ଜାଣିବାକୁ ଚାହିଁଥିଲେ। ଉତ୍ସବ ସମ୍ପୂର୍ଣ୍ଣ ଭାବରେ ଶେଷ ହୋଇଗଲେ ସେ ଯିବେ ବୋଲି ତେନ୍‌ଜିନ୍ ଜଣାଇଦେଲେ। ଏହାର ପରଦିନ ସକାଳେ ସେ ସହସ୍ରାଧିକ ସମବେତ ଜନତାଙ୍କ ସମ୍ମୁଖରେ ହେବାକୁ ଥିବା ବିତର୍କ ପାଇଁ ନିଜକୁ ପ୍ରସ୍ତୁତ କଲେ ଓ ବିତର୍କରେ ଉପସ୍ଥିତ ମଧ୍ୟ ହେଲେ। ମାଧ୍ୟମିକା, ପ୍ରଜ୍ଞାପାରମିତା ଆଦି ବିଷୟରେ ତାଙ୍କୁ ବ୍ୟାପୃତ ହେବାକୁ ପଡ଼ିଲା। ବିତର୍କ କାର୍ଯ୍ୟ ଶେଷହେବା ବେଳକୁ ପ୍ରାୟତଃ ସନ୍ଧ୍ୟା। ସେତେବେଳକୁ ସେ ଖୁବ୍ କ୍ଳାନ୍ତ ହୋଇପଡ଼ିଥିଲେ। ତାଙ୍କୁ ବୌଦ୍ଧଦର୍ଶନର ବିଦ୍ୟାବାରିଧି (Gesbe or Doctor of Buddhist studies) ଉପାଧି ପ୍ରଦାନ କରିବାକୁ ବିଚାରକମାନେ ସହମତ ହୋଇଥିବା ଖବର ଶୁଣି ସେ ଖୁବ୍ ଆନନ୍ଦ ଅନୁଭବ କଲେ।

ମାର୍ଚ୍ଚ ମାସ ୫ ତାରିଖରେ ଚିରାଚରିତ ରୀତିରେ ସେ ନର୍ବୁଲିଙ୍ଗକା ପ୍ରତ୍ୟାବର୍ତ୍ତନ କଲେ। ସେଥିଲାଗି ଏକ ବିରାଟ ଶୋଭାଯାତ୍ରା ଆୟୋଜନ କରାଯାଇଥିଲା। ଅଙ୍ଗରକ୍ଷୀମାନେ ତାଙ୍କୁ ଚାରିପଟରୁ ଘେରି ରହିଥିଲେ। ତାଙ୍କ ଅଙ୍ଗରକ୍ଷୀମାନଙ୍କର ଭୟ ହୋଇଥିଲା ଯେ, ଚୀନାମାନେ ତାଙ୍କୁ ଆକ୍ରମଣ କରିପାରନ୍ତି। ସେଥିଲାଗି ସେମାନେ ସେମାନଙ୍କର ବ୍ରେନ୍ ଗନ୍ (Bren Gun)ଗୁଡ଼ିକୁ ଚୀନା ସାମରିକ ମୁଖ୍ୟ କାର୍ଯ୍ୟାଳୟ ଆଡ଼କୁ ଲକ୍ଷ୍ୟକରି ଧରିଥିଲେ। ଦୁଇଦିନ ପରେ ଚୀନା କର୍ତ୍ତୃପକ୍ଷଙ୍କ ସହିତ ତାଙ୍କର ସାକ୍ଷାତ ହେଲା। ସେ ମାର୍ଚ୍ଚ ୧୦ ତାରିଖରେ ନାଟ୍ୟ ଉତ୍ସବ ଦେଖିବାକୁ ଯିବେ ବୋଲି ସେମାନଙ୍କୁ ଜଣେଇ ଦେଲେ। ପୁଣି ଦୁଇଦିନ ପରେ କେତେକ ଚୀନାଲୋକ ଆସି ତେନ୍‌ଜିନ୍‌ଙ୍କର ଅଙ୍ଗରକ୍ଷୀମାନଙ୍କର କମାଣ୍ଡର କୁସୁମ ଦିପନ୍‌ଙ୍କୁ ଭେଟିଲେ ଓ ତେନ୍‌ଜିନ୍‌ଙ୍କୁ ସାମରିକ ପରାମର୍ଶଦାତା ବ୍ରିଗେଡିୟର ଫୁ'ଙ୍କ ମୁଖ୍ୟ କାର୍ଯ୍ୟାଳୟକୁ ନେବା ନିମନ୍ତେ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିବା ଜଣେଇଲେ। ବ୍ରିଗେଡିୟର ତାଙ୍କୁ କହିଲେ ଯେ, ତାଙ୍କର ପରିଦର୍ଶନ ବେଳେ କୌଣସି ତିବ୍ବତୀୟ ସୈନ୍ୟ ତାଙ୍କ ସହିତ ଯିବେନାହିଁ। ଯଦି ନିହାତି ଦରକାର ହୁଏ ତା'ହେଲେ ଦୁଇତିନିଜଣ ନିରସ୍ତ୍ର ଅଙ୍ଗରକ୍ଷୀଙ୍କୁ ସେ ସାଥିରେ ନେଇ ଯାଇପାରିବେ।

ଏସବୁ ତାଙ୍କୁ ଖୁବ୍ ବିସ୍ମୟକର ମନେହେଲା। ସେ ଏ ବିଷୟରେ ତାଙ୍କର ପରାମର୍ଶଦାତାମାନଙ୍କ ସହିତ ବିଚାର ବିମର୍ଶ କଲେ। ସେମାନେ କହିଲେ ଯେ, ଯଦି ସେ ଚୀନା କର୍ତ୍ତୃପକ୍ଷଙ୍କର ଏ ପ୍ରସ୍ତାବରେ ରାଜି ନ ହୁଅନ୍ତି ତା'ହେଲେ ଖୁବ୍ ନକାରାତ୍ମକ ପରିଣାମ ସୃଷ୍ଟିହେବ। ହୁଏତ ଗୁରୁତ୍ୱପୂର୍ଣ୍ଣ କୂଟନୈତିକ ସମ୍ପର୍କ ଛିନ୍ନ ହୋଇଯାଇପାରେ।

ଏସବୁ ଶୁଣି ପରିଶେଷରେ ତେନ୍‌ଜିନ୍ କେତେକ ମୁଷ୍ଟିମେୟ କର୍ମଚାରୀଙ୍କୁ ସାଥିରେ ନେଇ ଯିବାପାଇଁ ରାଜିହେଲେ ।

ତାଙ୍କର ସାନଭାଇ ଟେନ୍‌ଜିନ୍ ଚୋଗ୍ୟାଲ୍ ମଧ୍ୟ ସେଠାକୁ ଯିବା ନିମନ୍ତେ ନିମନ୍ତ୍ରିତ ହୋଇଥିଲେ । ସେହି ସମୟରେ ଟେନ୍‌ଜିନ ଚୋଗ୍ୟାଲ୍ ଡ୍ରେପଙ୍ଗ୍ ସନ୍ନ୍ୟାସାଶ୍ରମରେ ଅଧ୍ୟୟନରତ ଥିବାରୁ ତାଙ୍କର ସ୍ୱତନ୍ତ୍ର ଭାବରେ ଯାତ୍ରା କରିବାର ଥିଲା । ଚୀନାମାନେ ତାଙ୍କର ଗସ୍ତକୁ ଯେତେଦୂର ସମ୍ଭବ ଗୋପନ କରି ରଖିବାକୁ ଚାହୁଁଥିଲେ ମଧ୍ୟ ସେଥିରେ ସେମାନେ ସଫଳ ହୋଇପାରି ନଥିଲେ । ସେ ଚୀନା ଦପ୍ତରକୁ ଯାଉଛନ୍ତି ବୋଲି ଚାରିଆଡ଼େ ପ୍ରଚାର ହୋଇଗଲା । ପୁଣି ପ୍ରଚାର ହୋଇଗଲା ଯେ, ଚୀନର ମୁଖ୍ୟ ଦପ୍ତର ନିକଟସ୍ଥ ନଦୀ ଉପରେ ଥିବା ପ୍ରସ୍ତର ସେତୁର ଆଖପାଖ ଅଞ୍ଚଳରେ ଯାନବାହନ ଚଳାଚଳ ଉପରେ କଟକଣା ଜାରି କରାଯିବ । ଏଭଳି ସମ୍ବାଦ ଶୁଣିବା ମାତ୍ରେ ତେନ୍‌ଜିନ୍‌ଙ୍କ ସମର୍ଥକମାନେ ପ୍ରଚଣ୍ଡ ଭାବରେ ତାତି ଉଠିଲେ ଓ ତାଙ୍କୁ ସୁରକ୍ଷା ଯୋଗେଇ ଦେବାଲାଗି ଦଳଦଳ ହୋଇ ଆସି ସେ ରହୁଥିବା ବାସଭବନର ଚାରିପଟକୁ ଘେରି ଘୂରି ବୁଲିଲେ । ଏଭଳି ସମ୍ବାଦ ଶୁଣି ତେନ୍‌ଜିନ୍ ଖୁବ୍ ଆତଙ୍କିତ ହୋଇପଡ଼ିଲେ । ହୁଏତ ଉତ୍ତ୍ୟକ୍ତ ଲୋକମାନେ ଚୀନା ସେନାଛାଉଣୀ ଉପରେ ଆକ୍ରମଣ କରିପାରନ୍ତି ବୋଲି ସେ ଆଶଙ୍କା କରୁଥିଲେ । ସେଦିନ ସନ୍ଧ୍ୟାରେ ତାଙ୍କର ଆଉ ଚୀନା ଦପ୍ତରକୁ ଯିବାର ପ୍ରଶ୍ନ ଉଠୁ ନଥିଲା । ଏକଥା ସେ ଚୀନା ଦପ୍ତରକୁ ଟେଲିଫୋନ୍ ଯୋଗେ ଜଣେଇଦେଲେ । ଅପରପକ୍ଷରେ, ସେ ଚୀନା ଦପ୍ତରକୁ ଯାଉନାହାନ୍ତି ବୋଲି ଜଣେଇବା ପରେ ଉତ୍ତ୍ୟକ୍ତ ଲୋକମାନେ ଶାନ୍ତ ହୋଇ ନିଜନିଜ ସ୍ଥାନକୁ ଫେରିଗଲେ ।



# (୧୮) ମାତୃଭୂମିରୁ ବିଦାୟ

ପରିସ୍ଥିତି କ୍ରମଶଃ ଖରାପ ଆଡ଼କୁ ଗତି କରୁଥିବା ଦେଖି ତେନ୍‌ଜିନ୍ ବ୍ୟସ୍ତ ହୋଇପଡୁଥିଲେ ଓ ଶାନ୍ତି ନିମନ୍ତେ ନିରବଚ୍ଛିନ୍ନ ପ୍ରାର୍ଥନା କରୁଥିଲେ। ଏଭଳି ପରିପ୍ରେକ୍ଷୀରେ ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କୁ ସାକ୍ଷାତ୍ କରିବା ଜରୁରି ବୋଲି ମନେକରି ସେ ତାଙ୍କର ତିନିଜଣ ବରିଷ୍ଠ ମନ୍ତ୍ରୀଙ୍କୁ ସେଠାକୁ ପ୍ରେରଣ କଲେ। ତେବେ ତାଙ୍କର ତିନିଜଣ ବରିଷ୍ଠ ମନ୍ତ୍ରୀ ପହଞ୍ଚିବା ପୂର୍ବରୁ ଗାବୋ ଗାଓ୍ୱାଙ୍ଗ୍ ଜିଗମେ ଆଗରୁ ଯାଇ ଚୀନା ଦପ୍ତରରେ ପହଞ୍ଚି ସାରିଥିଲେ। ପ୍ରଥମେ ଚୀନାମାନେ ଭଦ୍ରୋଚିତ ବ୍ୟବହାର କରୁଥିଲେ ମଧ୍ୟ ଜେନେରୋଲ୍ ଟାନ୍ କୁଆନ୍-ସେନ୍ ପହଞ୍ଚିବା ପରେ ସମସ୍ତଙ୍କର ମନୋଭାବ ବଦଳିଗଲା। ଜେନେରାଲ୍ ନିଜେ ମଧ୍ୟ ଖୁବ୍ କ୍ରୋଧ ପ୍ରଦର୍ଶନ କଲେ। ତିବ୍‌ତୀୟମାନେ ଚୀନ୍ ସରକାରଙ୍କ ସହିତ ବିଶ୍ୱାସଘାତକତା କରୁଛନ୍ତି ବୋଲି କହି ତିରସ୍କାର କରିବାକୁ ଲାଗିଲେ।

ସେହିଦିନ ସନ୍ଧ୍ୟାରେ ତାଙ୍କର ବରିଷ୍ଠ ମନ୍ତ୍ରୀତ୍ରୟ ଫେରିଆସି ନର୍ବୁଲିଙ୍ଗକାରେ ତେନ୍‌ଜିନ୍‌ଙ୍କୁ ସାକ୍ଷାତ୍ କଲେ ଓ ସେମାନଙ୍କର ସାକ୍ଷାତର ବିବରଣୀ ଜଣାଇଲେ। ସମସ୍ତ ବିବରଣୀ ଶୁଣିବା ପରେ ତେନ୍‌ଜିନ୍‌ଙ୍କର ହୃଦବୋଧ ହେଲା ଯେ, ଚୀନାମାନେ ତିବ୍‌ବତ ବିରୋଧରେ ଚରମପତ୍ର ପ୍ରକାଶ କରୁଛନ୍ତି। ସେହି ସନ୍ଧ୍ୟାରେ ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କ ନିକଟରୁ ଗୋଟିଏ ଚିଠି ଆସି ପହଞ୍ଚିଲା। ତାଙ୍କର ନିରାପତ୍ତା ପାଇଁ ସେ ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କ ଦପ୍ତରକୁ ସ୍ଥାନାନ୍ତରିତ ହୋଇଯିବା ସବୁଠୁ ଉଚିତ ହେବ ବୋଲି ସେହି ପତ୍ରରେ ପ୍ରସ୍ତାବ ଦିଆଯାଇଥିଲା। ଏଭଳି ଏକ ପ୍ରସ୍ତାବ ତାଙ୍କ ଲାଗି ଖୁବ୍ ଅପମାନଜନକ ଥିଲା ଓ ସେ ପତ୍ର ପଢ଼ି ଖୁବ୍ କ୍ଷୁବ୍‌ଧ ହୋଇପଡ଼ିଲେ। ତେବେ ମନକଥା ମନରେ ଚାପି ରଖି ତେନ୍‌ଜିନ୍ ତାଙ୍କ ନିକଟକୁ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ପତ୍ର ଲେଖିଲେ। ମାର୍ଚ୍ଚ ମାସ ୧୧ ତାରିଖ ଦିନ ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କ ନିକଟରୁ ପୁଣି ଦୁଇଖଣ୍ଡ ଚିଠି ଆସି ପହଞ୍ଚିଲା। ଗୋଟିଏ ଚିଠି ତାଙ୍କ ପାଖକୁ ଲେଖାଯାଇଥିଲା ଓ ତାହା ପୂର୍ବ ଚିଠିର ଅବିକଳ ନକଲ ଥିଲା। ସେ ମଧ୍ୟ ତାହାର ଉତ୍ତର ବେଶ୍ ନମ୍ରତାର ସହିତ ପ୍ରଦାନ କଲେ। ଦ୍ୱିତୀୟ ଚିଠିଟି ଆଭ୍ୟନ୍ତରୀଣ

ମନ୍ତ୍ରୀପରିଷଦ ନିକଟକୁ ଲେଖାଯାଇଥିଲା । ସେଥିରେ ସେମାନଙ୍କୁ କୁହାଯାଇଥିଲା ଯେ, ଚୀନ୍‌କୁ ସଂଯୋଗ କରୁଥିବା ରାସ୍ତାରୁ ପ୍ରତିବନ୍ଧକ ସବୁକୁ ହଟାଇ ଦିଆଯିବା ଦରକାର । ମାତ୍ର ଏହି ଚିଠିଟି ତିବ୍‌ବତର ଜନତାଙ୍କ ଉପରେ ଅତ୍ୟନ୍ତ କୁପ୍ରଭାବ ପକାଇଲା । ଏହାଦ୍ୱାରା ଚୀନାମାନେ ଦଲାଇ ଲାମାଙ୍କୁ ଆକ୍ରମଣ କରିବା ନିମନ୍ତେ ସୈନ୍ୟ ଆଣିବାକୁ ଚାହୁଁଛନ୍ତି ବୋଲି ସେମାନେ ବୁଝିପାରିଲେ । ତେଣୁ ସେମାନେ ଚୀନା କର୍ତ୍ତୃପକ୍ଷଙ୍କ ପ୍ରସ୍ତାବକୁ ସିଧାସଳଖ ପ୍ରତ୍ୟାଖ୍ୟାନ କରିଦେଲେ । ତେବେ ନିଜେ ତେନ୍‌ଜିନ୍ ସେମାନଙ୍କୁ ପ୍ରାଞ୍ଜଳ ଭାବରେ ବୁଝେଇ କହିଲେ ଯେ, ସେମାନେ ଯଥାଶୀଘ୍ର ସ୍ଥାନ ତ୍ୟାଗ କରିବା ଦରକାର । ନହେଲେ ହୁଏତ ଚୀନା ସରକାର ସୈନ୍ୟବଳ ପ୍ରୟୋଗ କରିପାରନ୍ତି । ଏହାଦ୍ୱାରା ତିବ୍‌ବତର ହିଁ ଅଶେଷ କ୍ଷତି ହେବ ବୋଲି ତେନ୍‌ଜିନ୍‌ଙ୍କ କଥା ଶୁଣି ଜନନେତାମାନେ ପୋଟାଲା ପାଦଦେଶରେ ଥିବା ସୋଲ୍ ଗ୍ରାମକୁ ଚାଲିଯିବାକୁ ନିଷ୍ପତ୍ତି ନେଲେ ।

ଏହି ସମୟରେ ରାଷ୍ଟ୍ରୀୟ ନୀତି ନିର୍ଣ୍ଣାୟକ ପରିଷଦ ସହିତ ତେନ୍‌ଜିନ୍ ସାମ୍ପ୍ରତିକ ପରିସ୍ଥିତି ନେଇ ବିଚାର ଆଲୋଚନା ଆରମ୍ଭ କରିଦେଲେ । ବାସ୍ତବରେ ଦେଶର ଏହି ପରିସ୍ଥିତିରେ ସେ ଦେଶରେ ରହିବେ ନା ଦେଶଛାଡ଼ି ପଳେଇଯିବେ ସେହି ବିଷୟରେ ଆଲୋଚନା ଆରମ୍ଭ କରିଦେଲେ । କ'ଣ କରିବାକୁ ହେବ ସେ କିଛି ଚିନ୍ତା କରିପାରୁ ନଥିଲେ । ଇତିମଧ୍ୟରେ ରାଷ୍ଟ୍ରୀୟ ଆଧ୍ୟାତ୍ମିକ ପରାମର୍ଶଦାତା ତାଙ୍କୁ ଜଣେଇଦେଲେ ଯେ, ସେ ଦେଶ ଛାଡ଼ି ଯିବା କଥା ମନରୁ ପରିହାର କରନ୍ତୁ । ତା' ପରିବର୍ତ୍ତେ ଦେଶରେ ରହି ଚୀନାମାନଙ୍କ ସହିତ କଥାବାର୍ତ୍ତା ଚଳାଇ ରଖନ୍ତୁ । ମାର୍ଚ୍ଚ ମାସ ୧୬ ତାରିଖରେ ସେ ଦୁଇଖଣ୍ଡ ଚିଠି ପାଇଲେ । ଗୋଟିଏ ଚିଠି ଗାବୋଙ୍କ ନିକଟରୁ ଆସିଥିବା ବେଳେ ଅନ୍ୟଟି ଆସିଥିଲା ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କ ନିକଟରୁ । ଚୀନାମାନେ ଜନତାଙ୍କ ଉପରେ ଆକ୍ରମଣ କରି ନର୍ବୁଲିଙ୍ଗକା ଉପରେ ଗୁଳିଗୁଳା ବର୍ଷଣ କରିବାର ଯୋଜନା କରୁଛନ୍ତି ବୋଲି ଗାବୋ ତାଙ୍କ ପତ୍ରରେ ଲେଖିଥିଲେ । ଅପରପକ୍ଷରେ, ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କ ଚିଠିଟି ତୃତୀୟ ଚିଠି ଥିଲା ଓ ପୂର୍ବ ଦୁଇଟି ଚିଠିର ତାହା ଅବିକଳ ନକଲ ଥିଲା । ତେନ୍‌ଜିନ୍ ଏଭଳି ପରିପ୍ରେକ୍ଷୀରେ କ'ଣ କରିବେ କିଛି ବୁଝିପାରିଲେ ନାହିଁ । ତଥାପି ଅତି ସନ୍ତର୍ପଣରେ ସେ ଉଭୟ ଗାବୋ ଏବଂ ଜେନେରାଲ୍ ଟାନ୍ କୁଆନ୍-ସେନ୍‌ଙ୍କ ପତ୍ରର ଉତ୍ତର ଦେଲେ । ଚୀନାମାନଙ୍କୁ ଯେଭଳି ସୁହାଇବ ସେଭଳି ଶବ୍ଦରେ ଚିଠି ଲେଖିଥିଲେ । ଏହା ବ୍ୟତୀତ, ଜନତାଙ୍କର ଚୀନ୍ କର୍ତ୍ତୃପକ୍ଷଙ୍କ

ପ୍ରତି ଉଗ୍ର ଆଚରଣ ତାଙ୍କୁ ବିସ୍ମିତ କରିଛି ବୋଲି ମଧ୍ୟ ସେ ଚିଠିରେ ଦର୍ଶାଇଥିଲେ। ଚିଠି ଲେଖି ପଠାଇ ସାରିବା ପରେ ମଧ୍ୟ ତାଙ୍କୁ ଶାନ୍ତି ମିଳି ନଥିଲା। ସେ ଖୁବ୍ ଅସ୍ଥିରତା ଅନୁଭବ କରୁଥିଲେ। ତା’ ପରଦିନ ସେ ପୁଣିଥରେ ଆଧ୍ୟାତ୍ମିକ ପରାମର୍ଶଦାତାଙ୍କ ପରାମର୍ଶ ଲୋଡିଲେ। ତାଙ୍କୁ ବିସ୍ମିତ କରିଦେଇ ଆଧ୍ୟାତ୍ମିକ ପରାମର୍ଶଦାତା ଚିତ୍କାର କରି ଉଠିଲେ- ପଳେଇ ଯାଆନ୍ତୁ! ପଳେଇ ଯାଆନ୍ତୁ! ଆଜି ରାତି! (Go! Go! Tonight!)। ସେତିକି ନୁହେଁ, ସେ ନର୍ବୁଲିଙ୍ଗକାରୁ ବାହାରି ଭାରତୀୟ ସୀମାରେ ଥିବା ତିବ୍ବତୀୟ ସହର ପର୍ଯ୍ୟନ୍ତ କେଉଁ ରାସ୍ତାରେ ଯିବେ କାଗଜ କଲମରେ ତାହାର ମଧ୍ୟ ସ୍ପଷ୍ଟ ଭାବରେ ଲେଖିଦେଲେ। ଏତିକି କହିସାରି ହୁକୁମ ଦେଉଥିବା ଲୋବସାଙ୍ଗ୍ ଜିଗ୍ମେ ନାମକ ଜଣେ ଯୁବ ସନ୍ନ୍ୟାସୀ ମୂର୍ଚ୍ଛିତ ହୋଇ ପଡ଼ିଗଲେ। ଏହା ତାଙ୍କୁ ସୂଚେଇ ଦେଲା ଯେ, ଦର୍ଜୀ ଡ୍ରାକ୍ଡେନ୍ ତାଙ୍କର ଶରୀର ଛାଡ଼ି ପଳେଇ ଯାଇଛନ୍ତି। ଠିକ୍ ସେତିକିବେଳେ ଜୁଏଲ୍ ପାର୍କର ଉତ୍ତର ଦ୍ୱାର ବାହାରେ ଦୁଇଟି ତୋପ ଫୁଟି ଉଠିଲା। ଏହା ଆଧ୍ୟାତ୍ମିକ ପରାମର୍ଶଦାତାଙ୍କ ନିର୍ଦ୍ଦେଶର ସତ୍ୟତା ପ୍ରମାଣିତ କରୁଥିବା ତାଙ୍କର ମନେହେଲା।

ପରିସ୍ଥିତି ଖୁବ୍ ନୈରାଶ୍ୟଜନକ ଥିବା ହେତୁ ତେନ୍ଜିନ୍ ତାଙ୍କର ଦେଶତ୍ୟାଗ କରିବାର ନିଷ୍ପତ୍ତିକୁ ଅଳ୍ପ କେତେଜଣଙ୍କ ନିକଟରେ ପ୍ରକାଶ କଲେ। ପ୍ରଥମେ ସେ ତାଙ୍କର ଲର୍ଡ ଚାମ୍ବରଲେନ୍ ଓ ତିବ୍ବତୀୟ ସେନାବାହିନୀର ମୁଖ୍ୟଙ୍କୁ ଜଣାଇଲେ। ଲାସା ଛାଡ଼ି ଯିବାକୁ ଥିବା ଦଳରେ ତାଙ୍କର ଦୁଇ ଗୃହ ଶିକ୍ଷକ, ତାଙ୍କର କିଛି ଘନିଷ୍ଠ ପରାମର୍ଶଦାତା ଓ ତାଙ୍କ ସହିତ ଉପସ୍ଥିତ ଥିବା ତାଙ୍କ ପରିବାରର ସଦସ୍ୟମାନଙ୍କୁ ସାଥିରେ ନେଇଯିବାକୁ ସ୍ଥିର କରାଗଲା। ସେହିଦିନ ଅପରାହ୍ଣରେ ପଳାୟନ କାର୍ଯ୍ୟ ଆରମ୍ଭ ହେଲା। ପ୍ରଥମେ ତାଙ୍କର ଦୁଇ ଗୃହଶିକ୍ଷକ ଏବଂ ଆଭ୍ୟନ୍ତରୀଣ ପରିଷଦର ଚାରିଜଣ ସଦସ୍ୟ ଲରି ପଛରେ ଟାର୍ପୋଲିନ୍ ତଳେ ଲୁଚି ରହି ଉଆସ ଛାଡ଼ିଲେ। ସନ୍ଧ୍ୟାରେ ତାଙ୍କର ମା’, ଟେନ୍ଜିନ୍ ଚୋଗ୍ୟାଲ ଓ ସେରିଙ୍ଗ ଡୋଲମା କିଚୁ ନଦୀର ଦକ୍ଷିଣ ପଟରେ ଥିବା ସନ୍ନ୍ୟାସିନୀ ଆଶ୍ରମକୁ ଯାଉଥିବାର ବାହାନା କରି ଛଦ୍ମବେଶରେ ଖସି ପଳାଇଲେ। ସନ୍ଧ୍ୟାରେ ସେ ଶେଷଥର ପାଇଁ ତାଙ୍କର ବ୍ୟକ୍ତିଗତ ଆଶ୍ରୟଦାତା ଦୈବୀଶକ୍ତି ମହାକାଳୀଙ୍କ ମନ୍ଦିରକୁ ଗଲେ। ସେ ଦେବୀପ୍ରତିମାଙ୍କୁ ଏକ ଧଳା ରେଶମ ବସ୍ତ୍ର (kata) ଉପହାର ପ୍ରଦାନ କଲେ ଓ ମୁହୂର୍ତ୍ତକ ପାଇଁ ନିରବ ପ୍ରାର୍ଥନାରେ ମଗ୍ନ

ହୋଇଗଲେ। ପ୍ରକୋଷ୍ଠ ତ୍ୟାଗ କରିବା ପୂର୍ବରୁ ସେ ଅଳ୍ପକିଛି ସମୟ ପାଇଁ ବସିରହି ବୌଦ୍ଧସୂତ୍ର ପାଠ କଲେ।

ରାତି ଦଶଟା ବାଜିବାର ଅଳ୍ପ କେତେ ମିନିଟ୍ ଆଗରୁ ସେ ଗୋଟିଏ ଟ୍ରାଉଜର ପିନ୍ଧିଲେ ଓ ଗୋଟିଏ ଦୀର୍ଘ କଳାକୋଟ ପରିଧାନ କଲେ। ଡାହାଣ କାନ୍ଧରେ ଗୋଟିଏ ବନ୍ଧୁକ ଝୁଲେଇଲେ ଓ ବାମ କାନ୍ଧ ଉପରେ ଦ୍ୱିତୀୟ ଦଲାଇ ଲାମାଙ୍କର ଗୋଟିଏ ପୁରୁଣା ଥାଙ୍ଗ୍‌କା (Thangka) ରଖିଲେ। ଚଷମାକୁ ପକେଟ୍‌ରେ ପୂରେଇଦେଇ ସେ ବାହାରକୁ ଗୋଡ଼ କାଢ଼ିଲେ। ଦୁଇଜଣ ସୈନିକ ଓ ଅଙ୍ଗରକ୍ଷୀ ବାହିନୀର ମୁଖ୍ୟଙ୍କ ସହିତ ସେ ପାର୍କ ଅତିକ୍ରମ କରିଗଲେ। ପ୍ରାଚୀର ନିକଟରେ ତାଙ୍କୁ ତିବ୍‌ବତୀୟ ସେନାବାହିନୀର ମୁଖ୍ୟ ଅପେକ୍ଷା କରି ରହିଥିଲେ। ସେ ତାଙ୍କ ହାତରେ ଏକ ଖଣ୍ଡା ଧରିଥିଲେ ଓ ତାଙ୍କୁ ଅନୁଚ୍ଚ ସ୍ୱରରେ ଆଶ୍ୱସ୍ତ କରାଉଥିଲେ। ସେମାନେ ସ୍ୱଚ୍ଛନ୍ଦରେ ଦ୍ୱାର ଟପି ବାହାରକୁ ଚାଲି ଆସିଲେ। ପ୍ରଥମେ ଏକ ଶାଖାନଦୀ ପାର ହୋଇ ସେମାନେ ଆସି ପହଞ୍ଚିଲେ କିଚୁ ନଦୀ କୂଳରେ। ସେଠାରେ ସେମାନଙ୍କୁ ନଦୀ ପାର କରାଇବା ପାଇଁ ଛୋଟ ନାଉରିଆ ଦଳ ଅପେକ୍ଷା କରି ରହିଥିଲେ। ସେମାନେ ସୁରୁଖୁରୁରେ ନଦୀ ପାର ହୋଇଗଲେ। ନଦୀର ଅପରପାର୍ଶ୍ୱରେ ତାଙ୍କର ମାତା, ଭାଇ, ଭଉଣୀ ଓ ଗୃହଶିକ୍ଷକମାନଙ୍କ ସହିତ ସାକ୍ଷାତ ହେଲା। ସେହିଭଳି ଅନ୍ୟ ସହଯୋଗୀମାନେ ମଧ ଆସି ସେମାନଙ୍କ ନିକଟରେ ପହଞ୍ଚିଗଲେ। ସେମାନେ ସମସ୍ତେ ଏକତ୍ରିତ ହୋଇ ଚେ-ଲା ଗିରିପଥ ଆଡ଼କୁ ଯାତ୍ରା ଆରମ୍ଭ କଲେ। ଭୋର ପ୍ରାୟ ତିନିଟା ବେଳକୁ ସେମାନେ ଯାଇ କୃଷିକ୍ଷେତ ମଧ୍ୟରେ ଥିବା ଏକ ଘରେ ପହଞ୍ଚିଲେ। ତେବେ ସେଠାରେ ବେଶୀ ସମୟ ନ ରହି ପୁଣିଥରେ ଗିରିପଥ ଆଡ଼କୁ ଯାତ୍ରା ଆରମ୍ଭ କରିଦେଲେ। ସକାଳ ପ୍ରାୟ ଆଠଟା ବେଳକୁ ସେଠାରେ ସେମାନେ ପହଞ୍ଚିଗଲେ। ସେଠାରୁ ପୁଣି ଯାତ୍ରା ଆରମ୍ଭ କରି ସାଙ୍ଗପୋ ନଦୀର ତଟଦେଶ ଯାଏ ଯାତ୍ରା କଲେ ଓ ସେଠାରେ ଅଳ୍ପକିଛି ସମୟ ପାଇଁ ବିଶ୍ରାମ ନେଲେ। ଗୋଟିଏ ନୌକାରେ ବସି ସେମାନେ ସାଙ୍ଗପୋ ନଦୀର ଅପରପାର୍ଶ୍ୱସ୍ଥ ଏକ ଛୋଟ ଗାଁରେ ପହଞ୍ଚିଲେ। ତାଙ୍କର ଆସନ୍ନ ଆଗମନ ସମ୍ପର୍କରେ ସେମାନଙ୍କୁ ଆଗରୁ ଅବଗତ କରାଇ ଦିଆଯାଇଥିଲା ଓ ତାଙ୍କର ସୁରକ୍ଷାର ଦାୟିତ୍ୱ ସେମାନଙ୍କ ହସ୍ତରେ ଅର୍ପଣ କରାଯାଇଥିଲା।

ସେହିଦିନ ରାତିରେ ସେମାନେ ରା-ମି ନାମକ ଏକ ସନ୍ନ୍ୟାସାଶ୍ରମରେ ବିଶ୍ରାମ ନେଲେ। ପରବର୍ତ୍ତୀ ଗିରିପଥ ଥିଲା ସାବୋ-ଲା। ଦୁଇତିନିଦିନ ପରେ ସେମାନେ

ଯାଇ ସେଠାରେ ପହଞ୍ଚିଗଲେ। ଶିଖର ଦେଶରେ ପ୍ରବଳ ଥଣ୍ଡା ପଡୁଥିଲା। ତେଣୁ ଯାତ୍ରା ଖୁବ୍ କଷ୍ଟଦାୟକ ଥିଲା। ପୁଣି ସାମନ୍ୟ ଅସତର୍କ ହେଲେ ଚୀନା ସୈନ୍ୟଙ୍କ ଆଖିରେ ପଡ଼ିଯିବାର ଡର ମଧ୍ୟ ରହୁଥିଲା। ପରିଶେଷରେ ଗୋଟିଏ ସପ୍ତାହରୁ ଅଧିକ ଯାତ୍ରା କରିବା ପରେ ସେମାନେ ଯାଇ ହୁନ୍‌ସେ ଜଙ୍ଗ୍ (Lhuntse Dzong)ରେ ପହଞ୍ଚିଲେ ଓ ସେଠାରେ ଦୁଇ ରାତି ଅଟକି ରହିଲେ। ହୁନ୍‌ସେ ଜଙ୍ଗ୍‌ରୁ ସେମାନେ ଯାଇ ପହଞ୍ଚିଲେ ଝୋରା ନାମକ ଗୋଟିଏ ଛୋଟ ଗାଁରେ ଓ ସେଠାରୁ ଗଲେ ସୀମାନ୍ତ ପୂର୍ବରୁ ଥିବା ଶେଷ ଘାଟି କାର୍ପୋ ଗିରିପଥକୁ। ଏହି ସମୟରେ ସେ ଖବର ପାଇଲେ ଯେ, ତାଙ୍କୁ ଶରଣାର୍ଥୀ ଭାବରେ ଗ୍ରହଣ କରିବା ପାଇଁ ଭାରତ ସରକାର ସମ୍ମତି ପ୍ରକାଶ କରିଛନ୍ତି। ଏହା ଶୁଣି ସେ ଅତ୍ୟନ୍ତ ଆଶ୍ୱସ୍ତ ଲାଭ କଲେ।

ମାଙ୍ଗ୍‌ମାଙ୍ଗ୍ ନାମକ ଗୋଟିଏ ଛୋଟ ଗ୍ରାମରେ ସେ ଗୋଟିଏ ରାତି ବିତାଇଲେ। ତିବ୍‌ବତରେ ଏହା ତାଙ୍କର ଶେଷ ରାତି ଥିଲା। ସେଠାରେ ଥିବା ଅବସ୍ଥାରେ ସେ ଅସୁସ୍ଥ ହୋଇପଡ଼ିଥିଲେ। ଏତଦ୍‌ବ୍ୟତୀତ, ସେ ତିବ୍‌ବତରୁ ପଳାୟନ କରି ଭାରତ ଯାତ୍ରା କରୁଛନ୍ତି ବୋଲି ସମ୍ବାଦ ପ୍ରଚାର ହୋଇଯାଇଥିଲା। ସେ ଏହି ଖବର ଏକ ରେଡ଼ିଓରୁ ଶୁଣିଥିଲେ। ତେବେ ସେଥିଲାଗି ସେ ଆଦୌ ଉଦ୍‌ବେଗ ପ୍ରକାଶ କରି ନଥିଲେ। ପରବର୍ତ୍ତୀ ଦିନ ସେ ଭାରତ ଯାତ୍ରା ପାଇଁ ପ୍ରସ୍ତୁତ ହୋଇଗଲେ। ତାଙ୍କ ସହିତ ଥିବା ସୈନ୍ୟ ତଥା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ପୁଣିଥରେ ତିବ୍‌ବତକୁ ଫେରାଇଦେଲେ ଓ ତାଙ୍କର ପ୍ରିୟ ମାତୃଭୂମିରୁ ବିଦାୟ ନେଲେ।



# (୧୯) ଭାରତରେ ଶରଣାର୍ଥୀ

ଭାରତୀୟ ସୀମାନ୍ତରେ ପହଞ୍ଚିବା ବେଳକୁ ତେନ୍‌ଜିନ୍‌ଙ୍କ ସମେତ ତାଙ୍କର ସହଯୋଗୀମାନେ ଖୁବ୍ କ୍ଳାନ୍ତ ହୋଇପଡ଼ିଥିଲେ । ସେମାନଙ୍କର ଅବସ୍ଥା ଅତ୍ୟନ୍ତ ଦୟନୀୟ ହୋଇଉଠିଥିଲା । ତେବେ ତାଙ୍କୁ ପାଛୋଟି ନେବା ଲାଗି ସୀମାନ୍ତକୁ ଆସିଥିବା ଲୋକମାନଙ୍କୁ ଦେଖି ସେ ଖୁସିରେ ଅଧୀର ହୋଇଉଠିଲେ । ଦୁଇବର୍ଷ ପୂର୍ବେ ସେ ଭାରତ ଗସ୍ତରେ ଆସିଥିବା ବେଳେ ସେ ଭେଟିଥିବା ଅନେକ ବ୍ୟକ୍ତି ତାଙ୍କୁ ପାଛୋଟି ନେବା ନିମନ୍ତେ ସୀମାନ୍ତକୁ ଆସିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ସରକାରୀ କର୍ମଚାରୀ ତାଙ୍କୁ ବୁଝାଇଦେଲେ ଯେ, ତାଙ୍କର ସହଯାତ୍ରୀ ଦଳ ସମେତ ତାଙ୍କୁ ବୋମଡିଲା (Bomdila) ନେଇଯିବା ପାଇଁ ସେମାନଙ୍କୁ ସରକାରୀ ନିର୍ଦ୍ଦେଶ ମିଳିଛି ।

ବୋମଡିଲା ଗୋଟିଏ ବଡ଼ ସହର । ସେଠାକୁ ଯିବା ଲାଗି ଆହୁରି ଗୋଟିଏ ସପ୍ତାହ ଯାତ୍ରା କରିବାକୁ ପଡ଼ିଲା । ଯା' ହେଉ ଲାସା ଛାଡ଼ିବାର ତିନି ସପ୍ତାହ ପରେ ସେମାନେ ଯାଇ ବୋମଡିଲା ସହରରେ ପହଞ୍ଚିଲେ । ବୋମଡିଲାରେ ତାଙ୍କୁ ତାଙ୍କର ପୁରାତନ ଯୋଗସୂତ୍ର ରକ୍ଷାକାରୀ ଅଧିକାରୀ (liaison officer) ଶ୍ରୀ ମେନନ୍ ଓ ବ୍ୟାଖ୍ୟାକାର ସୋନାମ୍ ଟପ୍‌ଗ୍ୟାଲ କାଜୀ ଭବ୍ୟ ସ୍ୱାଗତ ଜଣାଇଲେ । ସେମାନଙ୍କ ମଧ୍ୟରୁ ଜଣେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହରୁଙ୍କଠାରୁ ତାଙ୍କ ନିମନ୍ତେ ଆସିଥିବା ଏକ ତାରବାର୍ତ୍ତା ତେନ୍‌ଜିନ୍‌ଙ୍କୁ ବଢ଼େଇ ଦେଲେ । ତାରବାର୍ତ୍ତାରେ ପଣ୍ଡିତ ଜବାହରଲାଲ୍ ନେହରୁ ଲେଖିଥିଲେ :

"ମୋର ସହକର୍ମୀ ଓ ମୁଁ ଆପଣଙ୍କୁ ସ୍ୱାଗତ ଜଣାଉଛୁ ଏବଂ ଭାରତରେ ଆପଣ ନିରାପଦରେ ପଦାର୍ପଣ କରିଥିବାରୁ ଶୁଭେଚ୍ଛା ଜ୍ଞାପନ କରୁଛୁ । ଆପଣଙ୍କୁ, ଆପଣଙ୍କ ପରିବାରକୁ ତଥା ଆପଣଙ୍କ ସହଯୋଗୀମାନଙ୍କୁ ଭାରତରେ ଅବସ୍ଥାନ କରିବା ନିମନ୍ତେ ଆବଶ୍ୟକ ସମସ୍ତ ସୁବିଧା ସୁଯୋଗ ଯୋଗାଇଦେବାରେ ଆମେ ଖୁବ୍ ଆନନ୍ଦ ଅନୁଭବ କରିବୁ । ଆପଣଙ୍କୁ ପ୍ରଗାଢ଼ ଭକ୍ତି ପ୍ରଦର୍ଶନ କରୁଥିବା ଭାରତବାସୀ ନିଃସନ୍ଦେହରେ ଆପଣଙ୍କ ପରି ଜଣେ ପ୍ରଖ୍ୟାତ ଓ ସମ୍ମାନିତ ବ୍ୟକ୍ତିଙ୍କୁ ଶ୍ରଦ୍ଧା ଏବଂ ସମ୍ମାନ ପ୍ରଦର୍ଶନ କରିବେ । ଆପଣଙ୍କୁ ସମ୍ମାନର ସହ – ନେହରୁ ।"

ବୋମଡିଲାରେ ସେ ପ୍ରାୟ ଦଶଦିନ ରହିଲେ। ୧୯୫୯ ମସିହା ଏପ୍ରିଲ ମାସ ୧୮ ତାରିଖ ସକାଳେ ତାଙ୍କୁ ଏକ ଜିପ୍ ଯୋଗେ 'ଫୁଟ୍ ହିଲ୍ସ' ନାମକ ଏକ ପଥପ୍ରାନ୍ତ ଶିବିରକୁ ନିଆଗଲା। ତାଙ୍କ ପାଇଁ ଭାରତ ସରକାର କେଉଁସବୁ ବ୍ୟବସ୍ଥା କରୁଛନ୍ତି ଶ୍ରୀ ମେନନ୍ ସେଠାରେ ତାଙ୍କୁ ସେହିସବୁ ବିଷୟରେ ସୂଚନା ଦେଲେ। ସେଦିନ ଅପରାହ୍ନରେ ତାଙ୍କୁ ତେଜପୁର ନିଆଯିବାର ଥିଲା ଏବଂ ସେଠାରୁ ଦିଲ୍ଲୀର ଅନତିଦୂରରେ ଥିବା ଶୈଳ ନିବାସ ମସୌରୀକୁ ତାଙ୍କର ଯାତ୍ରା ଆରମ୍ଭ କରିବାର ଯୋଜନା ରହିଥିଲା। ସେମାନେ ସମସ୍ତେ ଯାଇ ତେଜପୁରରେ ପହଞ୍ଚିଲେ। ତାଙ୍କୁ ସିଧାସଳଖ ସର୍କିଟ୍ ହାଉସ୍‌କୁ ନିଆଗଲା। ସେଠାରେ ତାଙ୍କୁ ଦେଖିବା ପାଇଁ ଓ ତାଙ୍କଠାରୁ କିଛି ଧର୍ମୋପଦେଶ ଶୁଣିବା ଲାଗି ବହୁ ସଂଖ୍ୟକ ଲୋକ ଅପେକ୍ଷା କରି ରହିଥିଲେ। ସେ ମଧ୍ୟ ଲୋକମାନଙ୍କୁ ଖୁବ୍ ସଂକ୍ଷେପରେ ସମ୍ବୋଧିତ କରିଥିଲେ। ଦେଶ-ବିଦେଶରୁ ତାଙ୍କ ପାଇଁ ଅନେକ ଅଭିନନ୍ଦନର ସୁଅ ଛୁଟିଥିଲା। ଏ ସମସ୍ତ କାର୍ଯ୍ୟ ଶେଷକରି ସେ ହାଲୁକା ମଧ୍ୟାହ୍ନ ଭୋଜନ ନେଲେ ଓ ଦିନ ଗୋଟାଏ ବେଳେ ଛାଡ଼ିବାକୁ ଥିବା ଟ୍ରେନ୍ ଧରିବା ପାଇଁ ବାହାରି ପଡ଼ିଲେ। ମସୌରୀ ପର୍ଯ୍ୟନ୍ତ ଯିବା ବାଟରେ ଲୋକମାନେ ତାଙ୍କୁ ଉଚ୍ଛ୍ବସିତ ସମ୍ବର୍ଦ୍ଧନା ଜଣାଉଥିଲେ। ହଜାର ହଜାର ଲୋକ ଏକତ୍ରିତ ହୋଇ 'ଦଲାଇ ଲାମାଙ୍କର ଜୟ ହେଉ' ବୋଲି ଉଚ୍ଚ ଧ୍ୱନି ଦେଉଥିଲେ।

ଶେଷରେ ରେଳଗାଡ଼ି ଯାଇ ଡେରାଡୁନ୍ ପ୍ଲାଟଫର୍ମରେ ପହଞ୍ଚିଲା। ସେଠାରୁ ତାଙ୍କୁ ସ୍ୱାଗତ କରିବା ଲାଗି ଏକ ବିରାଟ ସମ୍ବର୍ଦ୍ଧନା ସଭାର ଆୟୋଜନ କରାଯାଇଥିଲା। ସେଠାରୁ ସେମାନେ କାର୍‌ରେ ମସୌରୀ ଗଲେ। କାରରେ ପ୍ରାୟ ଘଣ୍ଟାଏ ଯାତ୍ରା କରିବା ପରେ ସେମାନେ ମସୌରୀରେ ପହଞ୍ଚିଲେ ଓ ତାଙ୍କୁ ବିରଳା ଭବନକୁ ନିଆଗଲା। ଭାରତ ସରକାର ସେଠାରେ ତାଙ୍କ ରହଣିର ବନ୍ଦୋବସ୍ତ କରିଥିଲେ। ପ୍ରାୟ ବର୍ଷେ ପର୍ଯ୍ୟନ୍ତ ସେ ସେହି ବିରଳା ଭବନରେ ରହିଥିଲେ।

ଏପ୍ରିଲ ମାସ ୨୪ ତାରିଖରେ ପଣ୍ଡିତ ଜବାହରଲାଲ୍ ନେହରୁ ଆସି ମସୌରୀରେ ପହଞ୍ଚିଲେ ଓ ତାଙ୍କୁ ସାକ୍ଷାତ୍ କଲେ। ଜଣେ ବ୍ୟାଖ୍ୟାକାରଙ୍କ ସହାୟତାରେ ତେନ୍‌ଜିନ୍ ଓ ତାଙ୍କ ମଧ୍ୟରେ ଚାରିଘଣ୍ଟାରୁ ଉର୍ଦ୍ଧ୍ୱକାଳ ଧରି ଆଲୋଚନା ପର୍ଯ୍ୟାଲୋଚନା ଚାଲିଲା। ପ୍ରଧାନମନ୍ତ୍ରୀ ନେହରୁଙ୍କ କଥାରୁ ସେ ଜାଣିଲେ ଯେ, ସେ ଲାସାରୁ ଖସି ଭାରତ ଚାଲି ଆସିବା ପରେ ସେହି ଘଟଣାକୁ କେନ୍ଦ୍ରକରି ପାର୍ଲାମେଣ୍ଟରେ ଏକ ଉଦ୍‌ବେଗଜନକ ବିତର୍କ ହୋଇଛି, ଯେଉଁଥିପାଇଁ ଖୋଦ୍ ପଣ୍ଡିତ ନେହରୁଙ୍କୁ କେତେକାଂଶରେ

ସମାଲୋଚିତ ହେବାକୁ ପଡ଼ିଛି। ଭାରତର ଜଣେ ପ୍ରଖ୍ୟାତ ରାଜନୀତିଜ୍ଞ ଆଚାର୍ଯ୍ୟ କୃପାଳିନୀ ପଞ୍ଚଶୀଳ ନୀତି ସମ୍ବଳିତ ସ୍ମାରକପତ୍ରକୁ ଗୋଟିଏ ପ୍ରାଚୀନ ରାଷ୍ଟ୍ରର ଧ୍ୱଂସାବଶେଷ ଉପରେ ଅନୁମୋଦନର ମୋହର ଲଗାଇବା ପାପରୁ ଜନ୍ମ ଏକ ଦଲିଲ ରୂପେ ବର୍ଣ୍ଣନା କରିଥିଲେ। ତାହା ସତ୍ତ୍ୱେ ଏହି ନୀତି ପାଳନରେ ଅଟଳ ରହିବା ପାଇଁ ନେହରୁ ସଂକଳ୍ପବଦ୍ଧ ଥିଲେ। ନେହରୁ ଅତି ସ୍ପଷ୍ଟ ଭାବରେ ଘୋଷଣା କଲେ ଯେ ତିବ୍‌ବତୀୟ ଅଧିକାର ପ୍ରଶ୍ନ ଉପରେ ଭାରତ ଏବେ ବି ଚୀନ୍ ସହିତ ଏହି ପ୍ରସଙ୍ଗର ଉତ୍‌ଥାପନ କରିବାର କଳ୍ପନା କରି ନ ପାରେ। ଏହା ଜାଣିବା ପରେ ତେନ୍‌ଜିନ୍ ବ୍ୟଥିତ ହୋଇଥିଲେ ମଧ୍ୟ ନିଜକୁ ସମ୍ଭାଳି ନେଇଥିଲେ। ସେହିପରି ସେ ନିକଟ ଭବିଷ୍ୟତର କୌଣସି ଯୋଜନା ପ୍ରସ୍ତୁତ ନ କରି ବିଶ୍ରାମ ନେବା ଉଚିତ ବୋଲି ଅଧିକ ଯୁକ୍ତିଯୁକ୍ତ ମନେ କରିଥିଲେ। ଏହି ସମୟରେ ସେ ଖବର ପାଇଲେ ଯେ, ସେମାନେ ମସୌରୀ ଆସିବା ପରେ କେବଳ ଭାରତରେ ନୁହେଁ, ଭୁଟାନରେ ମଧ୍ୟ ବହୁ ସଂଖ୍ୟକ ଶରଣାର୍ଥୀ ଆସି ପହଞ୍ଚିଛନ୍ତି। ତେଣୁ ସେ ସେହିସବୁ ଶରଣାର୍ଥୀଙ୍କୁ ସ୍ୱାଗତ କରିବା ପାଇଁ ତାଙ୍କର କେତେକ କର୍ମଚାରୀଙ୍କୁ ପଠାଇଲେ।

ନୂତନ ଆଗନ୍ତୁକମାନଙ୍କଠାରୁ ସେ ଜାଣିବାକୁ ପାଇଲେ ଯେ, ନର୍ବୁଲିଙ୍ଗକା ଉପରେ ପ୍ରଥମେ ବୋମା ବର୍ଷଣ କରିବା ପରେ ଚୀନାମାନେ ସେମାନଙ୍କର ବନ୍ଧୁକଗୁଡ଼ିକୁ ପୋଟାଲା ଓ ଜୋଖାଙ୍ଗ ଆଡ଼କୁ ମୁହାଁଇଛନ୍ତି। ହଜାର ହଜାର ଲୋକଙ୍କୁ ଅତି ନିର୍ମମ ଭାବରେ ହତ୍ୟା କରାଯାଇଛି। ଭେଷଜ ସ୍କୁଲଗୁଡ଼ିକୁ ଧ୍ୱଂସ କରି ଦିଆଯାଇଛି। ଏହାର ପରିଣାମ ସ୍ୱରୂପ ହଜାର ହଜାର ଲୋକ ତିବ୍‌ବତ ଛାଡ଼ି ପଳାଇ ଆସିବାକୁ ଉଦ୍ୟମ କରିଛନ୍ତି। ମାତ୍ର ସେମାନଙ୍କୁ ମଧ୍ୟ ଚୀନା ସୈନିକମାନେ ନିର୍ମମ ଭାବରେ ହତ୍ୟା କରିଛନ୍ତି।

ଦିନକୁଦିନ ଭାରତରେ ଶରଣାର୍ଥୀଙ୍କ ସଂଖ୍ୟା ବଢି ଚାଲୁଥିଲା। ଜୁନ୍‌ମାସ ସୁଦ୍ଧା ୨୦,୦୦୦ ଶରଣାର୍ଥୀ ଭାରତକୁ ଆସି ସାରିଥିବା ଏକ ରିପୋର୍ଟ ପ୍ରକାଶ ପାଇଥିଲା। ଏହି ଅବସରରେ ସେ ଶରଣାର୍ଥୀଙ୍କ ସଂଖ୍ୟା ସମ୍ପର୍କରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହରୁଙ୍କ ସହିତ ଆଲୋଚନା କରିବା ପାଇଁ ଦିଲ୍ଲୀ ଯାତ୍ରା କଲେ। ଦିଲ୍ଲୀରେ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ଭେଟିବା ପରେ ସେ ଶରଣାର୍ଥୀମାନଙ୍କର ସ୍ୱାସ୍ଥ୍ୟ ତଥା ରହଣି ନେଇ ଚିନ୍ତା ବ୍ୟକ୍ତ କରିଥିଲେ। ପଣ୍ଡିତ ନେହରୁ ଶରଣାର୍ଥୀମାନଙ୍କ ଶିକ୍ଷା ଉପରେ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରିଥିଲେ। ସେ କହିଥିଲେ ଯେ, ଶରଣାର୍ଥୀମାନେ ଇଂରାଜୀ ଭାଷାକୁ ଶିକ୍ଷାର

ମାଧ୍ୟମ କରିବା ଆବଶ୍ୟକ। କାରଣ ଇଂରାଜୀ ହିଁ ଆଗାମୀ ଦିନରେ ଅନ୍ତର୍ଜାତୀୟ ଭାଷାରେ ପରିଣତ ହେବାକୁ ଯାଉଛି। ସାକ୍ଷାତ୍‌କାର ପରେ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଲା। ମଧ୍ୟାହ୍ନ ଭୋଜନ ବେଳେ ପଣ୍ଡିତ ନେହରୁ କହିଥିଲେ ଯେ, ସରକାର ସେହିଦିନ ହିଁ ସମିତି ଗଠନ ଘୋଷଣା କରିବେ। ଶରଣାର୍ଥୀଙ୍କ ନିମନ୍ତେ ପଦକ୍ଷେପ ସବୁ ଦ୍ରୁତଗତିରେ ଗ୍ରହଣ କରାଯାଉଥିବା ଦେଖି ତେନ୍‌ଜିନ୍ ଖୁବ୍ ଖୁସି ହୋଇଯାଇଥିଲେ। ପୁଣି ସେହି ସମୟରେ ଭାରତ ଏକ ବିକାଶୋନ୍ମୁଖୀ ରାଷ୍ଟ୍ର ଥିବା ହେତୁ ତାହାର ଆର୍ଥିକ ସ୍ଥିତି ମଧ୍ୟ ସେତେ ସ୍ୱଚ୍ଛଳ ନଥିଲା। ଏହା ସତ୍ତ୍ୱେ ତିବ୍‌ବତୀୟ ଶରଣାର୍ଥୀମାନଙ୍କୁ ଆର୍ଥିକ ସହାୟତା ସହିତ ଅନ୍ୟାନ୍ୟ ଅନେକ ବାଟରେ ବିପୁଳ ପରିମାଣରେ ସାହାଯ୍ୟ ଯୋଗାଉଥିବା ହେତୁ ସେ ଭାରତ ପ୍ରତି କୃତଜ୍ଞ ହୋଇପଡୁଥିଲେ।

ଦିଲ୍ଲୀରୁ ଫେରି ଜୁନ୍‌ମାସ ୧୦ ତାରିଖରେ ସେ ଏକ ସାମ୍ବାଦିକ ସମ୍ମିଳନୀ ଡକାଇଲେ। ସେହି ସାମ୍ବାଦିକ ସମ୍ମିଳନୀରେ ସମଗ୍ର ବିଶ୍ୱର ପ୍ରାୟ ୧୩୦ ଜଣ ସାମ୍ବାଦିକ ଯୋଗ ଦେଇଥିଲେ। ଏହି ଅବସରରେ ସେ ସତର ଦଫା ରାଜିନାମାକୁ ଔପଚାରିକ ଭାବରେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ। ସେହିଦିନ ସନ୍ଧ୍ୟାରେ ଭାରତ ସରକାରଙ୍କ ପକ୍ଷରୁ ଏକ ଇସ୍ତାହାର ପ୍ରକାଶ କରାଗଲା। ଏଥିରେ କୁହାଯାଇଥିଲା ଯେ, ନିର୍ବାସନରେ ଦଲାଇ ଲାମାଙ୍କ ସରକାରକୁ ଭାରତ ସ୍ୱୀକାର କରୁନାହିଁ। ଏହା ତେନ୍‌ଜିନ୍‌ଙ୍କୁ ପ୍ରଥମେ ବିସ୍ମିତ କରିଦେଇଥିଲେ ମଧ୍ୟ ପରେ ଏହା ଭାରତର ଏକ କୂଟନୈତିକ ଇସ୍ତାହାର ବୋଲି ହୃଦ୍‌ବୋଧ କରିପାରିଥିଲେ। 'ଗଣତନ୍ତ୍ର' ଶବ୍ଦର ପ୍ରକୃତ ଅର୍ଥ ଯେ କ'ଣ ସେକଥା ସେ ପ୍ରଥମଥର ପାଇଁ ଅନୁଭବ କରିବାକୁ ସମର୍ଥ ହୋଇଥିଲେ। ତାଙ୍କର ଆହତ ମନୋଭାବ ଭାରତ ପ୍ରତି ବିପୁଳ କୃତଜ୍ଞତାରେ ଭରିଉଠିଲା। ଶରଣାର୍ଥୀ ତିବ୍‌ବତୀୟମାନଙ୍କର ଜୀବନଧାରା ଉପରେ ଭାରତ ସରକାର କୌଣସି ପ୍ରକାର ହସ୍ତକ୍ଷେପ କରୁ ନଥିଲେ। ନିଜର କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିବା ନେଇ ତେନ୍‌ଜିନ୍‌ଙ୍କର ସମ୍ପୂର୍ଣ୍ଣ ସ୍ୱାଧୀନତା ରହିଥିଲା। ଜନସାଧାରଣଙ୍କ ଅନୁରୋଧକ୍ରମେ ସେ ବିରଳା ଭବନ ପଡ଼ିଆରେ ଲୋକମାନଙ୍କୁ ସାପ୍ତାହିକ ଦର୍ଶନ ଦେବା ଆରମ୍ଭ କଲେ। ଫଳରେ ସେ ବହୁ ପ୍ରକାର ଲୋକଙ୍କୁ ଭେଟିବାର ସୁଯୋଗ ପାଇଲେ ଏବଂ ନିଜର ଦୁଃଖ କାହାଣୀ ତଥା ଚୀନାମାନଙ୍କର ନିଷ୍ଠୁରତାର କଥା ଶୁଣେଇବାକୁ ତାଙ୍କୁ ଏକ ସୁଯୋଗ ମିଳିଗଲା।

ସେ ସେପ୍ଟେମ୍ବର ମାସରେ ଦିଲ୍ଲୀ ଗଲେ। ସେତେବେଳକୁ ଶରଣାର୍ଥୀଙ୍କ ସଂଖ୍ୟା ୩୦,୦୦୦କୁ ବୃଦ୍ଧି ପାଇଥିଲା। ପଣ୍ଡିତ ନେହରୁ ତାଙ୍କର ପ୍ରତିଶ୍ରୁତିକୁ ଅକ୍ଷରେ ଅକ୍ଷରେ

ପାଳନ କରିଥିଲେ । ବର୍ତ୍ତମାନ ତେନ୍‌ଜିନ୍‌ଙ୍କର ପ୍ରମୁଖ ଲକ୍ଷ୍ୟ ଥିଲା ତିବ୍‌ବତର ସ୍ୱାଧୀନତା ଅଧିକାର ପ୍ରଶ୍ନ ମିଳିତ ଜାତିସଂଘରେ ଉପସ୍ଥାପନ କରିବା । ମାତ୍ର ଦୁର୍ଭାଗ୍ୟଜନକ ଭାବରେ, ଏହି ଗସ୍ତ ଅବସରରେ ପଣ୍ଡିତ ନେହରୁଙ୍କୁ ଭେଟିବା ପାଇଁ ସେ ଖୁବ୍ କମ୍ ସମୟ ପାଇଲେ । ତେବେ ତାଙ୍କ ସହ ସାକ୍ଷାତରୁ ଜାଣିଲେ ଯେ, ତିବ୍‌ବତୀୟ ଶରଣାର୍ଥୀମାନଙ୍କୁ ଜାଗା ଦେବା ପାଇଁ କୌଣସି ରାଜ୍ୟ ରାଜି ଅଛନ୍ତି ନା ନାହିଁ ସେକଥା ଜାଣିବା ଲାଗି ସେ ବିଭିନ୍ନ ରାଜ୍ୟର ମୁଖ୍ୟମାନଙ୍କ ନିକଟକୁ ପତ୍ର ଲେଖି ସାରିଛନ୍ତି । ଏକଥା ଶୁଣିବା ପରେ ତେନ୍‌ଜିନ୍‌ଙ୍କ ମନରେ ସନ୍ତୋଷ ଆସିଥିଲା ।

ଇତିମଧ୍ୟରେ ସେ ଅନେକ ରାଷ୍ଟ୍ରର ସରକାରମାନଙ୍କୁ ଚିଠି ଲେଖି ସାରିଥିଲେ । ପରିଶେଷରେ ମାଲେସିଆ ରାଷ୍ଟ୍ରସଂଘ ଓ ଆୟାରଲାଣ୍ଡ ସାଧାରଣତନ୍ତ୍ର ଦ୍ୱାରା ଆଗତ କରାଯାଇଥିବା ଚିଠା ପ୍ରସ୍ତାବ ଉପରେ ଅକ୍ଟୋବର ମାସରେ ମିଳିତ ଜାତିସଂଘର ସାଧାରଣ ପରିଷଦରେ ଆଲୋଚନା କରାଯାଇଥିଲା । ଭୋଟ୍ ବିଭାଜନ ହେଲେ ମଧ୍ୟ ସେହି ପ୍ରସ୍ତାବଟି ତିବ୍‌ବତ ସରକାରଙ୍କ ସପକ୍ଷରେ ଯାଇଥିଲା । ପଇଁଚାଳିଶଟି ରାଷ୍ଟ୍ର ତିବ୍‌ବତ ସପକ୍ଷରେ ଭୋଟ୍ ଦେଇଥିବା ବେଳେ ନଅଟି ରାଷ୍ଟ୍ର ବିପକ୍ଷରେ ଭୋଟ୍ ଦେଇଥିଲେ । ଛବିଶଟି ରାଷ୍ଟ୍ର ମତଦାନରୁ ବିରତ ରହିଥିଲେ । ମତଦାନରୁ ବିରତ ରହିଥିବା ରାଷ୍ଟ୍ରମାନଙ୍କ ମଧ୍ୟରେ ଭାରତ ମଧ୍ୟ ଥିଲା ।

ସେ ଦିଲ୍ଲୀରୁ ମସୌରୀ ଫେରି ଆସିଲେ । ମସୌରୀ ଫେରିବାର ଗୋଟିଏ ମାସ ପରେ ଦିଲ୍ଲୀରେ ଆଫ୍ରୋ-ଏସୀୟ କମିଟି ବୈଠକ ଅନୁଷ୍ଠିତ ହେଲା । ଏହି କମିଟି ତେନ୍‌ଜିନ୍‌ଙ୍କର ନୈତିକ ମନୋବଳକୁ ଦୃଢ଼ କରିଥିଲା । ସମଗ୍ର ଅଧିବେଶନ କାଳରେ ତିବ୍‌ବତ ପ୍ରସଙ୍ଗ ଆଲୋଚନା କରାଯାଇଥିଲା ଓ ପ୍ରତ୍ୟେକ ସଦସ୍ୟ ତୀବ୍‌ବତ୍ ସପକ୍ଷରେ ଆଲୋଚନା କରିଥିଲେ । ୧୯୫୯ ମସିହାର ଶେଷ ଆଡ଼କୁ ତିବ୍‌ବତୀୟ ଶରଣାର୍ଥୀମାନଙ୍କୁ ସାହାଯ୍ୟ କରିବାଲାଗି ଦୁଇଟି ସଂଗଠନ ପ୍ରତିଷ୍ଠା କରାଯାଇଥିଲା । ଗୋଟିଏ ଥିଲା ଆଚାର୍ଯ୍ୟ କୃପାଳିନୀଙ୍କ ଅଧ୍ୟକ୍ଷତାରେ ଗଠିତ କେନ୍ଦ୍ର ରିଲିଫ୍ କମିଟି ଓ ଅନ୍ୟଟି ଥିଲା ତିବ୍‌ବତୀୟ ଶରଣାର୍ଥୀଙ୍କ ପାଇଁ ଆମେରିକୀୟ ଜରୁରିକାଳୀନ କମିଟି । ଏହି ଉତ୍ସର୍ଗୀକୃତ ସଂସ୍ଥାଗୁଡ଼ିକ ତିବ୍‌ବତୀୟ ଶରଣାର୍ଥୀମାନଙ୍କୁ ଅମୂଲ୍ୟ ସହାୟତା ପ୍ରଦାନ କରିଥିଲେ ।

ଡିସେମ୍ବର ମାସରେ ତେନ୍‌ଜିନ୍‌ଙ୍କୁ ଆଉଥରେ ଦିଲ୍ଲୀ ଗସ୍ତ କରିବା ପାଇଁ ପଡ଼ିଲା । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କୁ ଅଳ୍ପ ସମୟ ପାଇଁ ସାକ୍ଷାତ କଲେ ଓ ମିଳିତ ଜାତିସଙ୍ଘରେ

ଗୃହୀତ ହୋଇଥିବା ପ୍ରସ୍ତାବ ସମ୍ପର୍କରେ ତାଙ୍କୁ ପୁନଶ୍ଚ ଅବଗତ କରାଇଲେ। ପଣ୍ଡିତ ନେହରୁ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କଲେ। ଅତୀତରେ ସେ ପଣ୍ଡିତ ନେହରୁଙ୍କ ମତକୁ ପ୍ରତ୍ୟାଖ୍ୟାନ କରିଥିଲେ ମଧ୍ୟ ତିବ୍‌ବତୀୟ ଶରଣାର୍ଥୀଙ୍କ ପ୍ରତି ତାଙ୍କ ମନରେ କୌଣସି ପ୍ରକାରର ପରିବର୍ତ୍ତନ ଘଟି ନଥିଲା। ସେ ମଧ୍ୟ ସେହି ଗସ୍ତ କାଳରେ ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ସାକ୍ଷାତ କରିଥିଲେ। ୧୯୫୬ ମସିହାରେ ରାଷ୍ଟ୍ରପତିଙ୍କୁ ସାକ୍ଷାତ କରିବାବେଳେ ତାଙ୍କର ଯେଉଁ ଅନୁଭୂତି ହୋଇଥିଲା ଏଥର ମଧ୍ୟ ଠିକ୍ ସେହି ସମାନ ଅନୁଭୂତି ହେଲା। ରାଷ୍ଟ୍ରପତିଙ୍କ ବିନୟୀ ସ୍ୱଭାବ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା। ଦିଲ୍ଲୀରୁ ସେ ବୋଧଗୟା ଅଭିମୁଖେ ଯାତ୍ରା କଲେ। ବୋଧଗୟାଠାରେ ସେ ଗୋଟିଏ ତିବ୍‌ବତୀୟ ପ୍ରତିନିଧି ମଣ୍ଡଳୀଙ୍କୁ ସାକ୍ଷାତ ଦେଇଥିଲେ। ସେହିଠାରେ ତାଙ୍କ ଜୀବନରେ ପ୍ରଥମଥର ପାଇଁ ଏକ ୧୬୨ ଜଣିଆ ଯୁବ ତିବ୍‌ବତୀୟ ଶିକ୍ଷାନବିଶ ଗୋଷ୍ଠୀଙ୍କୁ ସେ 'ଭିକ୍ଷୁ' ସମ୍ପ୍ରଦାୟଭୁକ୍ତ କରାଇଥିଲେ। ତା'ପରେ ସେ ସାରନାଥ ଓ ହରିଣ ପାର୍କ ଯାତ୍ରା କଲେ। ଏହି ସ୍ଥାନରେ ଭଗବାନ ବୁଦ୍ଧ ତାଙ୍କର ପ୍ରଥମ ଶିକ୍ଷା ପ୍ରଦାନ କରିଥିଲେ। ତାଙ୍କ ସାଥିରେ ତାଙ୍କର ପରିବାର ଓ ସହଚରମାନଙ୍କର ମଧ୍ୟ ଏକ ଛୋଟ ଦଳ ଥିଲା। ସେହି ଗୋଷ୍ଠୀରେ ଲିଙ୍ଗ ରିନ୍‌ପୋଚି, ତ୍ରିଜାଙ୍ଗ ରିନ୍‌ପୋଚି ଏବଂ ପୋଷାକ ପରିଚ୍ଛଦ, ବିଧିବିଧାନ ଓ ରନ୍ଧନଶାଳାର ମୁଖ୍ୟମାନେ ମଧ୍ୟ ରହିଥିଲେ।

ହରିଣ ପାର୍କରେ ପ୍ରଥମ ସପ୍ତାହବ୍ୟାପୀ ସେ ପ୍ରବଚନ ଦେଇଥିଲେ ଓ ତାହା ତାଙ୍କ ପାଇଁ ଖୁବ୍ ପ୍ରଶଂସନୀୟ ବ୍ୟାପାର ଥିଲା। ବୁଦ୍ଧ ଯେଉଁ ସ୍ଥାନରେ ୨,୫୦୦ ବର୍ଷ ପୂର୍ବେ ଧର୍ମୋପଦେଶ ପ୍ରଦାନ କରିଥିଲେ ଠିକ୍ ସେହି ସ୍ଥାନରେ ସେ ଲୋକମାନଙ୍କୁ ପ୍ରବଚନ ଦେଉଥିବାରୁ ନିଜକୁ ଖୁବ୍ ଭାଗ୍ୟବାନ ମନେ କରିଥିଲେ। ସେତେବେଳକୁ ତାଙ୍କର ମସୌରୀ ପ୍ରତ୍ୟାବର୍ତ୍ତନର ସମୟ ଆସିଯାଇଥିଲା। ସେ ନିଜର ଦଳକୁ ନେଇ ମସୌରୀ ଫେରି ଆସିଲେ। ମସୌରୀରେ ପହଞ୍ଚିବା ପରେ ଜାଣିବାକୁ ପାଇଲେ ଯେ, ଭାରତ ସରକାର ତାଙ୍କୁ ଧର୍ମଶାଳା ନାମକ ଏକ ସ୍ଥାନକୁ ସ୍ଥାନାନ୍ତରିତ କରିବା ପାଇଁ ଯୋଜନା କରିଛନ୍ତି। ଏ ଖବର ତାଙ୍କ ପାଇଁ ଖୁବ୍ ଆଶ୍ଚର୍ଯ୍ୟଜନକ ଏବଂ ଆତଙ୍କପୂର୍ଣ୍ଣ ଥିଲା। ସେ ମାନଚିତ୍ର ଆଦିରୁ ଧର୍ମଶାଳାର ତଥ୍ୟ ସଂଗ୍ରହ କରିବାକୁ ଲାଗିଲେ। ଧର୍ମଶାଳାରେ ଏକ ଶୈଳନିବାସ ଥିଲା। ତେବେ ଧର୍ମଶାଳାରୁ ଆସି ରାଜଧାନୀ ଦିଲ୍ଲୀରେ ପହଞ୍ଚିବା ଲାଗି ପୂରା ଗୋଟିଏ ଦିନ ଦରକାର ହେଉଥିଲା। ଧର୍ମଶାଳାକୁ ନେଇ ତାଙ୍କ ମନରେ ବିଭିନ୍ନ ପ୍ରକାରର ସନ୍ଦେହ ଜାତ ହେଲା। ସେ ଭାବିଲେ, ବୋଧହୁଏ ବାହ୍ୟ

ଜଗତର ଦୃଷ୍ଟିରୁ ଆଢୁଆଳରେ ତାଙ୍କୁ ରଖିବାର ଯୋଜନା କରି ଭାରତ ସରକାର ସେମାନଙ୍କ ପାଇଁ ଏଭଳି ଏକ ସ୍ଥାନର ଚୟନ କରିଛନ୍ତି । ସେ ଏକଥା ଭାରତ ସରକାରଙ୍କୁ ଜଣାଇବା ସହିତ ତାଙ୍କର ଜଣେ କର୍ମଚାରୀଙ୍କୁ ଧର୍ମଶାଳା ପଠାଇବା ଲାଗି ଅନୁମତି ଦେବାକୁ ଅନୁରୋଧ କଲେ । ଭାରତ ସରକାର ମଧ୍ୟ ତାହାକୁ ଅନୁମୋଦନ କଲେ । ଫଳରେ ସେ ଧର୍ମଶାଳା ସମ୍ପର୍କରେ ବିଭିନ୍ନ ତଥ୍ୟ ସଂଗ୍ରହ କରିବା ନିମନ୍ତେ ତଥା ସେହି ସ୍ଥାନ ପର୍ଯ୍ୟବେକ୍ଷଣ କରିବା ନିମନ୍ତେ ତାଙ୍କର ଆଭ୍ୟନ୍ତରୀଣ ମନ୍ତ୍ରୀ ପରିଷଦ (କାସାଗ୍)ର ଜେ.ଟି.କୁଣ୍ଡେଲିଙ୍ଗ ନାମକ ଜଣେ ସଦସ୍ୟଙ୍କୁ ସେଠାକୁ ପଠାଇଲେ । ପ୍ରାୟ ସପ୍ତାହେ କାଳ ସେଠାରେ ରହି ଫେରିବା ପରେ କୁଣ୍ଡେଲିଙ୍ଗ ଜଣାଇଲେ ଯେ, ମସୌରୀ ତୁଳନାରେ ଧର୍ମଶାଳା ବହୁତ ଭଲ । ଏହା ଶୁଣି ତେନ୍‌ଜିନ୍ ଧର୍ମଶାଳା ଯିବା ଲାଗି ପ୍ରସ୍ତୁତ ହୋଇଗଲେ ।

ମସୌରୀରେ ଅବସ୍ଥାନ କରୁଥିବା ସମୟରେ ୨୮ ଏପ୍ରିଲ ୧୯୫୯ ମସିହାରେ ଚତୁର୍ଦ୍ଦଶ ଦଲାଇ ଲାମା ଘୋଷଣା କରିଥିଲେ ଯେ ସେ ଯେଉଁଠାରେ ରହିବେ, ସେହିଠାରୁ ତିବ୍‌ବତର ଶାସନ ପରିଚାଳିତ ହେବ । ତେଣୁ ମହାମାନ୍ୟ ଦଲାଇ ଲାମା ମସୌରୀରେ ତିବ୍‌ବତୀୟ ସରକାରର ପୁନଃପ୍ରତିଷ୍ଠା କଲେ । ଏପ୍ରିଲ ୧୯୬୦ରେ ହିମାଚଳ ପ୍ରଦେଶର ଧର୍ମଶାଳାଠାରେ ପହଞ୍ଚି ସେଠାରେ ନିର୍ବାସିତ ତିବ୍‌ବତ ସରକାର ଗଠନ କଲେ ଏବଂ ତିବ୍‌ବତ ଲୋକମାନଙ୍କର ପ୍ରତିନିଧିମାନଙ୍କ ନାମ ଘୋଷଣା କଲେ । ପରେ ଏହି ପ୍ରତିନିଧିମାନେ 'ଆସେମ୍ଲି ଅଫ୍ ତିବେତାନ୍ ପିପୁଲ୍‌ସ ଡେପୁଟିଜ୍' ଭାବରେ ପରିଚିତ ହେଲେ । ସେବେଠାରୁ ଆଜି ପର୍ଯ୍ୟନ୍ତ ତିବ୍‌ବତର ନିର୍ବାସିତ ସରକାର ଧର୍ମଶାଳାଠାରୁ ପରିଚାଳିତ ହେଉଛି । ତଫାତ୍ ଏତିକି ହୋଇଛି ଯେ ଦଲାଇ ଲାମା ସ୍ୱଇଚ୍ଛାରେ ତିବ୍‌ବତ ଶାସନର ମୁଖ୍ୟ ପଦବୀରୁ ଅପସରି ଯାଇ ଗଣତାନ୍ତ୍ରିକ ପଦ୍ଧତିରେ ସେଠାରେ ଏକ ସମ୍ବିଧାନ ପ୍ରସ୍ତୁତ କରି ୪ ଜୁନ୍ ୧୯୯୧ଠାରୁ ତିବ୍‌ବତର ନିର୍ବାସିତ ସରକାରର ପରିଚାଳନା ଦାୟିତ୍ୱ ନିର୍ବାଚିତ ପ୍ରତିନିଧିଙ୍କ ହାତରେ ପ୍ରଦାନ କରିଛନ୍ତି ।



# (୨୦) ସଂଘର୍ଷମୟ ଜୀବନ

ସମ୍ମିଳିତ ହୋଇ ତେନ୍‌ଜିନ୍ ଏକ ମୋଟରଗାଡ଼ି ଯୋଗେ ଧର୍ମଶାଳା ଅଭିମୁଖେ ବାହାରି ପଡ଼ିଲେ। ଧର୍ମଶାଳା ଯାତ୍ରା ଗୋଟିଏ ରାତିର ରେଳଯାତ୍ରା ଥିଲା। ତାଙ୍କ ସହିତ ତାଙ୍କର ସହଯୋଗୀ, ପରିବାରବର୍ଗ ଓ ଅନୁଚରମାନେ ଥିଲେ। ତେନ୍‌ଜିନ୍ ୧୯୬୦ ମସିହା ଏପ୍ରିଲ ମାସ ୨୯ ତାରିଖରେ ମସୌରୀ ଛାଡ଼ିଲେ। ତା' ପରଦିନ ସେମାନେ ଯାଇ ହିମାଚଳ ପ୍ରଦେଶର ପଠାଣକୋଟ୍ ରେଳ ଷ୍ଟେସନରେ ପହଞ୍ଚିଲେ। ଏଠାରୁ ରେଳରେ ବସି ସେମାନଙ୍କର ଧର୍ମଶାଳା ଯିବାକୁ ସ୍ଥିର କରାଯାଇଥିଲା। ପ୍ରାୟ ତିନିଘଣ୍ଟା ରେଳଯାତ୍ରା କରିବା ପରେ ସେମାନେ ସମସ୍ତେ ଯାଇ ଧର୍ମଶାଳାର କେନ୍ଦ୍ରସ୍ଥଳରେ ପହଞ୍ଚିଲେ। ସେଠାରୁ ତାଙ୍କର ବାସଭବନ ଆଉ ଅଳ୍ପ କିଛି ମାଇଲ୍ ଦୂରତ୍ୱରେ ଥିଲା। ସେଥିଲାଗି ତାଙ୍କୁ କାର୍ ବଦଳରେ ଜିପ୍‌ରେ ଯିବା ଲାଗି ହୋଇଥିଲା। ମାକ୍‌ଲିଓଡ୍‌ଗଞ୍ଜ ଗାଁର ଠିକ୍ ଉପରିଭାଗରେ ତାଙ୍କର ବାସଭବନ ରହିଥିଲା। ମାକ୍‌ଲିଓଡ୍‌ଗଞ୍ଜ ଗାଁରେ ତାଙ୍କୁ ସ୍ୱାଗତ କରିବା ପାଇଁ ଏକ ନୂଆ ବାଉଁଶର ଫାଟକ ତିଆରି କରାଯାଇଥିଲା ଓ ତା'ର ଉପରିଭାଗରେ ସୁନେଲୀ ରଙ୍ଗରେ 'ସ୍ୱାଗତମ୍' ବୋଲି ଲେଖାଯାଇଥିଲା। ସେଠାରୁ ତାଙ୍କ ବାସଭବନର ଦୂରତା ଥିଲା ପ୍ରାୟ ୧ ମାଇଲ୍ ଓ ଏହାର ନାମ 'ସ୍ୱର୍ଗ ଆଶ୍ରମ' ରଖାଯାଇଥିଲା। ସେହି ଘରକୁ ଲଗେଇ ଅନେକଗୁଡ଼ିଏ ଛୋଟଘର ଥିଲା। ସେଥିମଧ୍ୟରୁ ଗୋଟିଏ ରୋଷେଇ ଘର ମଧ୍ୟ ଥିଲା।

ଧର୍ମଶାଳାରେ ପହଞ୍ଚିବା ପରେ ସେ ଏହାର ପ୍ରାକୃତିକ ଦୃଶ୍ୟାବଳୀକୁ ଦେଖି ଖୁବ୍ ଖୁସି ହୋଇଯାଇଥିଲେ। ସେହି ସମୟରେ ଧର୍ମଶାଳାରେ ତିବ୍‌ବତୀୟ ଶରଣାର୍ଥୀଙ୍କ ସଂଖ୍ୟା ପାଖାପାଖି ଶହେ କିମ୍ବା ତା'ଠାରୁ କମ୍ ଥିଲା। ତାଙ୍କ ବାସଭବନରେ ତାଙ୍କ ସହିତ ଥିଲେ ତାଙ୍କର ମା' ଓ ତାଙ୍କୁ ଉପହାର ସ୍ୱରୂପ ମିଳିଥିବା ଦୁଇଟି ଲାସୋ ଆଲ୍‌ପାନ୍‌ସୋ କୁକୁର। ଧର୍ମଶାଳାକୁ ତେନ୍‌ଜିନ୍ ଯିବାବେଳେ ତାଙ୍କ ସହିତ ଭାରତ ସରକାରଙ୍କ ଯୋଗସୂତ୍ର ରକ୍ଷାକାରୀ ଶ୍ରୀ ନାୟାର ଓ ବହୁସଂଖ୍ୟକ ଭାରତୀୟ ଅଙ୍ଗରକ୍ଷୀ ଯାତ୍ରା କରିଥିଲେ। ଶ୍ରୀ ନାୟାରଙ୍କ ସହିତ ତେନ୍‌ଜିନ୍‌ଙ୍କର ଖୁବ୍ ଭଲ ସମ୍ପର୍କ ଥିଲା। ଶ୍ରୀ ନାୟାର ତେନ୍‌ଜିନ୍‌ଙ୍କୁ ଇଂରାଜୀ ଶିଖାଇବା ନିମନ୍ତେ ଆଗ୍ରହ ପ୍ରକାଶ କରିଥିଲେ। ନିଜେ

ତେନ୍‌ଜିନ୍ ମଧ୍ୟ ଇଂରାଜୀ ଶିକ୍ଷାର ଗୁରୁତ୍ୱ ଉପଲବ୍ଧି କରି ତାହା ଶିଖିବା ଆରମ୍ଭ କରିଦେଲେ । ସେତିକି ନୁହେଁ, ତାଙ୍କର ଭାଇ ତେନ୍‌ଜିନ୍ ଚୋଗ୍ୟାଲଙ୍କୁ ମଧ୍ୟ ଦାର୍ଜିଲିଂର ନର୍ଥ ପଏଣ୍ଟ ନାମକ ଗୋଟିଏ ଇଂରାଜୀ ମାଧ୍ୟମ ବିଦ୍ୟାଳୟକୁ ପାଠ ପଢ଼ିବାପାଇଁ ପଠାଇଥିଲେ ।

ଧର୍ମଶାଳାରେ ରହିବାର ପ୍ରଥମ ବର୍ଷ ସେ ଇଂରାଜୀ ଶିକ୍ଷା କରିବା ସହିତ ଧର୍ମଶାସ୍ତ୍ର ଅଧ୍ୟୟନ କରିବାରେ ଗଭୀର ମନୋନିବେଶ କରିଥିଲେ । କିଶୋର ବୟସରେ ପ୍ରଥମେ ଦେଖିଥିବା ଅନେକ ତିବ୍‌ବତୀୟ ଧର୍ମଗ୍ରନ୍ଥର ସେ ସମୀକ୍ଷା କରିଥିଲେ । ସେହି ସମୟରେ ନିର୍ବାସନରେ ଆସିଥିବା ବିଭିନ୍ନ ପରମ୍ପରାର ଆଧ୍ୟାତ୍ମିକ ଗୁରୁଙ୍କଠାରୁ ସେ ଶିକ୍ଷା ଗ୍ରହଣ କରିଥିଲେ । ଧର୍ମଶାଳା ପହଞ୍ଚିବାର ପନ୍ଦର ଦିନ ମଧ୍ୟରେ ତାଙ୍କ ଉଦ୍ୟମରେ ତିବ୍‌ବତୀୟ ଶରଣାର୍ଥୀ ଶିଶୁଙ୍କ ନିମନ୍ତେ ଏକ ନର୍ସରୀ ସ୍କୁଲ୍ ଖୋଲାଯାଇ ପାରିଥିଲା । ଏକ ପରିତ୍ୟକ୍ତ ଛୋଟ କୋଠାଘରେ ଏହି ସ୍କୁଲ ଆରମ୍ଭ କରାଯାଇଥିଲା । ଏହି ସ୍କୁଲ୍‌ର ପରିଚାଳନା ଭାର ସେ ତାଙ୍କର ବଡ଼ ଭଉଣୀ ସେରିଙ୍ଗ ଡୋଲମାଙ୍କ ଉପରେ ନ୍ୟସ୍ତ କରିଥିଲେ । ସେରିଙ୍ଗ ଡୋଲମା ଜଣେ ଦୃଢ଼ମନା ମହିଳା ଥିଲେ ଓ ସେ ଖୁବ୍ ସହଜରେ ନିଜକୁ ଜଣେ ଉତ୍କୃଷ୍ଟ ନାରୀନେତ୍ରୀ ରୂପେ ପ୍ରମାଣିତ କରିପାରିଥିଲେ । ଦୁଃଖ, ନୈରାଶ୍ୟ ନିକଟରେ ହାରମାନିବା ତାଙ୍କୁ କେବେ ବି ଜଣା ନଥିଲା । ସେ ଜଣେ କଡ଼ା ସ୍ୱଭାବର ମହିଳା ଥିଲେ । ମାତ୍ର ହୃଦୟଟି ତାଙ୍କର ଖୁବ୍ କୋମଳ ଓ ଦୟାର୍ଦ୍ର ଥିଲା ।

ଦିନକୁଦିନ ତିବ୍‌ବତୀୟ ଅନାଥଶିଶୁଙ୍କ ସଂଖ୍ୟା ବଢ଼ିବାକୁ ଲାଗୁଥିଲା । ଏମିତି ଏକ ସମୟ ଆସିଲା ଯେତେବେଳେ ଗୋଟିଏ ମାତ୍ର ଶୟନ କକ୍ଷରେ ୧୨୦ ଜଣ ଶିଶୁଙ୍କୁ ରଖିବା ପାଇଁ ପଡୁଥିଲା । ଅପରପକ୍ଷରେ, ତିବ୍‌ବତର ଅନାଥଶିଶୁମାନଙ୍କ ସମସ୍ୟାର ସମାଧାନ କରିବାକୁ ତେନ୍‌ଜିନ୍‌ଙ୍କ ପକ୍ଷରେ କିମ୍ବା ଭାରତ ସରକାରଙ୍କ ନିକଟରେ ପ୍ରଚୁର ସମ୍ବଳ ନଥିଲା । ତେଣୁ ତେନ୍‌ଜିନ୍ ଚିନ୍ତାକଲେ, ଯଦି ବିଦେଶରେ କେହି ଶିଶୁମାନଙ୍କୁ ପୋଷ୍ୟ ସନ୍ତାନ କରି ନିଅନ୍ତି ତା'ହେଲେ ସେମାନଙ୍କର ରକ୍ଷଣାବେକ୍ଷଣ ଠିକ୍‌ଭାବରେ ହୋଇପାରିବ । ଏକଥା ଭାବି ସେ ଡକ୍ଟର ଆଶ୍ଚମ୍ୟାନ୍ ନାମକ ତାଙ୍କର ସ୍ୱିଜରଲାଣ୍ଡ୍‌ର ଜଣେ ବନ୍ଧୁଙ୍କ ସହିତ ଆଲୋଚନା କଲେ ଓ ଏ ଦିଗରେ କି ପଦକ୍ଷେପ ନିଆଯାଇପାରିବ ସେ ବିଷୟରେ ଚିନ୍ତା କରିବା ଲାଗି ଅନୁରୋଧ କଲେ । ସବୁଠୁ ଖୁସିର ବିଷୟ, ସ୍ୱିଜରଲାଣ୍ଡ ସରକାର ପ୍ରଥମରୁ ତାଙ୍କ ପ୍ରତି ସହଯୋଗୀ ମନୋଭାବ ପୋଷଣ କଲେ ଓ ୨୦୦ ଜଣ ଶିଶୁଙ୍କୁ ପୋଷ୍ୟ ଭାବରେ ଗ୍ରହଣ କରିବାକୁ

ସମ୍ମତି ପ୍ରଦାନ କଲେ। ଏହିପରି ଭାବରେ ସ୍ୱିଜରଲାଣ୍ଡ ତାଙ୍କୁ ବହୁପ୍ରକାର ସାହାଯ୍ୟ କରିଥିଲା। ଏମିତିକି, ୧,୦୦୦ ବୟସ୍କ ଶରଣାର୍ଥୀଙ୍କର ପୁନର୍ବାସ ପାଇଁ ମଧ୍ୟ ସେଠାରେ ବ୍ୟବସ୍ଥା କରାଯାଇଥିଲା।

ଧର୍ମଶାଳାରେ ସେ କେତେକ ଆଇନ୍ ବିଶାରଦଙ୍କ ସଂସ୍ପର୍ଶରେ ଆସିଥିଲେ ଓ ସେମାନଙ୍କ ସହିତ ତିବ୍‌ବତର ସମସ୍ୟା ନେଇ ବିଚାର ବିମର୍ଶ କରିଥିଲେ। ଅନ୍ତର୍ଜାତୀୟ ଆଇନ୍ ବିଶାରଦମାନେ ଅନୁସନ୍ଧାନ କରିଥିବା ବିବରଣୀର ଫଳାଫଳ ୧୯୬୦ ମସିହା ଅଗଷ୍ଟ ମାସରେ ଜେନେଭାଠାରେ ପ୍ରକାଶିତ ହୋଇଥିଲା। ତିବ୍‌ବତୀୟ ଦୃଷ୍ଟିକୋଣକୁ ଆଇନ୍ ବିଶାରଦମାନେ ପୂର୍ଣ୍ଣମାତ୍ରାରେ ସମର୍ଥନ କରିଥିଲେ। ୧୯୬୦ ମସିହାରେ ସମ୍ପୂର୍ଣ୍ଣ ଭାବରେ ତେନ୍‌ଜିନ୍ ତିବ୍‌ବତୀୟ ପ୍ରଶାସନିକ ସଂସ୍କାର କାର୍ଯ୍ୟରେ ବ୍ୟସ୍ତ ରହିଲେ। ଆଭ୍ୟନ୍ତରୀଣ ମନ୍ତ୍ରୀପରିଷଦ ଓ ଅନ୍ୟମାନଙ୍କ ସହିତ ଏକତ୍ର ମିଶି ଗଣତାନ୍ତ୍ରିକ ପ୍ରକ୍ରିୟା ଆରମ୍ଭ କଲେ। ଏହା ତାଙ୍କ ପାଇଁ ଖୁବ୍ କଷ୍ଟସାଧ୍ୟ ହୋଇଥିଲା। ସେପ୍ଟେମ୍ବର ୨ ତାରିଖରେ ସେ ତିବ୍‌ବତୀୟ ଜନପ୍ରତିନିଧି ଆୟୋଗ ଉଦ୍‌ଘାଟନ କଲେ। ଏହା ୟୁ-ସାଙ୍ଗ, ଆମ୍‌ଡୋ ଓ ଖାମ୍‌ର ନିର୍ବାଚିତ ପ୍ରତିନିଧିମାନଙ୍କ ନିମନ୍ତେ ମଧ୍ୟ ଖୋଲା ଥିଲା। ସେହିଭଳି ତିବ୍‌ବତୀୟ ବୌଦ୍ଧଧର୍ମ ଭିତ୍ତିରେ ଥିବା ପ୍ରତ୍ୟେକ ପ୍ରଧାନ ପରମ୍ପରା ପାଇଁ ଏହି ସଭାରେ ଆସନ ରଖାଯାଇଥିଲା। ପରବର୍ତ୍ତୀ କାଳରେ ପୁରାତନ 'ବନ୍' ଧର୍ମର ଅନୁଗାମୀମାନଙ୍କୁ ମଧ୍ୟ ଏଥିରେ ସାମିଲ୍ କରାଗଲା। ଏହି ନୂତନ ବ୍ୟବସ୍ଥା ଖୁବ୍ ଶୀଘ୍ର ଲୋକମାନଙ୍କୁ ଆକୃଷ୍ଟ କରିବାରେ ଲାଗିଲା। ଲୋକମାନେ ଏଭଳି ଉତ୍ପୀଡ଼ିତ ହୋଇପଡ଼ିଥିଲେ ଯେ, ଧର୍ମଶାଳାରେ ଥିବା ସରକାର ପ୍ରକୃତ କମ୍ୟୁନିଷ୍ଟବାଦ ଅନୁସାରେ କାର୍ଯ୍ୟ କରୁଛି ବୋଲି ଲୋକେ କୁହାକୁହି ହେଲେ।

ପ୍ରଥମ ବର୍ଷଗୁଡ଼ିକରେ ତେନ୍‌ଜିନ୍ କିଛିମାତ୍ରାରେ ଆରାମଦାୟକ ଜୀବନଯାପନ କରିବାକୁ ସମର୍ଥ ହୋଇଥିଲେ। ମାତ୍ର ଅନ୍ୟ ସରକାରୀ କର୍ମଚାରୀଙ୍କ ପକ୍ଷରେ ତାହା ଆଦୌ ସମ୍ଭବପର ହୋଇ ନଥିଲା। ବିଶେଷକରି, ବୟସ୍କ ଲୋକମାନେ ଖୁବ୍ ଦୟନୀୟ ଜୀବନଯାପନ କରୁଥିଲେ। ଅନେକଙ୍କୁ ଗୋଶାଳାରେ ଆଶ୍ରୟ ନେବା ପାଇଁ ପଡୁଥିଲା। ତଥାପି ସେମାନେ ସେ ପ୍ରକାର ଜୀବନକୁ ଅତି ଆନନ୍ଦ ମନରେ ଗ୍ରହଣ କରି ନେଇଥିଲେ। କୌଣସି ପ୍ରକାର କୁଣ୍ଠା ପ୍ରକାଶ ନ କରି ସେମାନେ ତେନ୍‌ଜିନ୍‌ଙ୍କର ପ୍ରତ୍ୟେକ କାର୍ଯ୍ୟକୁ ସମର୍ଥନ କରୁଥିଲେ। ଧର୍ମର ସୁରକ୍ଷା କରିବା ତେନ୍‌ଜିନ୍‌ଙ୍କର ମୁଖ୍ୟ କର୍ତ୍ତବ୍ୟ ଥିଲା। ପ୍ରାଥମିକ ଭାବରେ ଭୁଟାନ୍ ସୀମାନ୍ତ ନିକଟରେ ବକ୍ସା ଦୁଆରଠାରେ

ପୁରୁଣା ଯୁଦ୍ଧବନ୍ଦୀ ଶିବିରରେ ୩୦୦ ଜଣ ସନ୍ନ୍ୟାସୀଙ୍କର ଏକ ବିଦ୍ୱାନ ଗୋଷ୍ଠୀଙ୍କୁ ରଖାଇବା ପାଇଁ ବ୍ୟବସ୍ଥା କରିବାକୁ ଭାରତ ସରକାରଙ୍କୁ ଅନୁରୋଧ କଲେ ଓ ଭାରତ ସରକାର ମଧ ତାହାକୁ ସମର୍ଥନ କଲେ। ତେବେ ଧର୍ମ ଏକ ଉଚ୍ଚମାନର ବିଦ୍‌ବତ୍ତା ଓ ଏହା ପାଣ୍ଡିତ୍ୟ ଉପରେ ନିର୍ଭର କରେ ବୋଲି ବୁଝାଇଦେବା ପରେ ଭାରତ ସରକାର ସବୁ ପରମ୍ପରାର ୧୫୦୦ ବିଦ୍ୱାନଙ୍କ ପାଇଁ ଅର୍ଥ ବ୍ୟବସ୍ଥା ମଞ୍ଜୁର କରିବାକୁ ପ୍ରତିଶ୍ରୁତି ଦେଲେ। ତେବେ ବକ୍ସା ଦୁଆରର ପରିସ୍ଥିତି ସ୍ୱାସ୍ଥ୍ୟାନୁକୂଳ ନଥିଲା। କିଛି ମାସ ମଧ୍ୟରେ ଶତାଧିକ ସନ୍ନ୍ୟାସୀ ରାଜଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ। ତେନ୍‌ଜିନ୍ କର୍ମବ୍ୟସ୍ତ ରହି ସେମାନଙ୍କୁ ଭେଟିବା ଲାଗି ଯାଇପାରୁ ନଥିଲେ। ତେବେ ପତ୍ର ଲେଖି ଓ ଟେପ୍-ବାର୍ତ୍ତା ପ୍ରେରଣ କରି ସେମାନଙ୍କର ମନୋବଳ ବଢ଼ାଉଥିଲେ।

ଶରଣାର୍ଥୀ ଜୀବନର ପ୍ରାଥମିକ ବର୍ଷଗୁଡ଼ିକରେ ଅର୍ଥାଭାବ ହିଁ ସେମାନଙ୍କର ସବୁଠୁ ବଡ଼ ସମସ୍ୟା ଥିଲା। ଭାରତ ଓ ବିଦେଶୀ ସ୍ୱେଚ୍ଛାସେବୀ ସଂସ୍ଥାଗୁଡ଼ିକ କେତେକାଂଶରେ ଅର୍ଥାଭାବ ଦୂର କରୁଥିଲେ। ତେବେ ପ୍ରଶାସନିକ କାର୍ଯ୍ୟ ତୁଲାଇବା ପାଇଁ ତେନ୍‌ଜିନ୍ ଏକ ନୂତନ ଉପାୟ ଚିନ୍ତାକଲେ। ସେ ଜଣ ପିଛା ପ୍ରତିମାସରେ ଗୋଟିଏ ଟଙ୍କାର ସ୍ୱେଚ୍ଛାକୃତ ସ୍ୱାଧୀନତା ଟିକସ ବସାଇବା ସହିତ ବେତନ ଭୋଗୀ ପ୍ରତ୍ୟେକ ଶ୍ରମିକଙ୍କ ଉପରେ ମାସିକ ଦୁଇ ପ୍ରତିଶତ ଆୟକର ବସାଇଲେ। ଅବଶ୍ୟ ଏଥିରୁ ଯାହା ମିଳିଲା ତାହା ଆଦୌ ଯଥେଷ୍ଟ ନଥିଲା। ପୂର୍ବରୁ ୧୯୫୦ ମସିହାରେ କେନ୍‌ରାପ ତେନ୍‌ଜିନ୍ ସିକିମ୍‌ରେ ବହୁ ମୂଲ୍ୟବାନ ଧାତୁ ଜମା ରଖିଥିଲେ। ତାହାକୁ ସେ କଲିକତାରେ ବିକ୍ରି କରିଦେଲେ। ସେଥିରୁ ଏକ ବଡ଼ ପରିମାଣର ଅର୍ଥରାଶି ମିଳିଲା। ଏହି ଅର୍ଥକୁ ଅନେକ ଉଦ୍ୟୋଗରେ ବିନିଯୋଗ କରାଗଲା। ସେଥିମଧ୍ୟରୁ ଗୋଟିଏ ଥିଲା ଲୁହା ପାଇପ୍ ତିଆରି କାରଖାନା ଏବଂ ଅନ୍ୟଟି କାଗଜକଳ ସହିତ ସମ୍ପୃକ୍ତ ଏକ ବ୍ୟବସାୟ। ମାତ୍ର ଅତି ଦୁର୍ଭାଗ୍ୟର ବିଷୟ, ତେନ୍‌ଜିନ୍ ପୁଞ୍ଜି ଲଗେଇଥିବା କ୍ଷେତ୍ରଗୁଡ଼ିକ ବିଫଳ ହେବାରୁ ତାଙ୍କର ବହୁଭାଗ ପୁଞ୍ଜି ବୁଡ଼ିଗଲା। ତେବେ ବୁଡ଼ିଯାଇଥିବା ମୂଳ ପୁଞ୍ଜିରୁ ପ୍ରାୟ ଏକ ଅଷ୍ଟମାଂଶରୁ କମ୍ ଉଦ୍ଧାର କରିବାକୁ ସେ ସକ୍ଷମ ହେଲେ। ସେହି ପୁଞ୍ଜିକୁ ନେଇ ୧୯୬୪ ମସିହାରେ 'ମହାମହିମ ଦଲାଇ ଲାମା ଦାତବ୍ୟ ନ୍ୟାସ' ଗଠନ କରାଗଲା।

ଧର୍ମଶାଳାରେ ପ୍ରଥମ ଗ୍ରୀଷ୍ମକାଳରେ ତାଙ୍କୁ ନିଜର ଚିତ୍ତବିନୋଦନ ପାଇଁ କିଛି ସମୟ ମିଳିଥିଲା। ଆଉ ସେ ମଧ୍ୟ ସେହି ସମୟର ଭରପୂର ସଦୁପଯୋଗ କରିଥିଲେ।

ସ୍ୱାସ୍ଥ୍ୟକୁ ଭଲ ରଖିବାପାଇଁ ସେ ପ୍ରତିଦିନ ସନ୍ଧ୍ୟାରେ ବ୍ୟାଡ୍‌ମିଣ୍ଟନ ଖେଳୁଥିଲେ । ଅନେକ ସମୟରେ ସେ ସନ୍ନ୍ୟାସୀମାନଙ୍କ ପାଇଁ ଉଦ୍ଦିଷ୍ଟ ଲମ୍ବା ଓ ଢିଲା ପୋଷାକ ପିନ୍ଧୁ ନଥିଲେ । ଶୀତକାଳରେ ହାଡ଼ଭଙ୍ଗା ଶୀତ ସତ୍ତ୍ୱେ ସେ ଅନ୍ୟମାନଙ୍କ ସହିତ ମିଶି ବରଫ ଉପରେ ଖେଳି ଆନନ୍ଦ ଉପଭୋଗ କରୁଥିଲେ । ଅନେକ ସମୟରେ ଫୁଟ୍‌ବଲ୍ ଖେଳରେ ମଧ୍ୟ ଭାଗ ନେଉଥିଲେ । ପାହାଡ଼ ଚଢ଼ିବାକୁ ସେ ଖୁବ୍ ଭଲ ପାଉଥିଲେ । ନିକଟରେ ଧଉଳାଦର ପର୍ବତମାଳା ଥିଲା ଯାହାର ଉଚ୍ଚତା ସତର ହଜାର ଫୁଟରୁ ଅଧିକ ଥିଲା । ସେହି ପର୍ବତମାଳାର ଶୃଙ୍ଗ ଉପରକୁ ଚଢ଼ିବା ଖୁବ୍ କଷ୍ଟକର ବ୍ୟାପାର ଥିଲା । ଏହା ସତ୍ତ୍ୱେ ସେ ତାହାର ଶୃଙ୍ଗ ପର୍ଯ୍ୟନ୍ତ ଚଢ଼ି ଚଢ଼ି ଯାଉଥିଲେ ।

ଏହି ସମୟରେ ସେ ଆଉ ଏକ କାର୍ଯ୍ୟ କରୁଥିଲେ । ଡେଭିଡ୍ ହୱାର୍ଥ ନାମକ ଜଣେ ଇଂରାଜୀ ଲେଖକଙ୍କ ସହିତ ମିଶି ସେ ତାଙ୍କର ଆତ୍ମଜୀବନୀ ପୁସ୍ତକ *My Land and My People* ରଚନା କରିବାରେ ମନୋନିବେଶ କରୁଥିଲେ ।



# (୨୧) ଶରଣାର୍ଥୀଙ୍କ ଥଇଥାନ

୧୯୬୧ ମସିହାରେ ସରକାର 'ତିବ୍‌ବତର ଚିଠା ସମ୍ବିଧାନ' ନାମରେ ଗୋଟିଏ ସଂକ୍ଷିପ୍ତ ବିବରଣୀ ପ୍ରକାଶ କରିଥିଲେ। ସମସ୍ତ ତିବ୍‌ବତୀୟ ଲୋକଙ୍କୁ ସେମାନଙ୍କ ମୁକ୍ତଭାବନା ଓ ସମାଲୋଚନା ବ୍ୟକ୍ତ କରିବାକୁ ଅନୁରୋଧ କରାଯାଇଥିଲା। ଏହା ବହୁ ସଂଖ୍ୟକ ମତାମତ ମଧ୍ୟ ହସ୍ତଗତ ହୋଇଥିଲା। ଏହି ସବୁ ମନ୍ତବ୍ୟରେ ଲୋକମାନେ ମୁଖ୍ୟତଃ ଦଲାଇ ଲାମାଙ୍କ ପଦମର୍ଯ୍ୟାଦା ସମ୍ପର୍କରେ ମତ ଦେଇଥିଲେ। ତେବେ ଦେଶରେ ଗଣତାନ୍ତ୍ରିକ ଶୃଙ୍ଖଳା ପ୍ରବର୍ତ୍ତନ ନିମନ୍ତେ ତେନ୍‌ଜିନ୍ ସମ୍ବିଧାନରେ ଏକ ଔପଚାରିକ ନୀତି ପ୍ରଣୟନ କରିଥିଲେ। ଏହି ବ୍ୟବସ୍ଥା ଅନୁଯାୟୀ ଜାତୀୟ ଆସେମ୍ବ୍ଲି ଚାହିଁଲେ ଦୁଇ ତୃତୀୟାଂଶ ସଂଖ୍ୟାଗରିଷ୍ଠତାରେ ଗାଦି ଆରୂଢ଼ ଦଲାଇ ଲାମାଙ୍କୁ ମଧ୍ୟ ବହିଷ୍କାର କରିପାରିବେ। ମାତ୍ର ତେନ୍‌ଜିନ୍‌ଙ୍କର ଏହି ନିଷ୍ପତ୍ତି ଲୋକମାନଙ୍କୁ ହତଚକିତ କରି ଦେଇଥିଲା। ତେବେ ତିବ୍‌ବତୀୟ ବୌଦ୍ଧଧର୍ମର ନୀତି ସହିତ ଗଣତନ୍ତ୍ରର ପ୍ରତ୍ୟକ୍ଷ ସମ୍ପର୍କ ରହିଛି ବୋଲି ସେ ଲୋକମାନଙ୍କୁ ସହଜରେ ବୁଝାଇବାକୁ ସମର୍ଥ ହୋଇଥିଲେ।

ସେହିବର୍ଷ ପ୍ରଥମାର୍ଦ୍ଧରେ ସେ ରାସ୍ତା ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ଥିବା ଲୋକମାନଙ୍କୁ ଭେଟିବା ପାଇଁ ଗଲେ। ଏତଦ୍‌ବ୍ୟତୀତ, ସେ ବିଲାକୁପିଠାରେ ସ୍ଥାପିତ ହୋଇଥିବା ନୂତନ ବସତି ପରିଦର୍ଶନରେ ମଧ୍ୟ ଯାଇଥିଲେ। ସେହି ବସତିକୁ ଏହା ତାଙ୍କର ପ୍ରଥମ ପରିଦର୍ଶନ ଥିଲା। ସେଠାକାର ଲୋକମାନେ ଖୁବ୍ ଦୟନୀୟ ଅବସ୍ଥାରେ କାଳାତିପାତ କରୁଥିଲେ। ସେମାନେ ସମସ୍ତେ କଳାକାଠ ପଡ଼ିଯିବା ସହିତ ଖୁବ୍ ଶୀର୍ଣ୍ଣକାୟ ଦିଶୁଥିଲେ। ତେନ୍‌ଜିନ୍ ସେମାନଙ୍କୁ ଆଶ୍ୱାସନା ଦେବା ସହିତ ସେମାନେ ପୁନଶ୍ଚ ନିଜର ଅଧିକାର ଫେରି ପାଇବେ ବୋଲି କହି ମନୋବଳ ବଢ଼େଇବାକୁ ଚେଷ୍ଟା କରିଥିଲେ। ସୌଭାଗ୍ୟବଶତଃ, ସେମାନଙ୍କର ଅବସ୍ଥା ଧୀରେଧୀରେ ବଦଳିବାରେ ଲାଗିଲା। ଏହାର କାରଣ ଥିଲା ସେମାନେ ତେନ୍‌ଜିନ୍‌ଙ୍କୁ ଗଭୀର ଭାବରେ ଭଲ ପାଉଥିଲେ ଓ ଶ୍ରଦ୍ଧା କରୁଥିଲେ।

ଇତି ମଧ୍ୟରେ ଭାରତର ଅନେକ ପ୍ରଦେଶରୁ ତିବ୍‌ବତୀୟ ଶରଣାର୍ଥୀମାନଙ୍କ ପ୍ରତି ଉଦାର ମନୋଭାବ ପ୍ରଦର୍ଶନ କରାଯାଇଥିଲା, ଯାହା ଫଳରେ ୧୯୬୦ ଦଶକର

ପ୍ରାରମ୍ଭ କାଳରେ ତେନ୍‌ଜିନ୍ ୨୦ରୁ ଅଧିକ ପୁନର୍ବାସ କେନ୍ଦ୍ର ପ୍ରତିଷ୍ଠା କରିବାରେ ସକ୍ଷମ ହୋଇଥିଲେ। ଏଥିସହିତ ରାସ୍ତା ନିର୍ମାଣ କାର୍ଯ୍ୟରେ ନିୟୋଜିତ ଲୋକମାନଙ୍କୁ କାର୍ଯ୍ୟରୁ ପ୍ରତ୍ୟାହାର କରି ନେଇଥିଲେ। ସେମାନଙ୍କୁ ଦିଆଯାଇଥିବା ବସତିର ବହୁଭାଗ ଦକ୍ଷିଣ ଭାରତରେ ଅବସ୍ଥିତ ଥିଲା। ଉତ୍ତର ଭାରତ ଅପେକ୍ଷା ଦକ୍ଷିଣ ଭାରତର ଜଳବାୟୁ ସାଧାରଣତଃ ଅଧିକ ଉତ୍ତପ୍ତ ହୋଇଥିବା ହେତୁ ପ୍ରାଥମିକ ପର୍ଯ୍ୟାୟରେ କେବଳ ସୁସ୍ଥ ସବଳ ଲୋକମାନଙ୍କୁ ସେଠାକୁ ପଠାଇବା ନିମନ୍ତେ ସେ ସ୍ଥିରକଲେ। ମାତ୍ର କ୍ରମଶଃ ଉତ୍ତାପ ବଢ଼ିବା ହେତୁ ଲୋକମାନଙ୍କର ରହିବା ପ୍ରାୟତଃ ଅସମ୍ଭବ ହୋଇପଡ଼ିଲା। ଫଳରେ ଏକ ଗ୍ରୀଷ୍ମପ୍ରଧାନ ଅଞ୍ଚଳରେ ଜମିଗ୍ରହଣ କରି ସେ ଠିକ୍ କରିଛନ୍ତି ନା ନାହିଁ ସେ ବିଷୟରେ ଚିନ୍ତିତ ହୋଇପଡ଼ିଲେ। ଏହାସତ୍ତ୍ୱେ ଲୋକମାନେ ଯେ ପରିସ୍ଥିତି ସହିତ ଖାପଖୁଆଇ ପାରିବେ ତାହାକୁ ନେଇ ତାଙ୍କ ଭିତରେ ଦୃଢ଼ ବିଶ୍ୱାସ ରହିଥିଲା। ସେ ଯେତେବେଳେ ସେହି ସବୁ ଶିବିର ପରିଦର୍ଶନ କରୁଥିଲେ ଖୁବ୍ ଦୁଃଖିତ ହୋଇପଡୁଥିଲେ। ଲୋକମାନେ ସେମାନଙ୍କର ଅତୀତକୁ ଭୁଲିବା ଲାଗି ଚେଷ୍ଟା କରୁଥିଲେ। ନିଜେ ତେନ୍‌ଜିନ୍ ମଧ କିଭଳି ଅତୀତକୁ ଭୁଲି ବର୍ତ୍ତମାନ ସହିତ ସାମିଲ୍ ହୋଇପାରିବେ ସେହି ବିଷୟରେ ଚିନ୍ତା କରୁଥିଲେ। ଏଭଳି ପରିସ୍ଥିତିରେ ସେ ଶରଣାର୍ଥୀମାନଙ୍କୁ ସମ୍ବୋଧିତ କରି କହିଥିଲେ ଯେ, ତିବ୍‌ବତର ଭବିଷ୍ୟତ ଆମ ଶରଣାର୍ଥୀମାନଙ୍କ ଉପରେ ନିର୍ଭର କରୁଛି। ଏକ ବଳିଷ୍ଠ ସମ୍ପ୍ରଦାୟ ଗଢ଼ିବା ଦ୍ୱାରା ହିଁ ଆମେ ତାହା କରିପାରିବା। ସେଥିଲାଗି ଉଭୟ ଶିକ୍ଷା ଏବଂ ବିବାହର ପ୍ରୟୋଜନ ରହିଛି ଓ ଗୁରୁତ୍ୱ ମଧ ରହିଛି। ସେ ମହିଳାମାନଙ୍କୁ ପରାମର୍ଶ ଦେଇ କହିଲେ ଯେ, ସେମାନେ ତିବ୍‌ବତୀୟ ପୁରୁଷମାନଙ୍କୁ ବିବାହ କରିବା ଆବଶ୍ୟକ। ସେପରି କରାଗଲେ ସେମାନଙ୍କ ଔରସରୁ ତିବ୍‌ବତୀୟ ଶିଶୁମାନେ ଜନ୍ମ ଗ୍ରହଣ କରିବେ। ଯଦ୍ୱାରା ତିବ୍‌ବତୀୟ ଧର୍ମ, ସଂସ୍କୃତି, ଜୀବନ ଧାରଣର ଶୈଳୀ ସଂରକ୍ଷିତ ହୋଇ ରହିପାରିବ। ଜଣେ ସନ୍ନ୍ୟାସୀଙ୍କ ପକ୍ଷରେ ଏଭଳି ପରାମର୍ଶ ଦେବା ଅସମୀଚୀନ ହୋଇଥିଲେ ମଧ ଏକ ବୃହତ୍ତର ସ୍ୱାର୍ଥକୁ ଦୃଷ୍ଟିରେ ରଖି ତେନ୍‌ଜିନ୍ ଏଭଳି ଉପଦେଶ ଦେବାକୁ ବାଧ ହୋଇଥିଲେ।

ନୂତନ ବସତିଗୁଡ଼ିକରେ ୧୯୬୦ରୁ ୧୯୬୫ ମସିହା ମଧରେ ଶରଣାର୍ଥୀମାନଙ୍କୁ ଅବସ୍ଥାପିତ କରାଗଲା। ତେନ୍‌ଜିନ୍ ନିୟମିତ ଏହିସବୁ ଅଞ୍ଚଳକୁ ପରିଦର୍ଶନରେ ଯାଉଥିଲେ ଏବଂ ଲୋକମାନଙ୍କ ମନରେ ସାହସ ଓ ଉତ୍ସାହ ବୃଦ୍ଧି

କରୁଥିଲେ। ଅନେକ ସମୟରେ ଭୟାବହ ପ୍ରତିକୂଳ ଅବସ୍ଥା ସୃଷ୍ଟି ହେଉଥିଲା। ଏକଦା ମହାରାଷ୍ଟ୍ରର ବନ୍ଧାରାରେ ମାତ୍ର ସପ୍ତାହକ ମଧ୍ୟରେ ଏକ ପଞ୍ଚମାଂଶ (ପ୍ରାୟ ୧୦୦ ଜଣ) ଶରଣାର୍ଥୀ ଅତିଶୟ ଗରମ ଯୋଗୁଁ ମୃତ୍ୟୁବରଣ କଲେ। ଏହା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା ଓ ସେ ଶରଣାର୍ଥୀମାନଙ୍କୁ ତୁରନ୍ତ ଅନ୍ୟତ୍ର ନେଇଯିବା ଲାଗି ନିଷ୍ପତ୍ତି ନେଇଥିଲେ। ମାତ୍ର ସୌଭାଗ୍ୟବଶତଃ ସେଠାକାର ଲୋକମାନେ ପରିସ୍ଥିତି ସହିତ ଧୀରେଧୀରେ ନିଜକୁ ଖାପଖୁଆଇବାରେ ସକ୍ଷମ ହେଲେ। ବସତି କ୍ରମଶଃ ବଢ଼ିବାକୁ ଲାଗିଥିଲା। ଏଠାରେ ସେମାନଙ୍କୁ ମୋଟ୍ ୩୦୦୦ ଏକର ଜମି ପ୍ରଦାନ କରାଯାଇଥିଲା। ମାତ୍ର ସେଠାକୁ ଆଉ ଅଧିକ ଶରଣାର୍ଥୀ ନ ଯିବା ଯୋଗୁଁ ସେଥିମଧ୍ୟରୁ କିଛି ଜମି ହରାଇବାକୁ ପଡ଼ିଥିଲା।

ଅନେକ ପ୍ରତିବନ୍ଧକର ସାମ୍ନା କରୁଥିବାବେଳେ ବହୁ ଲୋକଙ୍କର ବିଶେଷକରି ବିଶିଷ୍ଟ ବା ସହାନୁଭୂତିଶୀଳ ବିଦେଶୀ ବ୍ୟକ୍ତିମାନଙ୍କର ଉଦାରତା ତେନ୍‌ଜିନ୍‌ଙ୍କର ମନୋବଳକୁ ଦୃଢ଼ରୁ ଦୃଢ଼ତର କରୁଥିଲା। ବିଦେଶରୁ ଲୋକମାନେ ଆସି ଶରଣାର୍ଥୀମାନଙ୍କ ସେବା ନିମନ୍ତେ ନିଜର ଜୀବନକୁ ଉତ୍ସର୍ଗ କରିଦେଉଥିଲେ। ସେମାନଙ୍କ ମଧ୍ୟରୁ ଜଣେ ଥିଲେ ମରିସ୍ ଫ୍ରାଏଡ୍‌ମ୍ୟାନ୍। ସେ ଜଣେ ପୋଲାଣ୍ଡବାସୀ ଇହୁଦୀ ଥିଲେ। ତେନ୍‌ଜିନ୍ ନିର୍ବାସନରେ ଆସିଥିବାବେଳେ ଯେଉଁ ଲୋକମାନେ ତାଙ୍କ ଆଡ଼କୁ ସହାୟତାର ହାତ ବଢ଼ାଇଥିଲେ ସେମାନଙ୍କ ମଧ୍ୟରେ ଫ୍ରାଏଡ୍‌ମ୍ୟାନ୍ ପ୍ରଥମ ବ୍ୟକ୍ତି ଥିଲେ। ସେ ଉମାଦେବୀ ନାମ୍ନୀ ତାଙ୍କର ଜଣେ ଚିତ୍ରକର ବାନ୍ଧବୀଙ୍କ ସହିତ ଆସି ଭାରତରେ ରହି ତିବ୍‌ବତୀୟ ଶରଣାର୍ଥୀମାନଙ୍କର ପ୍ରଭୁତ ଉନ୍ନତି ଘଟାଇଥିଲେ। ସେହିଭଳି ଆଉ ଜଣେ ବ୍ୟକ୍ତି ଥିଲେ ମିଷ୍ଟର ଲୁଥି। ସେ ସ୍ୱିସ୍ ରେଡକ୍ରସ୍ 'ପାଲା' (ତିବ୍‌ବତୀୟ ଭାଷାରେ 'ପାପା') ପାଇଁ କାର୍ଯ୍ୟ କରୁଥିଲେ। ସେ ଜଣେ ପ୍ରଚଣ୍ଡ ଉତ୍ସାହୀ ଓ କର୍ମତତ୍ପର ମଣିଷ ଥିଲେ ଏବଂ ତାଙ୍କର ବ୍ୟକ୍ତିତ୍ୱରେ ଖୁବ୍ ସହଜରେ ଅନ୍ୟମାନଙ୍କୁ ପ୍ରଭାବିତ କରି ପାରୁଥିଲେ। ସେ ତିବ୍‌ବତୀୟ ଶରଣାର୍ଥୀଙ୍କ ନିମନ୍ତେ ଖୁବ୍ ନିସ୍ୱାର୍ଥପର ଭାବରେ କଠିନ ପରିଶ୍ରମ କରିଥିଲେ।

୧୯୬୦ ମସିହାର ପ୍ରାରମ୍ଭରେ ଭାରତରେ ଅବସ୍ଥାପିତ ତିବ୍‌ବତୀୟ ଶରଣାର୍ଥୀଙ୍କ ପାଇଁ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ତଥା ଦୁଃଖଦାୟକ ଘଟଣା ଘଟିଲା। ୧୯୬୨ ମସିହାରେ ଚିନ୍ ଏବଂ ଭାରତ ମଧ୍ୟରେ ଯୁଦ୍ଧ ଲାଗିଗଲା। ଏହି ଯୁଦ୍ଧ ତେନ୍‌ଜିନ୍‌ଙ୍କୁ କେବଳ ଦୁଃଖ ଦେଇ ନଥିଲା; ଅଧିକନ୍ତୁ ତାଙ୍କ ମନରେ ଅନେକ ପ୍ରକାରର ଅଶୁଭ

ଆଶଙ୍କା ମଧ୍ୟ ଭରି ଦେଇଥିଲା । କାରଣ ସେଯାଏ ଶରଣାର୍ଥୀମାନଙ୍କର ଥଇଥାନ କାର୍ଯ୍ୟ ଠିକ୍ ଭାବରେ ସମ୍ପନ୍ନ ହୋଇ ନଥିଲା । ଅବଶ୍ୟ ଏହି ଯୁଦ୍ଧ ଖୁବ୍ ସ୍ୱଳ୍ପକାଳ ପାଇଁ ଲାଗିଥିଲା । ଯୁଦ୍ଧରେ ଉଭୟ ପକ୍ଷର ବହୁ ଲୋକ ମୃତାହତ ହୋଇଥିଲେ । ମାତ୍ର କାହାରିକୁ କୌଣସି ପ୍ରକାର ଲାଭ ମିଳି ନଥିଲା । ଏହି ଯୁଦ୍ଧ ପରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ନିଜର ଚୀନ୍‌ନୀତି ଉପରେ ଆତ୍ମସମୀକ୍ଷା କରିଥିଲେ ଓ କହିଥିଲେ ଯେ, ଭାରତ ତା'ର ନିଜ ହାତଗଢ଼ା ଏକ ନିର୍ବୋଧଙ୍କ ସ୍ୱର୍ଗରେ ରହି ଆସିଥିଲା । ୧୯୬୪ ମସିହାରେ ପଣ୍ଡିତ ନେହରୁଙ୍କର ଦେହାନ୍ତ ହେଲା । ମାତ୍ର ମୃତ୍ୟୁ ପର୍ଯ୍ୟନ୍ତ ତେନ୍‌ଜିନ୍ ତାଙ୍କ ସହିତ ନିୟମିତ ଯୋଗାଯୋଗ ଓ ସମ୍ପର୍କ ରଖି ଆସିଥିଲେ । ତେବେ ଏକ ଐକ୍ୟବଦ୍ଧ ତଥା ମୁକ୍ତ ଏସିଆର ସ୍ୱପ୍ନ ଦେଖିଥିବା ଏହି ମହାନ୍ ନେତାଙ୍କର ମନୋବଳ ଚୀନ୍-ଭାରତ ଯୁଦ୍ଧ ପରେ ସମ୍ପୂର୍ଣ୍ଣ ଭାଙ୍ଗି ଯାଇଥିଲା । ସେ ଖୁବ୍ ଭାଙ୍ଗି ପଡ଼ିଥିଲେ । ୧୯୫୪ ମସିହାରେ ତାଙ୍କର ପ୍ରଥମଥର ପାଇଁ ଇନ୍ଦିରା ଗାନ୍ଧୀଙ୍କ ସହିତ ସାକ୍ଷାତ ହୋଇଥିଲା । ଏହି ବର୍ଷ ନେହରୁ ପେକିଂ ଯାଉଥିବା ବେଳେ ଇନ୍ଦିରା ଗାନ୍ଧୀ ମଧ୍ୟ ତାଙ୍କ ସହିତ ଯାଇଥିଲେ ।



# (୨୨) ଚୀନ୍‌ର ମିଥ୍ୟା ପ୍ରଚାର

୧୯୬୪ ମସିହାରେ ତେନ୍‌ଜିନ୍‌ଙ୍କ ଜୀବନରେ ଆଉ ଏକ ଦୁଃଖଦ ଘଟଣା ଘଟିଲା। ସେହି ବର୍ଷ ତାଙ୍କର ବଡ଼ ଭଉଣୀ ସେରିଙ୍ଗ ଡୋଲମା ଦେହତ୍ୟାଗ କଲେ। ସେରିଙ୍ଗ ଡୋଲମାଙ୍କ ଦାୟିତ୍ୱ ତାଙ୍କର ସାନ ଭଉଣୀ ଜେସନ୍ ପେମା ଗ୍ରହଣ କଲେ। ଜେସନ୍ ପେମା ଖୁବ୍ ଦାୟିତ୍ୱସମ୍ପନ୍ନ ଭାବରେ ନିଜର ସାହସ ଓ ସଂକଳ୍ପ ପ୍ରଦର୍ଶନ କରି ସେରିଙ୍ଗ ଡୋଲମାଙ୍କ ଦାୟିତ୍ୱ ନିର୍ବାହ କରିଥିଲେ। ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଧର୍ମଶାଳାରେ ଥିବା ତିବ୍‌ବତୀୟ ଶିଶୁ ଗ୍ରାମଟିର ଅଭୂତପୂର୍ବ ଉନ୍ନତି ଘଟିଥିଲା।

ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁଙ୍କ ବିୟୋଗ ପରେ ଲାଲ୍ ବାହାଦୂର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ। ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଭାବରେ ତିନିବର୍ଷରୁ କମ୍ କ୍ଷମତାରେ ରହିଥିଲେ। ଏହି ସମୟ ମଧ୍ୟରେ ତେନ୍‌ଜିନ୍‌ଙ୍କର ତାଙ୍କ ସହିତ ଅନେକଥର ସାକ୍ଷାତ ଆଲୋଚନା ହୋଇଥିଲା। ସେ ତାଙ୍କୁ ମଧ୍ୟ ଖୁବ୍ ସମ୍ମାନ କରୁଥିଲେ। ନେହରୁଙ୍କ ପରି ଲାଲ ବାହାଦୂର ଶାସ୍ତ୍ରୀ ମଧ୍ୟ ତିବ୍‌ବତୀୟ ଶରଣାର୍ଥୀମାଙ୍କର ପରମ ଦରଦୀ ବନ୍ଧୁ ଥିଲେ।

ଥାଇଲାଣ୍ଡ, ଫିଲିପାଇନ୍ସ, ମାଲଟା, ଆୟରଲାଣ୍ଡ, ମାଲେସିଆ, ନିକାରାଗୁଆ ଏବଂ ଏଲ୍ ସାଲଭାଡୋର ଆଦି ରାଷ୍ଟ୍ରମାନଙ୍କଦ୍ୱାରା ଆଗତ ଏକ ଚିଠା ପ୍ରସ୍ତାବ ବଳରେ ୧୯୬୫ ମସିହା ଶରତ କାଳର ଆରମ୍ଭରେ ମିଳିତ ଜାତିସଂଘରେ ତିବ୍‌ବତ ପ୍ରସଙ୍ଗ ଉପରେ ପୁନର୍ବାର ଆଲୋଚନା ଆରମ୍ଭ କରାଗଲା। ଏହି ଅବସରରେ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କ ନିର୍ଦ୍ଦେଶରେ ଭାରତ ତିବ୍‌ବତ ସପକ୍ଷରେ ଭୋଟ୍ ପ୍ରଦାନ କରିଥିଲା। ଶାସ୍ତ୍ରୀଙ୍କୁ ନେଇ ତେନ୍‌ଜିନ୍ ଖୁବ୍ ଆଶାବାଦୀ ହୋଇପଡ଼ିଥିଲେ। ମାତ୍ର ଦୁଃଖର ବିଷୟ ସେ ଅଧିକ ଦିନ ବଞ୍ଚି ପାରିଲେ ନାହିଁ। ଇତିମଧ୍ୟରେ ୧୯୬୫ ମସିହା ସେପ୍ଟେମ୍ବର ମାସ ୧ ତାରିଖରେ ଭାରତ ଏବଂ ପାକିସ୍ତାନ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇଗଲା। ଭାରତ ପାକିସ୍ତାନ ସୀମାନ୍ତରୁ ଧର୍ମଶାଳାର ଦୂରତ୍ୱ ଖୁବ୍ କମ୍ ଥିଲା। ଫଳତଃ, ଯୁଦ୍ଧର ଭୟାବହତା ସେ ନିଜ ଆଖିରେ ଦେଖି ପାରିଥିଲେ। ଯୁଦ୍ଧ ଆରମ୍ଭ ହେବାର ଅଳ୍ପ ଦିନ ପରେ ସେ ଦକ୍ଷିଣ ଭାରତରେ ଥିବା ନୂତନ ବସତିଗୁଡ଼ିକ ପରିଦର୍ଶନ କରିବାକୁ ଯାଇଥିଲେ।

ଦକ୍ଷିଣ ଭାରତରେ ପହଞ୍ଚି ସେ ପ୍ରଥମେ ବିଲାକୁପି ଗଲେ। ସେତେବେଳକୁ ବିଲାକୁପିଠାରେ ୩,୨୦୦ରୁ ଅଧିକ ଶରଣାର୍ଥୀ ବସବାସ କରୁଥିଲେ। ସେମାନଙ୍କ ନିମନ୍ତେ ସ୍ଥାୟୀ ବାସଗୃହ ମଧ୍ୟ ନିର୍ମାଣ କରାଯାଇଥିଲା। ଶରଣାର୍ଥୀମାନେ ବେଶ୍ ଆନ୍ତରିକତାର ସହିତ କୃଷି କାର୍ଯ୍ୟରେ ମନୋନିବେଶ କରିଥିଲେ। ବିଲାକୁପିଠାରେ ସେ ପାଖାପାଖି ଦଶଦିନ ରହିଥିଲେ। ଏହି ଅବସରରେ କାର୍‌ରେ ବସି ସେ ମହୀଶୂର, ଉଟ୍‌କାମଣ୍ଡ, ମାଡ୍ରାଜ୍ ଓ ତ୍ରିଭେନ୍ଦ୍ରମ୍ ଆଦି ସ୍ଥାନ ପରିଦର୍ଶନ କରିଥିଲେ। ଏହି ସମୟ ମଧ୍ୟରେ ଯୁଦ୍ଧର ଘନଘଟା ଜୋର ଧରି ସାରିଥାଏ। ସେତେବେଳକୁ ଧର୍ମଶାଳାରେ ମଧ୍ୟ ଦୁଇଗୋଟି ବୋମା ପଡ଼ିଥିବାର ଖବର ସେ ପାଇ ସାରିଥାନ୍ତି। ତେବେ ଏହି ସମୟରେ ସେ ଗୋଟିଏ କୁକୁଡ଼ା ମରାଯାଉଥିବାର ଦୃଶ୍ୟ ଦେଖିଲେ। ମଧ୍ୟାହ୍ନ ଭୋଜନରେ ସେହି କୁକୁଡ଼ାର ମାଂସ ତାଙ୍କୁ ଖାଇବା ପାଇଁ ପରଷାଗଲା। ଏହି ଘଟଣା ତାଙ୍କ ଭିତରେ କରୁଣା ଭରିଦେଲା ଓ ସେ ଭାବିଲେ ଯେ, ତାଙ୍କର ଶାକାହାରୀ ହେବାର ସମୟ ଆସି ପହଞ୍ଚିଗଲା। ସେ ଶାକାହାରୀ ହେବାର ପ୍ରତିଜ୍ଞା କଲେ। ଏପରିକି ମାଛ, ଅଣ୍ଡା ଖାଇବା ମଧ୍ୟ ତ୍ୟାଗ କରିଦେଲେ।

୧୯୬୬ ମସିହା ଜାନୁଆରୀ ମାସ ୧୦ ତାରିଖରେ ଭାରତ-ପାକିସ୍ତାନ ଯୁଦ୍ଧ ଶେଷ ହେଲା। ଏହା ନିଶ୍ଚିତ ଭାବରେ ଏକ ସୁଖଦ ଘଟଣା ଥିଲା। ମାତ୍ର ଏହି ସମୟରେ ଏକ ଅତ୍ୟନ୍ତ ଦୁଃଖଦାୟକ ସମ୍ବାଦ ସେ ପ୍ରାପ୍ତ ହେଲେ। ତାସ୍‌କେଣ୍ଟଠାରେ ଲାଲ ବାହାଦୂର ଶାସ୍ତ୍ରୀ ପ୍ରାଣତ୍ୟାଗ କଲେ। ପାକିସ୍ତାନୀ ରାଷ୍ଟ୍ରପତି ଆୟୁବ୍ ଖାଁଙ୍କ ସହିତ ଯୁଦ୍ଧ ବିରତି ସମ୍ପର୍କିତ ଆଲୋଚନା ପାଇଁ ସେ ତାସ୍‌କେଣ୍ଟ୍ ଯାତ୍ରା କରିଥିଲେ। ଭାରତ-ପାକିସ୍ତାନ ମଧ୍ୟରେ ଶାନ୍ତି ଚୁକ୍ତି ମଧ୍ୟ ସ୍ୱାକ୍ଷରିତ ହୋଇଥିଲା। ମାତ୍ର ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେବାର ଅଳ୍ପ କିଛି ଘଣ୍ଟା ପରେ ସେ ଅସ୍ୱାଭାବିକ ଭାବରେ ମୃତ୍ୟୁବରଣ କରିଥିଲେ। ଏହି ଖବର ପ୍ରଚାରିତ ହୋଇଯିବା ପରେ ସମଗ୍ର ଦେଶରେ ଶୋକର ଛାୟା ଖେଳିଯାଇଥିଲା। ତେନ୍‌ଜିନ୍‌ଙ୍କୁ ଶବ ସଂସ୍କାର କାର୍ଯ୍ୟକ୍ରମରେ ଯୋଗଦେବାକୁ ନିମନ୍ତ୍ରଣ କରାଯାଇଥିଲା। ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କୁ ଶେଷ ସମ୍ମାନ ଜଣାଇ ସେ ଧର୍ମଶାଳା ଫେରିଆସିଲେ। ଏହାର ପନ୍ଦର ଦିନ ପରେ ଇନ୍ଦିରା ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କଲେ। ପଣ୍ଡିତ ନେହରୁ ଓ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କ ଭଳି ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ମଧ୍ୟ ତିବ୍‌ବତୀୟ ଶରଣାର୍ଥୀଙ୍କ ପ୍ରତି ଖୁବ୍ ଉଦାର ଥିଲେ। ସେ ମସୌରୀଠାରେ ପ୍ରତିଷ୍ଠିତ ତିବ୍‌ବତୀୟ ହୋମ୍‌ସ ଫାଉଣ୍ଡେସନ୍‌ର

ଜଣେ ସଦସ୍ୟା ଥିଲେ ଓ ଶିକ୍ଷା କ୍ଷେତ୍ରରେ ଅଗ୍ରଗତି ଘଟାଇବା ନିମନ୍ତେ ଅନେକ ପ୍ରୋତ୍ସାହନ ଯୋଗାଇ ଦେଇଥିଲେ। ୧୯୭୫ ମସିହାରେ ଭାରତରେ ଜରୁରିକାଳୀନ ପରିସ୍ଥିତି ଜାରି ହେଲା। ସେଥିପାଇଁ ଇନ୍ଦିରା ଗାନ୍ଧୀଙ୍କୁ ଅନେକ ପ୍ରକାର କୁତ୍ସାରଟନାର ଶିକାର ହେବାକୁ ପଡ଼ିଲା। ୧୯୭୭ ମସିହା ମାର୍ଚ୍ଚ ମାସରେ ନିର୍ବାଚନରେ ପରାଜୟ ବରଣ କରିବା ପରେ ଇନ୍ଦିରା ଗାନ୍ଧୀ କ୍ଷମତାରୁ ଅପସରି ଯାଇଥିଲେ।

ଏହି ସମୟରେ ଚୀନ୍ ସାଧାରଣତନ୍ତ୍ର ଗଣତାନ୍ତ୍ରିକ ରାଜନୀତିର ଏକ ସମ୍ପୂର୍ଣ୍ଣ ଭିନ୍ନ ଚିତ୍ର ଉପସ୍ଥାପିତ କରିଥିଲା। ୧୯୬୦ ଦଶକର ମଧ୍ୟଭାଗରୁ ୧୯୭୬ରେ ମାଓଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେହି ଦେଶ କ୍ରମାଗତ ଭାବରେ ଅନେକ ରକ୍ତାକ୍ତ ଓ ହିଂସ୍ର ବିଦ୍ରୋହର ସମ୍ମୁଖୀନ ହୋଇଥିଲା। କମ୍ୟୁନିଷ୍ଟ ନେତାମାନେ ପରସ୍ପର ଗଳା କଟାକଟିରେ ମାତିଥିବା ବିଷୟ ଏହି ଘଟଣା ପରେ ତାଙ୍କର ହୃଦ୍‌ବୋଧ ହୋଇଯାଇଥିଲା। ସେହି ସମୟରେ ସେ ତିବ୍‌ବତରୁ କୌଣସି ଖବର ସହଜରେ ପାଇପାରୁ ନଥିଲେ। ଚୀନାମାନେ ସେଠାରେ ଭୟାବହ ଅତ୍ୟାଚାର ଘଟାଉଥିବା ବିଷୟ କେବଳ ଅନୁମାନ କରୁଥିଲେ। ସେତେବେଳକୁ ପେକିଂର ନେତାମାନେ ତାଙ୍କୁ 'ଭଣ୍ଡ ତପସ୍ୱୀ' ବୋଲି ଆଖ୍ୟା ଦେଇ ସାରିଥିଲେ। ସେ ଚୀନ୍ ସରକାରଙ୍କ ରୋଷର କେନ୍ଦ୍ରବିନ୍ଦୁ ପାଲଟି ସାରିଥିଲେ। ଏପରିକି, ତାଙ୍କୁ କେବଳ ଧାର୍ମିକ ନେତାର ଅଭିନୟ କରୁଥିବା ଜଣେ ଇତର ବ୍ୟକ୍ତି ରୂପେ ଚିତ୍ରଣ କରାଯାଇଥିଲା। ସେ ଜଣେ ତସ୍କର, ନରହନ୍ତା, ଖୁନୀ ତଥା ଧର୍ଷଣକାରୀ ବୋଲି ଚୀନାମାନେ ପ୍ରଚାର ଚଳାଇଥିଲେ। ସେତିକି ନୁହେଁ, ଇନ୍ଦିରା ଗାନ୍ଧୀଙ୍କ ସହିତ ତାଙ୍କର ଯୌନ ସମ୍ପର୍କ ଥିବା କଥା ମଧ୍ୟ ପ୍ରଚାର କରାଯାଇଥିଲା। ଇତିମଧ୍ୟରେ ତିବ୍‌ବତ ସରକାରଙ୍କର କାର୍ଯ୍ୟାଳୟ ବିଦେଶର ବିଭିନ୍ନ ସ୍ଥାନରେ ଖୋଲି ସାରିଥିଲା। ପ୍ରଥମ ଦପ୍ତର କାଠମାଣ୍ଡୁଠାରେ ଖୋଲିଥିବା ବେଳେ ପରେ ପରେ ନ୍ୟୁୟର୍କ, ଜୁରିଚ୍, ଟୋକିଓ, ଲଣ୍ଡନ ତଥା ୱାଶିଂଟନ୍‌ଠାରେ ମଧ୍ୟ କାର୍ଯ୍ୟାଳୟମାନ ପ୍ରତିଷ୍ଠା କରାଯାଇଥିଲା।

୧୯୬୮ ମସିହାରେ ସେ ରହୁଥିବା 'ସ୍ୱର୍ଗ ଆଶ୍ରମ' ଛାଡ଼ି 'ବ୍ରାଇନ୍ କଟେଜ୍' ନାମକ ଏକ ଛୋଟ ଘରକୁ ସ୍ଥାନାନ୍ତରିତ ହେବା ପାଇଁ ଯୋଜନା କଲେ। ଏହି ସମୟ ମଧ୍ୟରେ ତାଙ୍କର ମା' କାଶ୍ମୀର କଟେଜ୍ ନାମକ ଏକ ନୂଆ ଘରକୁ ସ୍ଥାନାନ୍ତରିତ ହୋଇଗଲେ। 'ବ୍ରାଇନ୍ କଟେଜ୍'କୁ ଯିବା ପରେ ସେ ନାମ୍‌ଗ୍ୟାଲ୍ ସନ୍ନ୍ୟାସାଶ୍ରମର ପୁନଃ ପ୍ରତିଷ୍ଠା କରିବାରେ ସଫଳ ହେଲେ। ଏହାର କିଛିଦିନ ପରେ ୧୯୭୦ ମସିହାରେ ଗୋଟିଏ ମନ୍ଦିର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା। ଏହା ଫଳରେ ତିବ୍‌ବତୀୟ ପର୍ବପର୍ବାଣି

ସବୁକୁ ଯଥାରୀତି ସମ୍ପନ୍ନ କରାଯାଇପାରିଲା । ୧୯୬୩ ମସିହାରେ ସେ ବନ୍ ଧର୍ମର ପ୍ରତିନିଧିମାନଙ୍କ ସହିତ ବିଭିନ୍ନ ପରମ୍ପରାର ମୁଖ୍ୟମାନଙ୍କର ଏକ ବୈଠକ ଡକାଇଲେ । ତିବ୍‌ବତୀୟ ବୌଦ୍ଧ ସଂସ୍କୃତିର ବିଭିନ୍ନ ବିଭାଗକୁ ସୁରକ୍ଷିତ କରି ରଖିବା ଲାଗି ଏହି ବୈଠକରେ ଆଲୋଚନା କରାଯାଇଥିଲା । ଏହାପରେ ସେ ଦକ୍ଷିଣ ଭାରତର କର୍ଣ୍ଣାଟକ ରାଜ୍ୟରେ ଗାଣ୍ଡେନ୍, ଡ୍ରେପଙ୍ଗ ଓ ସେରା ସନ୍ନ୍ୟାସାଶ୍ରମ ସବୁର ପୁନଃ ପ୍ରତିଷ୍ଠା କରି ବକ୍ସା ଦୁଆର ଆକ୍ରମଣରୁ ବଞ୍ଚି ରହିଥିବା ୧,୩୦୦ ସନ୍ନ୍ୟାସୀଙ୍କୁ ନେଇ ସେହିସବୁ ଆଶ୍ରମରେ ଥଇଥାନ କରାଇଥିଲେ ।

'ବ୍ରାଇନ୍ କଟେଜ୍'କୁ ସ୍ଥାନାନ୍ତରିତ ହେବାର ଠିକ୍ ପୂର୍ବରୁ ତେନ୍‌ଜିନ୍ ପ୍ରାୟ କିଛି ସପ୍ତାହ ଧରି ଅସୁସ୍ଥ ହୋଇପଡ଼ିଲେ । ପୁଣି ଭାରତ-ପାକିସ୍ତାନ ଯୁଦ୍ଧ ଶେଷ ହେବାପରେ ସେ ଧର୍ମଶାଳା ଫେରି ଆସିଥିଲେ ଓ ତାଙ୍କର ନିରାମିଷ ଭୋଜନ ଆରମ୍ଭ କରିଦେଇଥିଲେ । ମାତ୍ର ସେଥିପାଇଁ ପାଚକମାନଙ୍କୁ ଖୁବ୍ ପରିଶ୍ରମ କରିବା ପାଇଁ ପଡ଼ିଥିଲା । କାରଣ ତିବ୍‌ବତରେ ମାଂସକୁ ଛାଡ଼ି ଖୁବ୍ କମ୍ ପ୍ରକାର ଖାଦ୍ୟ ରୋଷେଇ କରାଯାଇଥାଏ । ସେଥିଲାଗି କିଭଳି ବିନା ମାଂସରେ ଖାଦ୍ୟସବୁକୁ ସ୍ୱାଦିଷ୍ଟ କରାଯାଇପାରିବ ତାହା ଜାଣିବା ଲାଗି ପାଚକମାନଙ୍କୁ ଅନେକ ଦିନ ଲାଗି ଯାଇଥିଲା । ଅବଶ୍ୟ ପରିଶେଷରେ ସେମାନେ ସେଥିରେ ସଫଳ ହୋଇଥିଲେ । ଏଥି ସହିତ ପ୍ରଚୁର ଦୁଗ୍ଧ ଓ ବିଭିନ୍ନ ପ୍ରକାରର ବାଦାମ ଖାଇବା ଲାଗି ତାଙ୍କୁ ତାଙ୍କର ଭାରତୀୟ ବନ୍ଧୁମାନେ ପରାମର୍ଶ ଦେଇଥିଲେ । ସେ ସେସବୁକୁ ଅତି ନିଷ୍ଠାର ସହିତ ମଧ୍ୟ ପାଳନ କରିଥିଲେ । ଏହି ଘଟଣାର ପ୍ରାୟ କୋଡ଼ିଏ ମାସ ପରେ ସେ ଗୁରୁତର କାମଳ ରୋଗରେ ଆକ୍ରାନ୍ତ ହେଲେ । ପ୍ରଥମେ ଖୁବ୍ ବାନ୍ତି ହୋଇଥିଲା । ପରେ ପରେ ସେ ଦୁଇତିନି ସପ୍ତାହ ଧରି କିଛି ଖାଇପାରିଲେ ନାହିଁ । ଫଳରେ ସେ କ୍ଳାନ୍ତ ଓ ଅବସନ୍ନ ହୋଇପଡ଼ିଲେ । ଏପରିକି ଚଲାବୁଲା କରିବା ମଧ୍ୟ ତାଙ୍କ ପକ୍ଷରେ କଷ୍ଟକର ହୋଇପଡ଼ିଲା । ତାଙ୍କର ତ୍ୱଚା ହଳଦିଆ ପଡ଼ିଗଲା । ପରିଶେଷରେ ତାଙ୍କର ଅସୁସ୍ଥତା 'ହେପାଟାଇଟିସ୍-ବି'ରେ ପରିଣତ ହେଲା । ଅନେକ କଷ୍ଟ ସହିବା ପରେ ତଥା ବହୁ ତିବ୍‌ବତୀୟ ଔଷଧ ଖାଇବା ପରେ ସେ ରୋଗମୁକ୍ତ ହୋଇଥିଲେ । ଡାକ୍ତରମାନେ ତାଙ୍କୁ ତେଲ ଓ ଚର୍ବି ଜାତୀୟ ଖାଦ୍ୟ ଖାଇବାକୁ ତଥା କ୍ଷୀର ଓ ବାଦାମ ଖାଇବାକୁ ବାରଣ କଲେ । ସେ ପୁନଶ୍ଚ ମାଂସାହାର କରିବାର ଦରକାର ବୋଲି ଡାକ୍ତରମାନେ ତାଙ୍କୁ ପରାମର୍ଶ ଦେଲେ । ଅସୁସ୍ଥତା ଯୋଗୁଁ ତାଙ୍କର ଯକୃତ ପ୍ରଭାବିତ ହୋଇଥିବା ବିଷୟ ଡାକ୍ତରମାନେ ଆଶଙ୍କା କରୁଥିଲେ । ତିବ୍‌ବତୀୟ

ଡାକ୍ତରମାନଙ୍କଠାରୁ ଏପରି ଶୁଣି ସେ ଭାରତୀୟ ଡାକ୍ତରମାନଙ୍କ ସହିତ ପରାମର୍ଶ କରିଥିଲେ। ମାତ୍ର ଭାରତୀୟ ଡାକ୍ତରମାନେ ମଧ୍ୟ ତିବ୍‌ବତୀୟ ଡାକ୍ତରଙ୍କ ଅନୁରୂପ ମତ ପୋଷଣ କରିଥିଲେ। ଫଳରେ ସେ ଅନନ୍ୟୋପାୟ ହୋଇ ପୁନଶ୍ଚ ମାଂସାହାର କରିବାକୁ ନିଷ୍ପତ୍ତି ନେଲେ।

ନୂଆଘରଟି ତାଙ୍କୁ କ୍ରମଶଃ ଆନନ୍ଦ ଦେବାକୁ ଲାଗିଲା। ଏହା ମଧ୍ୟ ଇଂରେଜମାନଙ୍କଦ୍ୱାରା ନିର୍ମିତ ହୋଇଥିଲା। ଘର ଆଗରେ ପ୍ରଚୁର ଖୋଲା ସ୍ଥାନ ଥିଲା, ଯେଉଁଠି ସେ ଲୋକମାନଙ୍କୁ ଧର୍ମବାଣୀ ଶୁଣେଇବାରେ ସକ୍ଷମ ହେଲେ। ନିଜ ହାତରେ ଉଦ୍ୟାନରେ ଫଳ ଓ ଫୁଲଗଛ ଲଗାଇଲେ। ବଗିଚାକୁ ଅନେକ ପଶୁପକ୍ଷୀ ମନକୁମନ ଆକର୍ଷିତ ହୋଇ ଆସୁଥିଲେ। ଏହା ତାଙ୍କୁ ସୁଖ ଓ ସନ୍ତୋଷ ପ୍ରଦାନ କରିଥିଲା। ପ୍ରତ୍ୟେକ ଶୀତଋତୁରେ ସେ ଶରଣାର୍ଥୀ ଶିବିରଗୁଡ଼ିକୁ ବୁଲି ଯାଉଥିଲେ ଏବଂ ସେମାନଙ୍କୁ ପ୍ରବଚନ ଶୁଣାଇ ଶରଣାର୍ଥୀମାନଙ୍କର ନୈତିକ ମନୋବଳ ଦୃଢ଼ କରୁଥିଲେ। ଏହି ସମୟ ମଧ୍ୟରେ ସେ ତାଙ୍କର ଅଧ୍ୟୟନକୁ ଆହୁରି ତୀବ୍ର କରିଦେଲେ। ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ ଓ ଦର୍ଶନ ସହିତ ପାଶ୍ଚାତ୍ୟ ଚିନ୍ତାଧାରା ସମ୍ପର୍କରେ ଜ୍ଞାନ ଆହରଣ କରିବାକୁ ଲାଗିଲେ। ବଳକା ସମୟକୁ ସେ ଫଟୋ ଉତ୍ତୋଳନରେ ବିନିଯୋଗ କଲେ। ନୂଆଘର 'ବ୍ରାଇନ୍ କଟେଜ୍'କୁ ଆସିବା ପରେ ସେ ଘଣ୍ଟା ମରାମତିରେ ମଧ୍ୟ ମନୋନିବେଶ କରିଥିଲେ।



# (୨୩) ଖ୍ରୀଷ୍ଟ ସମ୍ପ୍ରଦାୟ ସହ ସମ୍ପର୍କ

ତେନ୍‌ଜିନ୍‌ଙ୍କର ଦୀର୍ଘ ନିର୍ବାସନ ଜୀବନର ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ଥିଲା ସେ ସମସ୍ତ ବୃତ୍ତିରୁ ଆସିଥିବା ଲୋକମାନଙ୍କ ସହିତ ଭଲଭାବରେ ମିଶିବାର ସୁଯୋଗ ଲାଭ କରିଥିଲେ। ଭାରତ ଗୋଟିଏ ଧର୍ମନିରପେକ୍ଷ ସ୍ୱାଧୀନ ରାଷ୍ଟ୍ର। ଏହାର ସମସ୍ତ ନାଗରିକ ସ୍ୱାଧୀନଚେତା। ତେଣୁ ଜଣେ କାହା ସହିତ ମିଶିବ, କାହା ସହିତ ନ ମିଶିବ ତାହା ଉପରେ କୌଣସି ପ୍ରକାର କଟକଣା ଜାରି କରାଯାଉ ନଥିଲା। ତେଣୁ ସେ ସମସ୍ତଙ୍କ ସହିତ ଖୋଲା ମନରେ ମିଶି ପାରୁଥିଲେ। ସେଥିଲାଗି ଅନେକ ସମୟରେ ବହୁ ଅସାଧାରଣ ବ୍ୟକ୍ତିଙ୍କ ସହିତ ସାକ୍ଷାତକାର କରିବାର ସୌଭାଗ୍ୟ ତାଙ୍କ ଜୀବନରେ ଆସିଥିଲା। ସେ ବହୁ ଧର୍ମ ଓ ସମ୍ପ୍ରଦାୟର ଲୋକଙ୍କର ସାହଚର୍ଯ୍ୟ ଲାଭ କରିପାରିଥିଲେ। ଜେ. କ୍ରିଷ୍ଣମୂର୍ତ୍ତି ସେହିଭଳି ଜଣେ ବ୍ୟକ୍ତି ଥିଲେ। ତାଙ୍କର ବ୍ୟକ୍ତିତ୍ୱ ଖୁବ୍ ଆକର୍ଷଣୀୟ ଥିଲା। ସେ ତୀକ୍ଷ୍ଣ ଧୀଶକ୍ତିସମ୍ପନ୍ନ ଓ ଅସାଧାରଣ ପାଣ୍ଡିତ୍ୟର ଅଧିକାରୀ ଥିଲେ। ଏହି ସମୟରେ ସେ ଆଉ ଜଣେ ଅତି ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କୁ ଭେଟିଥିଲେ। ସେ ଥିଲେ ଆମେରିକୀୟ ଟ୍ରାପିଷ୍ଟ ସନ୍ନ୍ୟାସୀ ଫାଦର ଥମାସ୍ ମେରଟନ୍। ଥାଇଲାଣ୍ଡ୍‌ରେ ତାଙ୍କର ଦେହାନ୍ତ ଘଟିବାର ଅଳ୍ପ କିଛି ସପ୍ତାହ ପୂର୍ବରୁ ୧୯୬୮ ମସିହା ନଭେମ୍ବର ମାସରେ ସେ ଧର୍ମଶାଳା ଆସିଥିଲେ। କ୍ରମାଗତ ଦୁଇଦିନ ଧରି ତେନ୍‌ଜିନ୍ ଦିନକୁ ପ୍ରାୟ ଦୁଇଘଣ୍ଟା ତାଙ୍କ ସହିତ ଅତିବାହିତ କରୁଥିଲେ। ସେ ହଳେ ଭାରି ବୁଟ୍ ଜୋତା ପିନ୍ଧୁଥିଲେ ଓ ଅଣ୍ଟାରେ ଏକ ମୋଟା ବେଲ୍‌ଟ ଭିଡୁଥିଲେ। ସେ ବାସ୍ତବରେ ଜଣେ ନମ୍ର ଓ ଅନ୍ତର୍ଦୃଷ୍ଟିସମ୍ପନ୍ନ ଆଧ୍ୟାତ୍ମିକ ମଣିଷ ଥିଲେ। ଖ୍ରୀଷ୍ଟଧର୍ମାବଲମ୍ବୀ କୌଣସି ଜଣେ ବ୍ୟକ୍ତିଙ୍କଠାରେ ଆଧ୍ୟାତ୍ମିକତାର ଏତେ ଗଭୀର ଅନୁଭବ ଥିବା ପ୍ରଥମଥର ପାଇଁ ଉପଲବ୍ଧି କରି ସେ ସ୍ତମ୍ଭୀଭୂତ ହୋଇପଡ଼ିଥିଲେ। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା, ମେରଟନ୍‌ଙ୍କଠାରୁ ତେନ୍‌ଜିନ୍ 'ଖ୍ରୀଷ୍ଟିଆନ୍' ଶବ୍ଦର ପ୍ରକୃତ ଅର୍ଥ ବୁଝିବାକୁ ସମର୍ଥ ହୋଇଥିଲେ।

ମେରଟନ୍ ଉଭୟ ହାସ୍ୟରସପ୍ରିୟ ଓ ଜ୍ଞାନୀ ବ୍ୟକ୍ତି ଥିଲେ। ତେଣୁ ତେନ୍‌ଜିନ୍ ତାଙ୍କୁ ଶ୍ରଦ୍ଧାରେ 'କ୍ୟାଥୋଲିକ୍ ମହର୍ଷି' ବୋଲି ସମ୍ବୋଧନ କରୁଥିଲେ। ସେମାନେ ପାରସ୍ପରିକ ଆଗ୍ରହ ଥିବା ବୌଦ୍ଧିକ ଓ ଆଧ୍ୟାତ୍ମିକ ବିଷୟବସ୍ତୁ ଉପରେ ଆଲୋଚନା

କରୁଥିଲେ। ଏଥିସହିତ ସନ୍ନ୍ୟାସୀ ଜୀବନ ସମ୍ପର୍କରେ ତଥ୍ୟ ବିନିମୟ କରୁଥିଲେ। ପାଶ୍ଚାତ୍ୟ ଦେଶରେ ସନ୍ନ୍ୟାସୀ ପରମ୍ପରା ସମ୍ପର୍କରେ ତାଙ୍କଠାରୁ ଟେନ୍‌ଜିନ୍ ଅନେକ କଥା ଶିଖିଥିଲେ, ଯାହା ତାଙ୍କୁ ଆଶ୍ଚର୍ଯ୍ୟ କରିଦେଇଥିଲା। ସେଥିମଧ୍ୟରୁ ଗୋଟିଏ ଅତି ଉଲ୍ଲେଖନୀୟ ଘଟଣା ହେଉଛି ଖ୍ରୀଷ୍ଟିଆନ ଧ୍ୟାନାଭ୍ୟାସକାରୀମାନେ ଧ୍ୟାନ କରିବା ସମୟରେ କୌଣସି ନିର୍ଦ୍ଦିଷ୍ଟ ଶାରୀରିକ ଭଙ୍ଗୀରେ ରହନ୍ତି ନାହିଁ। ସେହିଭଳି ଫାଦର ମେରଟନ୍ ମଧ୍ୟ ବୋଧିସତ୍ତ୍ୱ ଆଦର୍ଶ ସମ୍ପର୍କରେ ତାଙ୍କଠାରୁ ଜ୍ଞାନ ଆହରଣ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ। ତାଙ୍କୁ ତାନ୍ତ୍ରିକ ବିଦ୍ୟା ସହିତ ପରିଚିତ କରାଇଦେବାକୁ ସମର୍ଥ ଥିବା ଜଣେ ଶିକ୍ଷକଙ୍କୁ ମଧ୍ୟ ସେ ସାକ୍ଷାତ୍ କରାଇ ଦେବା ଲାଗି ଅନୁରୋଧ କରିଥିଲେ। ଏହିଭଳି ଆଲୋଚନା କରିବା ଫଳରେ ଟେନ୍‌ଜିନ୍ ଜାଣିବାକୁ ପାଇଲେ ଯେ, ବୌଦ୍ଧଧର୍ମ ଏବଂ କ୍ୟାଥୋଲିକ ଧର୍ମ ମଧ୍ୟରେ ବହୁ ସାମଞ୍ଜସ୍ୟ ରହିଛି। ଏହା ଜାଣିବା ଫଳରେ ତାଙ୍କ ମନ ଆନନ୍ଦିତ ହୋଇଥିଲା। ମାତ୍ର ଯେତେବେଳେ ସେ ଫାଦର ମେରଟନ୍‌ଙ୍କ ଆକସ୍ମିକ ବିୟୋଗର ଖବର ପାଇଲେ ସେତେବେଳେ ସେ ଖୁବ୍ ଦୁଃଖ ପ୍ରକାଶ କରିଥିଲେ। କାରଣ ବୌଦ୍ଧଧର୍ମ ଏବଂ କ୍ୟାଥୋଲିକ୍ ଧର୍ମ ମଧ୍ୟରେ ମେରଟନ୍ ଏକ ବଳିଷ୍ଠ ସେତୁ ଭାବରେ କାର୍ଯ୍ୟ କରିଥିଲେ।

ସତ କହିବାକୁ ଗଲେ, ଫାଦର ଥମାସ୍ ମେରଟନ୍‌ଙ୍କ ସହିତ ଟେନ୍‌ଜିନ୍‌ଙ୍କର ଭେଟ ହେବା ପରେ ଅନ୍ୟାନ୍ୟ ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ସହିତ ସମ୍ପର୍କ ରଖିବାକୁ ତାଙ୍କର ମନ ବଳିଥିଲା ଓ ସେ ମଧ୍ୟ ତାହା କରିଥିଲେ। ସେ ଅନେକ ଖ୍ରୀଷ୍ଟସନ୍ନ୍ୟାସୀଙ୍କୁ ସାକ୍ଷାତ୍ କରିବାର ସୁଯୋଗ ପାଇଥିଲେ। ୟୁରୋପ୍ ପରିଦର୍ଶନ କାଳରେ ସେ ବହୁ ଖ୍ରୀଷ୍ଟସନ୍ନ୍ୟାସୀଙ୍କୁ ସାକ୍ଷାତ କରିଛନ୍ତି ଏବଂ ସେମାନଙ୍କର ସନ୍ନ୍ୟାସାଶ୍ରମ ପରିଭ୍ରମଣ କରିଛନ୍ତି। ସେମାନଙ୍କର ଭକ୍ତି, ନିଷ୍ଠା, ଆନ୍ତରିକତା ଦେଖି ସେ ଅନେକଥର ଈର୍ଷାନ୍ୱିତ ମଧ୍ୟ ହୋଇଛନ୍ତି। ସ୍ୱାସ୍ଥ୍ୟ, ଶିକ୍ଷା ପ୍ରତି ଖ୍ରୀଷ୍ଟିଆନ୍‌ମାନଙ୍କର ଉତ୍ସର୍ଗୀକୃତ ମନୋଭାବ ତାଙ୍କୁ ମୁଗ୍ଧ କରିଥିଲା। ସେମାନଙ୍କଠାରୁ ସେ ଅନେକ କିଛି ଶିକ୍ଷାଲାଭ କରିଛନ୍ତି।

୧୯୬୦ ଦଶକର ଅନ୍ତିମ କାଳରେ ଭାରତ, ନେପାଳ ଓ ଭୁଟାନ୍‌ରେ ଥିବା ପ୍ରାୟ ଏକ ଲକ୍ଷ ତିବ୍‌ବତୀୟ ଶରଣାର୍ଥୀଙ୍କୁ ପୁନଃ ଥଇଥାନ କରିବା ସୂଚନା ତାଙ୍କୁ ମିଳିଥିଲା। ସେ ଆଶାର ସହିତ ଭବିଷ୍ୟତକୁ କେବଳ ଅପେକ୍ଷା କରି ରହିଥିଲେ। ଏହାସତ୍ତ୍ୱେ, ତାଙ୍କ ଅବସ୍ଥା ଯେ କେତେ ବିପଜ୍ଜନକ ତାହା ଦୁଇଟି ଘଟଣା ତାଙ୍କୁ ମନେ ପକେଇ ଦେଇଥିଲା। ଭୁଟାନ୍‌ରେ ପ୍ରାୟ ଚାରି ହଜାର ଶରଣାର୍ଥୀ ରହିଥିଲେ। ଭୁଟାନ୍‌ର

ରାଜା ମଧ୍ୟ ସେମାନଙ୍କ ପ୍ରତି ଅତ୍ୟନ୍ତ ଦୟାଶୀଳ ଥିଲେ। ଭାରତ ସରକାରଙ୍କ ସହାୟତାରେ ଜାଗା ଓ ଜମି ଯୋଗାଇଦେବା ସହିତ ଶରଣାର୍ଥୀମାନଙ୍କ ପାଇଁ ବସତିମାନ ସ୍ଥାପନ କରାଇଥିଲେ। ମାତ୍ର କିଛିଦିନ ପରେ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଗଲା। ତିବ୍‌ବତୀୟ ସମ୍ପ୍ରଦାୟର ବାଇଶି ଜଣ ନେତାଙ୍କୁ କୌଣସି କାରଣ ନଥାଇ ଗିରଫ କରିନିଆଗଲା ଓ ରାଜଧାନୀ ଥିମ୍ପୁର ଏକ କାରାଗାରରେ ବନ୍ଦୀ କରି ରଖାଯିବା ସହିତ ସେଠାରେ ସେମାନଙ୍କୁ ନାନାଦି ନିର୍ଯାତନା ଦିଆଗଲା। ତେନ୍‌ଜିନ୍‌ଙ୍କୁ ଏହି ଘଟଣା ଅତ୍ୟନ୍ତ ମର୍ମାହତ କରିଥିଲା ଓ ସେ ଏହି ଘଟଣାର ପୁଙ୍ଖାନୁପୁଙ୍ଖ ତଦନ୍ତ ହେଉ ବୋଲି ଚାହୁଁଥିଲେ। ମାତ୍ର ତାହା ସମ୍ଭବପର ହେଲା ନାହିଁ। ଏହାପରେ ଭୁଟାନ୍‌ରେ ଥିବା ଶରଣାର୍ଥୀମାନେ ସେହି ସ୍ଥାନ ତ୍ୟାଗକରି ଭାରତ ଚାଲି ଆସିବାକୁ ସ୍ଥିର କରିଥିଲେ।

ଅନ୍ୟ ଏକ ଘଟଣା ହେଲା– ହିଂସ୍ର ମାର୍ଗରେ ଯାଇ ତିବ୍‌ବତୀୟ ସ୍ୱାଧୀନତା ଫେରିପାଇବା ଲାଗି କେତେକ ଗରିଲା ସଂଗଠନ କାର୍ଯ୍ୟରତ ଥିଲେ। ସେମାନଙ୍କୁ ଆମେରିକୀୟ ଗୁଇନ୍ଦା ସଂସ୍ଥା ସି.ଆଇ.ଏ. ସହାୟତା ଯୋଗାଇ ଦେଉଥିଲା। ସେମାନେ ଅନେକଥର ଚୀନାମାନଙ୍କୁ ଆକ୍ରମଣ କରିଥିଲେ। ଥରେ ଗୋଟିଏ ଚୀନା ସୈନ୍ୟଦଳ ଉପରକୁ ଆକ୍ରମଣ କରି ସେମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ନିଶ୍ଚିହ୍ନ କରିଦେଇଥିଲେ। ଅବଶ୍ୟ ଏଭଳି ସଫଳତା ସେମାନଙ୍କର ମନୋବଳକୁ ବୃଦ୍ଧି କରାଉଥିଲା। ମାତ୍ର ତିବ୍‌ବତ ବିଦେଶୀମାନଙ୍କଦ୍ୱାରା ପ୍ରରୋଚିତ ହୋଇ କାର୍ଯ୍ୟ କରୁଛି ବୋଲି ଚୀନ୍ ସରକାର ଅପପ୍ରଚାର ଆରମ୍ଭ କରିଦେଇଥିଲେ। ଅବଶ୍ୟ ପରିଶେଷରେ ୧୯୭୦ ଦଶକରେ ଆମେରିକା-ଚୀନ ବୁଝାମଣା ହେବାପରେ ଆମେରିକୀୟ ସୈନ୍ୟମାନେ ତିବ୍‌ବତୀୟ ଗରିଲାଙ୍କୁ ସାହାଯ୍ୟ ନ କରି ରଣକ୍ଷେତ୍ରରୁ ଓହରି ଗଲେ। ସେ ଗରିଲାମାନଙ୍କୁ ପସନ୍ଦ କରୁଥିଲେ ମଧ୍ୟ ସେମାନଙ୍କ କାର୍ଯ୍ୟକଳାପକୁ ସମର୍ଥନ କରିପାରୁ ନଥିଲେ। ତେଣୁ ସେ ସେମାନଙ୍କୁ ଯୁଦ୍ଧରୁ ନିବୃତ୍ତ ରହିବା ପାଇଁ ବ୍ୟକ୍ତିଗତ ଭାବରେ ଅନୁରୋଧ କରିବାକୁ ମନସ୍ଥ କଲେ।

ଯା'ହେଉ, ଗରିଲାମାନଙ୍କ ମଧ୍ୟରୁ ଅଧିକାଂଶ ତାଙ୍କୁ ସମ୍ମାନ ଜଣେଇ ଅସ୍ତ୍ରତ୍ୟାଗ କରିଥିଲେ। ମାତ୍ର ଅନେକ ତାଙ୍କର ନିବେଦନକୁ ଏଡ଼ାଇ ଯାଇଥିଲେ। ଯାହାବି ହେଉ, ଏହା ତାଙ୍କ ମନରେ ଆଶା ସଞ୍ଚାର କରିଥିଲା।



# (୨୪) ବିଦେଶ ଭ୍ରମଣ

୧୯୬୭ ମସିହା ଶରତ କାଳରେ ତେନ୍‌ଜିନ୍ ଭାରତ ବାହାରକୁ ଯାତ୍ରା ଆରମ୍ଭ କଲେ। ଏହି ଯାତ୍ରାକାଳରେ ସେ ଜାପାନ୍ ଓ ଥାଇଲାଣ୍ଡ୍ ଗଲେ। ମାତ୍ର ଦୁର୍ଭାଗ୍ୟର ବିଷୟ ଏହା ଯେ, ସେ ସମ୍ପୂର୍ଣ୍ଣ ଘରୋଇ ଭାବରେ ବିଦେଶ ଯାତ୍ରା କରୁଥିଲେ ମଧ୍ୟ ଚୀନ୍ କର୍ତ୍ତୃପକ୍ଷ ତାହାକୁ ଏକ ରାଜନୈତିକ ଯାତ୍ରା ରୂପେ ବିବେଚନା କରୁଥିଲେ ଏବଂ ନାନାଦି ଅପପ୍ରଚାର ଚଳାଇଥିଲେ। ତାଙ୍କର ଜାପାନ୍ ଗସ୍ତ ଖୁବ୍ ସୁନ୍ଦର ଓ ଆନନ୍ଦଦାୟକ ଥିଲା। ଜାପାନ୍‌ରେ ଥିବାବେଳେ ସେ ସେଠାକାର ଅଧ୍ୟୟନରତ ଅନେକ ତିବ୍‌ବତୀୟ ଛାତ୍ରଙ୍କୁ ଦେଖି ତାଙ୍କର ହୃଦୟ ଆନନ୍ଦରେ ପୂରିଉଠିଥିଲା। ସେହିପରି ତିବ୍‌ବତୀୟ ଭାଷା କହୁଥିବା ଏବଂ ତିବ୍‌ବତ ସମ୍ପର୍କରେ ଉତ୍ତମ ଜ୍ଞାନ ଥିବା କେତେକ ଜାପାନୀ ଲୋକଙ୍କୁ ଭେଟି ସେ ମଧ୍ୟ ଖୁବ୍ ଖୁସି ହୋଇଥିଲେ। ଜାପାନ ବୌଦ୍ଧ ପରମ୍ପରା ଓ ତିବ୍‌ବତର ବୌଦ୍ଧ ପରମ୍ପରା ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଥିଲା। ତେଣୁ ସେ ସେମାନଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା କରିପାରୁଥିଲେ। ଥାଇଲାଣ୍ଡ୍‌ର ଲୋକମାନେ ଶାନ୍ତ, ସହନଶୀଳ ଓ ଆରାମପ୍ରିୟ ଥିଲେ। ଅବଶ୍ୟ ସେଠାରେ କେତେକ ଶିଷ୍ଟାଚାର ସମ୍ପର୍କିତ ନିୟମାବଳୀ ଖୁବ୍ କଷ୍ଟକର ଥିବା ସେ ଅନୁଭବ କରିଥିଲେ। ପୁରୁଷ ହୁଅନ୍ତୁ ଅଥବା ମହିଳା, ଜଣେ ବ୍ୟକ୍ତି ତାକୁ ସାଷ୍ଟାଙ୍ଗ ପ୍ରଣିପାତ କରିବାବେଳେ ତାହାକୁ ଭୁଲ ବୋଲି ବିବେଚନା କରାଯାଇଥାଏ। ଏହା ତେନ୍‌ଜିନ୍‌ଙ୍କୁ ଖୁବ୍ ଅପ୍ରାସଙ୍ଗିକ ମନେହେବା ସହିତ ଏଥିରେ ଅଭ୍ୟସ୍ତ ହେବା ତାଙ୍କ ଲାଗି ଖୁବ୍ କଷ୍ଟକର ମନେହୋଇଥିଲା। କାରଣ ଅଭ୍ୟାସ ବଶତଃ ତାଙ୍କୁ ଜଣେ ଅଭିବାଦନ କରିବା ବେଳେ ସେ ମଧ୍ୟ ତାଙ୍କୁ ସମାନୁରୂପ ଅଭିବାଦନ ଜଣାଇବାକୁ ଉଦ୍ୟମ କରିଥାନ୍ତି। ତାଙ୍କର ହାତ ମନକୁମନ ପ୍ରତି-ଅଭିବାଦନ ଜଣେଇବା ପାଇଁ ଉପରକୁ ଉଠିଯାଏ। ଯାହାହେଉ ପରିଶେଷରେ ସେ ଥାଇ ପରମ୍ପରା ସହିତ ଅଭ୍ୟସ୍ତ ହେବାରେ ସମର୍ଥ ହେଲେ।

ସେ ଦେଶର ଆଉ ଏକ ଅସୁବିଧା ଥିଲା ଉତ୍ତାପ। ଏପରିକି ଦକ୍ଷିଣ ଭାରତ ତୁଳନାରେ ସେଠାରେ ଉତ୍ତାପ ଅଧିକ ତୀବ୍ର, କଷ୍ଟକର ଓ ଅସହ୍ୟ ଥିଲା। ପୁଣି ଅସହ୍ୟ ଗରମ ସାଙ୍ଗକୁ ମଶାଙ୍କର ଉତ୍ପାତ ମଧ୍ୟ ପ୍ରବଳ ହେଉଥିଲା। ଫଳରେ ସେ ଠିକ୍ ଭାବରେ

ମଧ୍ୟ ଶୋଇପାରୁ ନଥିଲେ। ଏଭଳି ପରିସ୍ଥିତି ମଧ୍ୟରେ ବି ସେ ଅନେକ ସନ୍ନ୍ୟାସୀଙ୍କର ସାହଚର୍ଯ୍ୟ ଲାଭକରି ନିଜକୁ ଧନ୍ୟ ମନେକରିଥିଲେ। ୧୯୭୩ ମସିହାରେ ତାଙ୍କର ପ୍ରଥମ ଭ୍ରମଣ କାଳରେ ତେନ୍‌ଜିନ୍ ୟୁରୋପ୍ ଏବଂ ସ୍କାଣ୍ଡିନାଭିଆ ଗସ୍ତରେ ଯାଇଥିଲେ। ଏହି ଭ୍ରମଣର ଅବଧି ଛ' ସପ୍ତାହରୁ ଅଧିକ ଥିଲା ଓ ସେ ଏହି ସମୟ ମଧ୍ୟରେ ମୋଟ୍ ଏଗାରଟି ଦେଶ ବୁଲି ଦେଖିଥିଲେ। ଅବଶ୍ୟ ଭ୍ରମଣ ଶେଷ ହେବା ବେଳକୁ ସେ ସମ୍ପୂର୍ଣ୍ଣ ଭାବରେ କ୍ଲାନ୍ତ ଏବଂ ଅବସନ୍ନ ହୋଇପଡ଼ିଥିଲେ। ଏହାସତ୍ତ୍ୱେ ନୂଆ ସ୍ଥାନ ଭ୍ରମଣ ତଥା ନୂଆନୂଆ ଲୋକଙ୍କୁ ଭେଟିବାର ସୁଯୋଗ ତାଙ୍କ ଭିତରେ ନୂତନ ଉତ୍ସାହ ଭରି ଦେଉଥିଲା। ପୁଣି ଏହାଦ୍ୱାରା ବହୁ ପୁରୁଣା ତଥା ପରିଚିତ ବ୍ୟକ୍ତିଙ୍କ ସହିତ ସମ୍ପର୍କର ପୁନଃପ୍ରତିଷ୍ଠା ହୋଇଥିବା ହେତୁ ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ। ଏହି ସମୟରେ ସେ ତାଙ୍କର ଜଣେ ପୁରୁଣା ବନ୍ଧୁ ହେନେରିକ୍ ହାରିର୍‌ଙ୍କୁ ଭେଟିବାର ସୁଯୋଗ ପାଇଥିଲେ। ହେନେରିକ୍ ପୂର୍ବଭଳି ମଉଜିଆ ଓ ହାସ୍ୟରସିକ ଥିଲେ। ତାଙ୍କ ମୁଣ୍ଡର ହରିଦ୍ରା ବର୍ଣ୍ଣର ସ୍ୱଚ୍ଛ କେଶରାଶି ସେତେବେଳକୁ ପକ୍ୱକେଶରେ ପରିଣତ ହୋଇସାରିଥିଲା। ଏହା ବ୍ୟତୀତ ସମୟ ତାଙ୍କ ଭିତରେ ଅନ୍ୟ କୌଣସି ପରିବର୍ତ୍ତନ ଆଣିପାରି ନଥିଲା। ତାଙ୍କର ବଳିଷ୍ଠ ପର୍ବତାରୋହଣକାରୀ ଆଙ୍ଗୁଳିଗୁଡ଼ିକ ପୂର୍ବପରି ଶକ୍ତ ଥିଲା ଓ ତାହା ତାଙ୍କୁ ମୁଗ୍ଧ କରିଥିଲା।

ବିଦେଶ ଯାତ୍ରାକାଳରେ ରୋମ୍ ତାଙ୍କର ବିଶ୍ରାମସ୍ଥଳୀ ଥିଲା। ରୋମ୍‌ରେ ପହଞ୍ଚିବା ପରେ ସେ ମହାମହିମ ପୋପ୍‌ଙ୍କ ସହିତ ସାକ୍ଷାତ କରିଥିଲେ। ବିମାନରୁ ଅବତରଣ କରି ସେ ସିଧାସଳଖ ଭାଟିକାନ୍ ସିଟିକୁ ଯାଇଥିଲେ। ଏହା କେତେକାଂଶରେ ତାଙ୍କ ଭିତରେ ପୋଟାଲା ରାଜପ୍ରାସାଦର ସ୍ମୃତିକୁ ଜାଗ୍ରତ କରିଥିଲା। ଷଷ୍ଠ ପୋପ୍‌ଙ୍କ ସହିତ ତାଙ୍କର କଥାବାର୍ତ୍ତା ଅତି ସଂକ୍ଷେପରେ ଶେଷ ହୋଇଥିଲା। ଧର୍ମ ନିର୍ବିଶେଷରେ ସେ ସମଗ୍ର ମାନବ ଜାତିପାଇଁ ମୂଲ୍ୟବୋଧ ଉପରେ ଗୁରୁତ୍ୱାରୋପ କରୁଥିଲେ। ଏ କ୍ଷେତ୍ରରେ ତେନ୍‌ଜିନ୍‌ଙ୍କର ମତ ମଧ୍ୟ ସମାନ ଥିଲା। ସେମାନେ ପରସ୍ପରଠାରୁ ଆନନ୍ଦର ସହିତ ବିଦାୟ ନେଇଥିଲେ। ଏହାର ପରଦିନ ସେ ଗୋଟିଏ ସପ୍ତାହ ପାଇଁ ସ୍ୱିଜରଲାଣ୍ଡ୍ ଯାତ୍ରା କରିଥିଲେ। ସ୍ୱିସ୍ ପରିବାରଗୁଡ଼ିକରେ ପୋଷ୍ୟସନ୍ତାନ ରୂପେ ଗ୍ରହଣ କରାଯାଇଥିବା ୨୦୦ ତିବ୍‌ବତୀୟ ଶିଶୁଙ୍କ ମଧ୍ୟରୁ କେତେକଙ୍କୁ ସେ ସେଠାରେ ଭେଟିଥିଲେ। ଶିଶୁମାନେ ସେଠାରେ ଖୁବ୍ ସୁଖରେ ଥିବା ଦେଖି ତାଙ୍କର ମନ ଆନନ୍ଦରେ ଗଦ୍‌ଗଦ୍ ହୋଇଉଠିଥିଲା। ସ୍ୱିଜରଲାଣ୍ଡରୁ ସେ ହଲାଣ୍ଡ୍ ଯାତ୍ରା କଲେ। ସେଠାରେ ଜଣେ ରାବାଇଙ୍କ

ସହିତ ତାଙ୍କର ସାକ୍ଷାତ୍ ହୋଇଥିଲା। ହଲାଣ୍ଡରେ ଇହୁଦୀ ପଣ୍ଡିତମାନଙ୍କୁ 'ରାବାଇ' ବୋଲି କୁହାଯାଇଥାଏ। ଏହି ସାକ୍ଷାତ୍ ତେନ୍‌ଜିନ୍‌ଙ୍କ ପାଇଁ ଖୁବ୍ ମର୍ମସ୍ପର୍ଶୀ ଥିଲା। ଅବଶ୍ୟ ଭାଷାଗତ ଭିନ୍ନତା କାରଣରୁ ସେମାନେ ଖୁବ୍ କମ୍ ସମୟ ପାଇଁ ଭାବ ବିନିମୟ କରିବାରେ ସମର୍ଥ ହୋଇଥିଲେ। ରାବାଇଙ୍କଠାରୁ ଇହୁଦୀମାନଙ୍କର ଦୁଃଖ ଦୁର୍ଦ୍ଦଶାର କାହାଣୀ ଶୁଣି ତାଙ୍କ ଆଖିରେ ଲୁହ ଆସିଯାଇଥିଲା।

ଏହାପରେ ତାଙ୍କର ଆୟାରଲାଣ୍ଡ ଗସ୍ତ କରିବାର ଥିଲା। ତେବେ ତା' ପୂର୍ବରୁ ସେ ଦୁଇଦିନ ପାଇଁ ନେଦରଲାଣ୍ଡ୍ ଗଲେ ଓ ନେଦରଲାଣ୍ଡ୍ ଯିବା ବାଟରେ ବେଲଜିୟମରେ ଅଳ୍ପକିଛି ଘଣ୍ଟା ବିତାଇଲେ। ତା'ପରେ ସେ ନରୱେ, ସ୍ୱିଡେନ୍ ଓ ଡେନ୍‌ମାର୍କ ଗଲେ। ପ୍ରତ୍ୟେକ ସ୍ଥାନରେ ସେ ଦିନେ କିମ୍ବା ଦୁଇଦିନ ଲେଖାଏଁ କଟାଇ ଫେରିଥିଲେ। ତେବେ ସେ ଯେଉଁଆଡ଼େ ଯାଉଥିଲେ ସେହିସବୁ ସ୍ଥାନରେ ତାଙ୍କୁ ଆତିଥ୍ୟ, ଅଭ୍ୟର୍ଥନା ଓ ସମ୍ବର୍ଦ୍ଧନା ମିଳୁଥିଲା। ତିବ୍‌ବତୀୟଙ୍କ ପ୍ରତି ଯେ ବିଶ୍ୱବାସୀଙ୍କ ମନରେ ସ୍ନେହ, ସୌହାର୍ଦ୍ଦ୍ୟ ଓ ସହାନୁଭୂତି ରହିଥିବା ସେ ଜାଣିପାରିଥିଲେ। ନରୱେ, ଡେନ୍‌ମାର୍କ ତଥା ସ୍ୱିଡେନ୍‌ରେ ଚାଳିଶ ଜଣ ତିବ୍‌ବତୀୟ ଯୁବକ-ଯୁବତୀଙ୍କୁ ମେକାନିକ୍ ତଥା କୃଷକ ରୂପେ ଉତ୍ତମ ତାଲିମ୍ ପ୍ରଦାନ କରାଯାଉଥିଲା। ଏହିସବୁ ସଂଗଠନ ପରିଦର୍ଶନ କରି ସେ ଖୁବ୍ ଆନନ୍ଦ ଅନୁଭବ କରିଥିଲେ।

ଏହି ଗସ୍ତକାଳରେ ତେନ୍‌ଜିନ୍ ସର୍ବାଧିକ ସମୟ ବ୍ରିଟେନ୍‌ରେ ବିତାଇଥିଲେ। ସମଗ୍ର ପାଶ୍ଚାତ୍ୟ ଦେଶଗୁଡ଼ିକ ମଧ୍ୟରେ ବ୍ରିଟେନ୍‌ର ତିବ୍‌ବତ ସହିତ ସମ୍ପର୍କ ଅଧିକ ନିବିଡ଼ ଥିଲା ବୋଲି ତାଙ୍କର ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା। କେତେକ ଲୋକ ତାଙ୍କୁ ଆଶ୍ଚର୍ଯ୍ୟ କରିଦେଇ ତାଙ୍କ ସହିତ ତିବ୍‌ବତୀୟ ଭାଷାରେ କଥାବାର୍ତ୍ତା କରିଥିଲେ। ପରେ ସେ ଜାଣିବାକୁ ପାଇଥିଲେ ଯେ, ସେହିସବୁ ବ୍ୟକ୍ତିମାନଙ୍କର ପିତାମାତା ପୂର୍ବରୁ ତିବ୍‌ବତରେ ସରକାରୀ କର୍ମଚାରୀ ଭାବରେ କାର୍ଯ୍ୟ କରିଥିଲେ। ହ୍ୟୁ ରିଚାର୍ଡ୍‌ସନ୍ ସେହିଭଳି ବ୍ୟକ୍ତିମାନଙ୍କ ମଧ୍ୟରେ ଜଣେ ଥିଲେ। ବ୍ରିଟେନ୍ ଗସ୍ତ ଅତ୍ୟନ୍ତ ଉତ୍ସାହପ୍ରଦ ଥିଲା।

୧୯୭୯ ମସିହାରେ ତେନ୍‌ଜିନ୍ ପ୍ରଥମଥର ପାଇଁ ଆମେରିକା ଗସ୍ତରେ ଯାଇଥିଲେ। ସେଠାରେ ସେ ୭ ସପ୍ତାହକାଳ ବୁଲି ବିଭିନ୍ନ ସ୍ଥାନରେ ବିଶେଷକରି ଶିକ୍ଷାନୁଷ୍ଠାନମାନଙ୍କରେ ଭାଷଣ ପ୍ରଦାନ କରିଥିଲେ। ସେଥିମଧ୍ୟରୁ ଉଲ୍ଲେଖନୀୟ ଥିଲା ଲସ୍‌ଏଞ୍ଜେଲସରେ ଥିବା କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ (ୟୁସିଏଲ୍‌ଏ), ଜର୍ଜଟାଉନ୍ ଓ

ହାର୍ଭାର୍ଡ ବିଶ୍ୱବିଦ୍ୟାଳୟ। ନ୍ୟୁୟର୍କରେ ପହଞ୍ଚିବା ପରେ ସେଠାକାର ବ୍ୟକ୍ତି ସ୍ୱାଧୀନତା ବିଷୟରେ ଅବଗତ ହୋଇ ସେ ଅତ୍ୟନ୍ତ ମୁଗ୍ଧ ହୋଇଯାଇଥିଲେ। ଆମେରିକାର ଲୋକମାନେ ଅତ୍ୟନ୍ତ ବନ୍ଧୁଭାବାପନ୍ନ, ହୃଦୟବାନ ତଥା ଆମୋଦପ୍ରମୋଦପ୍ରିୟ, ଏହା ସେ ସେଠାକାର ଲୋକମାନଙ୍କ ସହିତ ଭାବବିନିମୟ ସମୟରେ ଜାଣିପାରିଥିଲେ। ଏସବୁ ସତ୍ତ୍ୱେ ଆମେରିକାରେ କିଛି ଦାରିଦ୍ର୍ୟର ଚିତ୍ର ତାଙ୍କୁ ବିସ୍ମିତ କରିଥିଲା।

ମୋଟାମୋଟି କହିବାକୁ ଗଲେ, ତେନ୍‌ଜିନ୍‌ଙ୍କ ପାଇଁ ବିଦେଶଗସ୍ତ ଖୁବ୍ ଉପଭୋଗ୍ୟ ହୋଇଥିଲା। ତେବେ ତାଙ୍କର ଯେ ଇଂରାଜୀ ଜ୍ଞାନ ବୃଦ୍ଧିହେବା ଦରକାର ତାହା ସେ ଏହିସବୁ ଦେଶ ଗସ୍ତ କରିବା ସମୟରେ ଅନୁଭବ କରିପାରିଥିଲେ। ତେଣୁ ସେ ନିଜର ଇଂରାଜୀ ଜ୍ଞାନ ବୃଦ୍ଧି କରିବେ ବୋଲି ମନେ ମନେ ସ୍ଥିର କରିଥିଲେ।

ବିଦେଶ ଭ୍ରମଣ କାଳରେ ତାଙ୍କ ଭାଷଣର ବିଷୟବସ୍ତୁ ଉପରେ ଯୁବଗୋଷ୍ଠୀ ଯେପରି ଭାବରେ ଆଗ୍ରହ ପ୍ରକାଶ କରିଥିଲେ, ତାହା ଲକ୍ଷ୍ୟକରି ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ। ସମ୍ପୂର୍ଣ୍ଣ ଅନୌପଚାରିକତା ଉପରେ ତାଙ୍କର ଗୁରୁତ୍ୱାରୋପ ସେମାନଙ୍କୁ ଅଧିକରୁ ଅଧିକ ଆକୃଷ୍ଟ କରିଥିଲା ଓ ଖାସ୍ ସେହି କାରଣରୁ ସେମାନେ ତାଙ୍କୁ ଶୁଣିବା ଲାଗି ଉତ୍ସାହିତ ହେଉଛନ୍ତି ତାହା ଜାଣିପାରିଥିଲେ। ତେନ୍‌ଜିନ୍ ସଦାସର୍ବଦା ତାଙ୍କର ଶ୍ରୋତାମାନଙ୍କୁ ଖୁବ୍ ମୂଲ୍ୟବାନ ମନେ କରିଥାନ୍ତି। ଶୂନ୍ୟତାର ବୌଦ୍ଧସିଦ୍ଧାନ୍ତଠାରୁ ଆରମ୍ଭ କରି ବିଜ୍ଞାନ ବା ବିଶ୍ୱତତ୍ତ୍ୱ, ଆଧୁନିକ ପଦାର୍ଥ ବିଦ୍ୟାଠାରୁ ପୁଣି ଯୌନତତ୍ତ୍ୱ ଓ ନୈତିକତା ଆଦି ପ୍ରସଙ୍ଗରେ ଶ୍ରୋତାମାନେ ତାଙ୍କୁ ପ୍ରଶ୍ନ ପଚାରିଥାନ୍ତି ଓ ସେ ମଧ୍ୟ ସେସବୁର ଉତ୍ତର ଖୁବ୍ ଆଗ୍ରହ ସହକାରେ ପ୍ରଦାନ କରିଥାନ୍ତି। ପାଶ୍ଚାତ୍ୟ ଲୋକମାନେ ପ୍ରାଚ୍ୟ ଲୋକଙ୍କଠାରୁ ଖୁବ୍ ଅନୁସନ୍ଧିତ୍ସୁ। ସେମାନେ କୌଣସି କଥାକୁ ବିନା ପ୍ରମାଣରେ ଗ୍ରହଣ କରନ୍ତି ନାହିଁ। ତେନ୍‌ଜିନ୍‌ଙ୍କ ଦୃଷ୍ଟିରେ ଏହା ଏକ ଭଲ ଅଭ୍ୟାସ।

ପାଶ୍ଚାତ୍ୟ ଦେଶମାନଙ୍କରେ ଗୋଟିଏ କଥା ତାଙ୍କୁ ଖୁବ୍ ଭଲ ଲାଗିଥିଲା। ତାହା ହେଉଛି ସେସବୁ ରାଷ୍ଟ୍ରରେ ବୌଦ୍ଧଧର୍ମ ପ୍ରତି ଦ୍ରୁତ ଆଗ୍ରହ ବୃଦ୍ଧି। ଏହାର ଉପଲବ୍ଧି କରି ସେ ଖୁବ୍ ଆନନ୍ଦ ଅନୁଭବ କରିଥିଲେ। ଥରେ ସେ ଏ ବାବଦରେ ଏକ ମନ୍ତବ୍ୟ ଦେଇ କହିଥିଲେ ଯେ, କେହି ବୌଦ୍ଧଧର୍ମର ନୀତି ଓ ଆଦର୍ଶକୁ ଗ୍ରହଣ କରି ଉପକୃତ ହୋଇଥିବା କଥା ଶୁଣିଲେ ସେ ଅତ୍ୟନ୍ତ ଆନନ୍ଦିତ ହୁଅନ୍ତି। ସେଥିଲାଗି ସେ ଯେଉଁଠାରେ ସୁଯୋଗ ପାଇଥାନ୍ତି ସେଠାରେ ଆଗ୍ରହୀ ଲୋକମାନଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇବା

ସହିତ ସେସବୁ ସ୍ଥାନରେ ଉତ୍ସବମାନ ଆୟୋଜନ କରାଇଥାନ୍ତି । ସେ ଭାରତ ବାହାରେ ଏକାଧିକ ରାଷ୍ଟ୍ରରେ 'କାଳଚକ୍ର' ଦୀକ୍ଷା ପ୍ରଦାନ କରିଛନ୍ତି ।

୧୯୮୯ ମସିହାରେ ଦଲାଇ ଲାମାଙ୍କୁ ଶାନ୍ତି ପାଇଁ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା । ସେ ନିରନ୍ତର ଭାବରେ ଅହିଂସା ମାର୍ଗରେ ତିବ୍‌ବତକୁ ଚୀନ୍‌ଠାରୁ ମୁକ୍ତ କରିବା ପାଇଁ ଉଦ୍ୟମ କରୁଥିବା ଯୋଗୁଁ ଏହିଭଳି ପୁରସ୍କାର ପାଇଥିଲେ । ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୁ ସବୁସମୟରେ ତିବ୍‌ବତକୁ ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ କରିବାକୁ ଅଭିଳାଷ ପୋଷଣ କରିଛନ୍ତି । ସେ ସାର୍ବଜନୀନ ଭାବରେ କହିଛନ୍ତି ଯେ ଚୀନ୍ କବଳରୁ ତିବ୍‌ବତ ମୁକ୍ତ ହେଲାପରେ ସେ କୌଣସି ରାଜନୈତିକ ପଦପଦବୀରେ ରହିବେ ନାହିଁ । କେବଳ ଧାର୍ମିକ ଜଗତର ମୁଖ୍ୟ ରହିବେ । ସେ ସର୍ବତ୍ର ବୁଲିବୁଲି ଧର୍ମ, ସଂସ୍କୃତି ଓ ଶାନ୍ତିର ବାର୍ତ୍ତା ପ୍ରଚାର କରିବେ । ସେ ଅଦ୍ୟାବଧି ବିଶ୍ୱର ବିଭିନ୍ନ ପ୍ରାନ୍ତରରୁ ୧୫୦ଟି ଗୁରୁତ୍ୱପୂର୍ଣ୍ଣ ସମ୍ମାନ ପାଇସାରିଛନ୍ତି । ଏହିସବୁ ସମ୍ମାନ ତାଙ୍କୁ ଅହିଂସା ପାଇଁ ଶିକ୍ଷା ପ୍ରଦାନ ଓ ବିଶ୍ୱବାସୀଙ୍କ ହୃଦୟରେ କରୁଣା, ଦୟା, ଅନୁକମ୍ପାର ସଞ୍ଚାର ପାଇଁ ଉଦ୍ୟମ ଯୋଗୁଁ ମିଳିପାରିଛି । ୨୦୦୭ ମସିହା ଅକ୍ଟୋବର ମାସରେ ତେନ୍‌ଜିନ୍‌ଙ୍କୁ ଆମେରିକାର ରାଷ୍ଟ୍ରପତି ଏବଂ ଅନ୍ୟାନ୍ୟ ଆମେରିକା କଂଗ୍ରେସର ସଦସ୍ୟମାନେ ମାନବିକ ଅଧିକାରର କାର୍ଯ୍ୟ ପାଇଁ ସ୍ୱର୍ଣ୍ଣପଦକ ପ୍ରଦାନ କରିଥିଲେ । ଏହା ପୂର୍ବରୁ ଆମେରିକାର ରାଷ୍ଟ୍ରପତିମାନେ ତାଙ୍କୁ ଘରୋଇ ଭାବରେ ସାକ୍ଷାତ କରୁଥିଲେ, କିନ୍ତୁ ଚୀନା ସରକାରଙ୍କୁ ଅସନ୍ତୁଷ୍ଟ କରିବା ଭୟରେ ଦଲାଇ ଲାମାଙ୍କୁ ଅନ୍ତର୍ଜାତୀୟ ସ୍ୱୀକୃତି ଦେଉନଥିଲେ ।



# (୨୫) ଆଧ୍ୟାତ୍ମିକତାର ବୈଜ୍ଞାନିକ ବିଶ୍ଳେଷଣ

ତିବ୍‌ବତୀୟ ବୌଦ୍ଧଧର୍ମ ସମ୍ପର୍କରେ ବିଶ୍ୱବ୍ୟାପୀ ଲୋକମାନଙ୍କ ମଧ୍ୟରେ ନାହିଁ ନଥିବା କୌତୂହଳ ରହିଛି। ବିଶେଷକରି, ତିବ୍‌ବତୀୟ ବୌଦ୍ଧଧର୍ମର ତଥାକଥିତ ଐନ୍ଦ୍ରଜାଲିକ କାର୍ଯ୍ୟକଳାପ ସମ୍ପର୍କରେ ତାଙ୍କୁ ବହୁ ସମୟରେ ଲୋକମାନେ ପ୍ରଶ୍ନ ପଚାରିଥାନ୍ତି। ଅନେକ ପାଶ୍ଚାତ୍ୟବାସୀ ଜାଣିବାକୁ ଚାହାନ୍ତି ଯେ, ଲୋବସାଙ୍ଗ ରାମ୍ପା ଓ ଅନ୍ୟ କେତେକଙ୍କ ଦ୍ୱାରା ରଚିତ ଐନ୍ଦ୍ରଜାଲିକ ତଥ୍ୟ ସମ୍ବଳିତ ପୁସ୍ତକଗୁଡ଼ିକ ସତ୍ୟ ଉପରେ ଆଧାରିତ ନା କଳ୍ପନାପ୍ରସୂତ। ସେହିଭଳି ପ୍ରକୃତ 'ଶାମ୍ବାଲା' ଅଛି ନା ନାହିଁ ତାହାକୁ ନେଇ ମଧ୍ୟ ଲୋକମାନଙ୍କ ମଧ୍ୟରେ ଅପରିସୀମ କୌତୂହଳ ଲୁଚି ରହିଛି। ୧୯୬୦ ଦଶକର ପ୍ରାରମ୍ଭରେ କେତେକ ବୈଜ୍ଞାନିକ ମଧ୍ୟ ତାଙ୍କ ପାଖକୁ ଏ ବିଷୟରେ ଜାଣିବା ପାଇଁ ପତ୍ର ଲେଖିଥିଲେ। ଅନେକ ଭାବନ୍ତି ଯେ, କେତେଜଣ ନିର୍ଦ୍ଦିଷ୍ଟ ଲାମା ବହୁ ପ୍ରକାରର ଅଲୌକିକ କାର୍ଯ୍ୟ କରିବାକୁ ସମର୍ଥ। ଏହା ସତ୍ୟ ନା ମିଥ୍ୟା? ଏହାର କୌଣସି ବୈଜ୍ଞାନିକ ପରୀକ୍ଷଣ ହୋଇ ପାରିବ ନା ନାହିଁ? ଏସବୁ ପ୍ରଶ୍ନର ଉତ୍ତର ସେ ସବୁବେଳେ ସଂକ୍ଷେପରେ ଦେବାକୁ ଉଚିତ ମନେକରନ୍ତି। ଆଉ ତାହା ହେଉଛି 'ଶାମ୍ବାଲା' ତିଷ୍ଠି ରହିଥିବା କଥା ନିରାଟ ସତ୍ୟ।

ତେନ୍‌ଜିନ୍ କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟର ବୈଜ୍ଞାନିକ ଅନୁସନ୍ଧାନ ପାଇଁ ସମ୍ମତି ପ୍ରକାଶ କରିଥିଲେ। ଆମେରିକାର ହାର୍ଭାର୍ଡ଼ ମେଡିକାଲ ସ୍କୁଲରେ ବିହେଭିଅରାଲ୍ ମେଡିସିନ୍ ବିଜ୍ଞାନର ମୁଖ୍ୟ ଡକ୍ଟର ହର୍ବଟ୍ ବେନ୍‌ସନ୍ ୧୯୭୯ ମସିହାରେ ଏଭଳି କିଛି ଅନୁସନ୍ଧାନ କରିଥିଲେ। ଉଲ୍ଲେଖନୀୟ ବିଷୟ ଯେ, ଡକ୍ଟର ବେନ୍‌ସନ୍ କିଛି ଅସାଧାରଣ ଜିନିଷ ପାଇଥିବା ନେଇ ଖୁବ୍ ସନ୍ତୋଷ ପ୍ରକାଶ କରିଥିଲେ। ସେ ତାଙ୍କର ଗବେଷଣାଲବ୍ଧ ସିଦ୍ଧାନ୍ତସବୁକୁ ପ୍ରସିଦ୍ଧ 'ନେଚର' ପତ୍ରିକାରେ ପ୍ରକାଶିତ କରିଥିଲେ। ଡକ୍ଟର ବେନ୍‌ସନ୍ 'ତୁମ-ମୋ' ଯୋଗାଭ୍ୟାସ କରୁଥିବା କେତେକ ସନ୍ନ୍ୟାସୀଙ୍କ ଉପରେ ଗବେଷଣା କରିଥିଲେ ଯେଉଁମାନେ ଚେତନାର ସ୍ଥୂଳତର ସ୍ତରଗୁଡ଼ିକୁ ଦମନ କରି ସୂକ୍ଷ୍ମତର ସ୍ତରଗୁଡ଼ିକର ଅନୁଭବ ହାସଲ କରିବାରେ ସମର୍ଥ ଥିଲେ। ଏହି ସନ୍ନ୍ୟାସୀମାନେ ଯୋଗାଭ୍ୟାସ ବଳରେ ନିଜ ଶରୀରର ତାପମାତ୍ରାକୁ ୧୮ ଡିଗ୍ରୀ ଫାରେନ୍‌ହାଇଟ୍

(୧୦ ଡିଗ୍ରୀ ସେଣ୍ଟିଗ୍ରେଡ୍) ପର୍ଯ୍ୟନ୍ତ ବୃଦ୍ଧି ଘଟାଇ ପାରୁଥିଲେ। ବାହାରର ଉତ୍ତାପ ଶୂନ୍ୟ ଡିଗ୍ରୀ ଥିଲେ ମଧ୍ୟ ସେମାନେ ନିଜ ଶରୀରର ଆଭ୍ୟନ୍ତରୀଣ ଶକ୍ତି ବୃଦ୍ଧିକରି ଶୀତଳ ଜଳରେ ଧୁଆଯାଇଥିବା କପଡ଼ା ସବୁକୁ ଶୁଖେଇ ଦେଇପାରୁଥିଲେ। ଡକ୍ଟର ବେନ୍‌ସନ୍ ବରଫ ଉପରେ ନଗ୍ନ ହୋଇ ବସି ଯୋଗାଭ୍ୟାସ କରୁଥିବା ସନ୍ନ୍ୟାସୀମାନଙ୍କର ଶରୀରର ଉତ୍ତାପ ମାପିଥିଲେ। ସେ ଜାଣିବାକୁ ପାଇଥିଲେ ଯେ, ଶରୀରର ଉତ୍ତାପ ହ୍ରାସ ନ ପାଇ ମଧ୍ୟ ସେମାନେ ସାରା ରାତି ବରଫ ଉପରେ ନିଶ୍ଚଳ ହୋଇ ବସି ରହୁଥିଲେ। ପରୀକ୍ଷଣ ପରେ ଡକ୍ଟର ବେନ୍‌ସନ୍ ବିଶ୍ୱାସ କରିବାକୁ ବାଧ୍ୟ ହୋଇଥିଲେ ଯେ, ସାଧନାରତ ଏହି ସାଧୁମାନେ ସେମାନଙ୍କ ଶରୀରର ଚର୍ବିକୁ ମଧ୍ୟ ଦହନ କରିବାକୁ ସାମର୍ଥ୍ୟ ରଖନ୍ତି। ପୂର୍ବରୁ କେବଳ ହିମଶାୟୀ ପଶୁମାନେ ଏପରି କରିପାରନ୍ତି ବୋଲି ବିଶ୍ୱାସ କରାଯାଉଥିଲା।

ଆଉ ଏକ ତତ୍ତ୍ୱ ହେଉଛି ଦୈବବାଣୀ। ଦୈବବାଣୀର ଉଦ୍ଦେଶ୍ୟ ଭବିଷ୍ୟବାଣୀ ନୁହେଁ। ତିବ୍‌ବତୀୟ ପରମ୍ପରାରେ କିଛି ପୁରୁଷ ଓ ମହିଳା ଦୈବବାଣୀ କରିଥାନ୍ତି। ସେମାନଙ୍କୁ 'କୁଟେନ୍' ବୋଲି କୁହାଯାଏ। ସେମାନେ ପ୍ରାକୃତିକ ଓ ଆଧ୍ୟାତ୍ମିକ ଜଗତ ସହିତ ଏକ ମଧ୍ୟସ୍ଥି ଭାବରେ କାର୍ଯ୍ୟ କରିଥାନ୍ତି। ସେମାନଙ୍କୁ 'ଭୂତ' ବୋଲି ବର୍ଣ୍ଣନା କରିବା ଅଧିକ ଯୁକ୍ତିଯୁକ୍ତ ହେବ ବୋଲି ତେନ୍‌ଜିନ୍‌ଙ୍କର ଦୃଢ଼ମତ। ପୂର୍ବକାଳରେ ତିବ୍‌ବତର ଚାରିଆଡେ ଶହଶହ ଦୈବବାଣୀର ମାଧ୍ୟମ ଥିଲେ। ସେମାନଙ୍କୁ 'ନେଚୁଙ୍ଗ ଓରାକଲ୍' ବୋଲି କୁହାଯାଉଥିଲା। ଏହି 'ନେଚୁଙ୍ଗ ଓରାକଲ'ଙ୍କ ମାଧ୍ୟମରେ ଦଲାଇ ଲାମାଙ୍କର ଅନ୍ୟତମ ରକ୍ଷାକାରୀ ଦେବତା 'ଦୋର୍ଜ୍ଜୀ ଡ୍ରାକ୍‌ଡେନ୍' ପ୍ରକଟିତ ହୋଇ ଦୈବବାଣୀ କରିଥାନ୍ତି। ସେଥିପାଇଁ ନବବର୍ଷ ଉତ୍ସବ ପାଳନ ସମୟରେ ଦଲାଇ ଲାମା 'ନେଚୁଙ୍ଗ୍'ଙ୍କ ସହିତ ପରାମର୍ଶ କରିଥାନ୍ତି। ଏହା ଶହଶହ ବର୍ଷରୁ ପ୍ରଚଳିତ ଏକ ବିଧି ହୋଇ ରହିଆସିଛି ଆଉ ଆଜି ମଧ୍ୟ ତାହା ବଳବତ୍ତର ରହିଛି। ତେନ୍‌ଜିନ୍ କହନ୍ତି ଯେ, ବର୍ତ୍ତମାନର ବିଜ୍ଞାନ ଯୁଗର ପାଠକମାନଙ୍କୁ ଏହା କପୋଳକଳ୍ପିତ ଅଥବା ମିଥ୍ୟା ବୋଲି ମନେହୋଇ ପାରୁଥାଏ। ମାତ୍ର ଏହାକୁ ସେ ମଧ୍ୟ ବିଶ୍ୱାସ କରନ୍ତି। ଏହାର କାରଣ, 'ନେଚୁଙ୍ଗ୍ ଓରାକଲ' ତାଙ୍କୁ ଯେତେବେଳେ ଯାହା କହିଛନ୍ତି ତାହାସବୁ ଠିକ୍ ହୋଇଛି।

ଅବିଶ୍ୱସନୀୟ ମନେହେଲେ ମଧ୍ୟ ଏହା ସତ୍ୟ। ଦୈବବାଣୀ ମାଧ୍ୟମରେ ମିଳୁଥିବା ବିଭିନ୍ନ ପ୍ରଶ୍ନର ଉତ୍ତର କ୍ୱଚିତ୍ ଭୁଲ ହୋଇଥାଏ। ଯେମିତିକି ଲାସାରୁ ତାଙ୍କର ପଳାୟନ ଘଟଣା। ତେନ୍‌ଜିନ୍‌ଙ୍କ ମତରେ ଏହିସବୁ ଦୈବବାଣୀ ହେଉଛି ଏକ ଅନ୍ତରଙ୍ଗ ବିଶ୍ୱାସର

କଥା। ଏହାକୁ କୌଣସି ବୈଜ୍ଞାନିକ ଗବେଷଣାର କଷଟି ପଥରରେ ପରଖିବା ସମ୍ଭବ ନୁହେଁ।

ସେହିଭଳି ଜାତସ୍ମର ଚିହ୍ନଟ ପ୍ରକ୍ରିୟା। ଜାତସ୍ମର ହେଉଛନ୍ତି ସେହିମାନେ ଯେଉଁମାନେ ନିଜର ପୂର୍ବଜନ୍ମର କଥାସବୁ ମନେପକେଇପାରନ୍ତି। ବୌଦ୍ଧଧର୍ମାବଲମ୍ବୀମାନେ ପୁନର୍ଜନ୍ମ ତତ୍ତ୍ୱକୁ ଧ୍ରୁବ ସତ୍ୟ ବୋଲି ବିଶ୍ୱାସ କରନ୍ତି। ସମସ୍ତ ଦୁର୍ଦ୍ଦଶାଗ୍ରସ୍ତ ଚେତନଶୀଳ ପ୍ରାଣୀମାନଙ୍କ ଏକକ ଆତ୍ମସତ୍ତାକୁ ସମର୍ଥ କରାଇବା ପୁନର୍ଜନ୍ମର ପ୍ରମୁଖ ଉଦ୍ଦେଶ୍ୟ। ପୁନର୍ଜନ୍ମର ଆଉ ଏକ ଉଦ୍ଦେଶ୍ୟ ହେଲା, ଗୋଟିଏ ଆତ୍ମସତ୍ତାର ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ନିରବଚ୍ଛିନ୍ନ ଭାବରେ ଚଳାଇ ରଖିବା ପାଇଁ ସୁଯୋଗ ସୃଷ୍ଟି କରିବା। ଯେତେବେଳେ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତିର ଉତ୍ତରାଧିକାରୀ ଖୋଜା ହୁଏ ସେତିକିବେଳେ ଏହାର ଗୂଢ଼ ତତ୍ତ୍ୱ ଉପଲବ୍‌ଧି କରିହୁଏ। ଉଦାହରଣ ସ୍ୱରୂପ, ସମସ୍ତ ଚେତନଶୀଳ ପ୍ରାଣୀଙ୍କୁ ସାହାଯ୍ୟ କରିବା ପାଇଁ ସେ (ତେନ୍‌ଜିନ) ସାଧାରଣ ଭାବରେ ଉଦ୍ୟମ କରୁଥିଲେ ମଧ୍ୟ ବିଶେଷକରି ତିବ୍‌ବତୀୟମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ସେ ସ୍ୱତନ୍ତ୍ର ଉଦ୍ୟମ କରିଥାନ୍ତି। ଦଲାଇ ଲାମାଙ୍କୁ ନେଇ ତିବ୍‌ବତୀୟମାନଙ୍କର ଚିନ୍ତାଧାରା ମଧ୍ୟ ସ୍ୱତନ୍ତ୍ର। ଯଦି ତିବ୍‌ବତ ସ୍ୱାଧୀନତା ଲାଭ କରିବା ପୂର୍ବରୁ ତାଙ୍କର ଦେହାନ୍ତ ଘଟେ ତା'ହେଲେ ସେ ତିବ୍‌ବତ ବାହାରେ କୌଣସି ନା କୌଣସି ଦେଶରେ ଜନ୍ମ ନେବେ ବୋଲି ସେମାନେ ଧରିନେବା ଯୁକ୍ତିଯୁକ୍ତ। କାରଣ ସେ ଏବେ ନିର୍ବାସନରେ ତିବ୍‌ବତରେ ନ ରହି ଦେଶ ବାହାରେ ରହିଛନ୍ତି। ଠିକ୍ ସେହିଭଳି ଭାବରେ ଏମିତି ବି ହୋଇପାରେ ଯେ, ତିବ୍‌ବତର ଲୋକମାନେ ସ୍ୱାଧୀନତା ପାଇଁ ଆଉ ଜଣେ ଦଲାଇ ଲାମାଙ୍କର ଆବଶ୍ୟକତା ଅନୁଭବ କରି ନ ପାରନ୍ତି।

ତିବ୍‌ବତୀୟ ଅନୁଭୂତିରେ ଆଉ ଏକ ଗବେଷଣାସାପେକ୍ଷ ବିଷୟ ହେଉଛି ତିବ୍‌ବତୀୟ ଚିକିତ୍ସା ବ୍ୟବସ୍ଥା। ଏହି ଚିକିତ୍ସା ଦୁଇ ହଜାରରୁ ଊର୍ଦ୍ଧ୍ୱ ବର୍ଷର ପୁରୁଣା। ଏହାର କିଛି ଅଂଶ ପ୍ରାଚୀନ ପାରସ୍ୟରୁ ଆମଦାନୀ ହୋଇଛି। ତେବେ ସମ୍ପ୍ରତି ଏହାର ନୀତିଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ନିଜସ୍ୱ ଓ ବୌଦ୍ଧଧର୍ମସମ୍ମତ। ତିବ୍‌ବତୀୟ ଚିକିତ୍ସା ବ୍ୟବସ୍ଥା ଅନୁଯାୟୀ, ତିନିଗୋଟି ଅନିଷ୍ଟକାରୀ ତତ୍ତ୍ୱ ଶରୀରରେ ପ୍ରାଧାନ୍ୟ ବିସ୍ତାର କରିଛନ୍ତି। ସେଥିଲାଗି ଶରୀର କେବେ ସମ୍ପୂର୍ଣ୍ଣ ଭାବରେ ରୋଗମୁକ୍ତ ହୋଇ ରହିପାରେନାହିଁ। ମାତ୍ର ସେସବୁକୁ ଯଦି ସମତୁଲ କରି ରଖାଯାଏ ତା'ହେଲେ ଶରୀର ସୁସ୍ଥ ରହିବା ଅନିବାର୍ଯ୍ୟ। ସାଧାରଣତଃ ରୋଗୀର ନାଡ଼ି ପରୀକ୍ଷା କରି ଅଥବା ତାହାର ମୂତ୍ର ପରୀକ୍ଷା

କରି ରୋଗ ନିରୂପଣ କରାଯାଇଥାଏ। ହାତ ଓ ମଣିବନ୍ଧର ବାରଗୋଟି ସ୍ଥାନରେ ନାଡ଼ି ପରୀକ୍ଷା କରାଯାଇଥାଏ। ସେହିଭଳି ବର୍ଣ୍ଣ, ଗନ୍ଧ ଆଦି ବିଷୟକୁ ନେଇ ମଧ୍ୟ ବହୁବିଧ ଉପାୟରେ ମୂତ୍ର ପରୀକ୍ଷା କରାଯାଇଥାଏ। ଚିକିତ୍ସା କ୍ଷେତ୍ରରେ ପ୍ରଥମ କାର୍ଯ୍ୟ ହେଉଛି ରୋଗୀର ଆଚରଣ ନିରୀକ୍ଷଣ କରିବା। ଦ୍ୱିତୀୟରେ ଔଷଧ ସ୍ଥିର କରିବା। ତୃତୀୟରେ ଆକ୍ୟୁପଙ୍କ୍‌ଚର (ଛୁଞ୍ଚିଫୋଡ଼ି ରୋଗ ଭଲ କରିବା ପଦ୍ଧତି) ଓ ମକ୍ସିବସ୍‌ଚନ୍ (ଉତ୍ତାପ ଚିକିତ୍ସା) ଏବଂ ଚତୁର୍ଥରେ ଅସ୍ତ୍ରୋପଚାର ବା ଶଲ୍ୟ ଚିକିତ୍ସା। ତିବ୍‌ବତୀୟ ବ୍ୟବସ୍ଥାରେ ଔଷଧଗୁଡ଼ିକୁ ଜୈବିକ ପଦାର୍ଥରୁ ପ୍ରସ୍ତୁତ କରାଯାଇଥାଏ। କେତେକ କ୍ଷେତ୍ରରେ ହୀରକ ଚୂର୍ଣ୍ଣକୁ ମିଶାଇ କେତେକ ଧାତବ ଦ୍ରବ୍ୟ ଓ ଅମ୍ଳଜାନ ଜାରିତ ଧାତୁ ଏହା ସହିତ ସମିଶ୍ରଣ କରାଯାଇଥାଏ। ଏଠାରେ ଗୋଟିଏ କଥା ଉଲ୍ଲେଖନୀୟ ଯେ, ତିବ୍‌ବତୀୟ ଚିକିତ୍ସାବ୍ୟବସ୍ଥା ସମ୍ପର୍କରେ ଖୁବ୍ କମ୍ ବୈଜ୍ଞାନିକ ଗବେଷଣା ହୋଇଛି। କିନ୍ତୁ ଏକଥା ସ୍ୱୀକାର୍ଯ୍ୟ ଯେ, ତିବ୍‌ବତୀୟ ଚିକିତ୍ସା ବ୍ୟବସ୍ଥା ଅତି ଉଚ୍ଚକୋଟୀର ଏବଂ ଏହାର ଔଷଧଗୁଡ଼ିକ ଅପ୍ରତ୍ୟାଶିତ ଭାବରେ ଫଳଦାୟୀ। କାରଣ ଏହା ସହିତ ତିବ୍‌ବତୀୟମାନଙ୍କର ଆଧ୍ୟାତ୍ମିକ ବିଶ୍ୱାସ ମିଶି ରହିଛି।

ତେନ୍‌ଜିନ୍ କହନ୍ତି ଯେ, ଆଧ୍ୟାତ୍ମିକ ବିଶ୍ୱାସକୁ କୌଣସି ପରିପ୍ରେକ୍ଷୀରେ ବି ବୈଜ୍ଞାନିକ ବ୍ୟବସ୍ଥା ସହିତ ବାନ୍ଧି ରଖାଯାଇପାରିବ ନାହିଁ। କାରଣ ବୌଦ୍ଧଧର୍ମ ଆରମ୍ଭ ହେବାର ଅଢ଼େଇ ହଜାର ବର୍ଷ ପର୍ଯ୍ୟନ୍ତ କ୍ରମାଗତ ଭାବରେ ପ୍ରାସଙ୍ଗିକ ହୋଇ ରହିଥିବା ବେଳେ ବିଜ୍ଞାନର ଅସୀମତାର ଆୟୁଷକାଳ ଅପେକ୍ଷାକୃତ ସ୍ୱଳ୍ପ। ସେ କହନ୍ତି, ବିଜ୍ଞାନସମ୍ମତ ଯୁକ୍ତିନିଷ୍ଠତାକୁ ଗୁରୁତ୍ୱ ଦେଉଥିବା ବେଳେ କେହି ପ୍ରକୃତିଦ୍ୱାରା ଧାର୍ଯ୍ୟ ସୀମାକୁ ଅତିକ୍ରମ କରିଯିବା ଉଚିତ ନୁହେଁ। ତିବ୍‌ବତୀୟ ବୌଦ୍ଧଧର୍ମର ଇନ୍ଦ୍ରଜାଲ ଓ ପ୍ରହେଳିକା ସେହି ପ୍ରକୃତିର ନିୟମ ଉପରେ ପର୍ଯ୍ୟବସିତ।



# (୨୬) ତିବ୍‌ବତର ଦୁରାବସ୍ଥା

୧୯୫୯ ମସିହା ଆରମ୍ଭରେ ତିବ୍‌ବତରେ ଉତ୍ତେଜନା ଚରମ ପର୍ଯ୍ୟାୟରେ ପହଞ୍ଚିଥିଲା। ସେତିକିବେଳେ ଚେୟାରମ୍ୟାନ୍ ମାଓଙ୍କ ନିକଟକୁ ଚୀନା ସେନାବାହିନୀ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଚିଠି ଲେଖିଥିଲା। ଚିଠିରେ ସେନା ଦର୍ଶାଇଥିଲା ଯେ, ତିବ୍‌ବତୀୟମାନେ ପୂର୍ଣ୍ଣମାତ୍ରାରେ ଆଇନ ଅମାନ୍ୟ କରିବାକୁ ପ୍ରସ୍ତୁତ ହୋଇଯାଇଛନ୍ତି। ଏତେ ମାତ୍ରାରେ ଆଇନ ଅମାନ୍ୟ ହେଉଛି ଯେ, ବନ୍ଦୀମାନଙ୍କୁ ରଖିବା ପାଇଁ ଆଉ କୌଣସି କାରାଗାରରେ ଜାଗା ନାହିଁ। ଏହା ଶୁଣି ମାଓ ଉତ୍ତର ଦେଇଥିଲେ ଯେ, ଯଦି ଆବଶ୍ୟକ ପଡୁଛି ତା'ହେଲେ ତିବ୍‌ବତର ସମସ୍ତ ଜନତାଙ୍କୁ ବନ୍ଦୀ କରି ରଖାଯିବାର ବ୍ୟବସ୍ଥା କରାଯିବ। ଏ ଖବର ଶୁଣି ତେନ୍‌ଜିନ୍ ପୂର୍ଣ୍ଣମାତ୍ରାରେ ଦୁଃଖୀ ଓ ଭୟଭୀତ ହୋଇ ପଡ଼ିଥିଲେ। ମାର୍ଚ୍ଚ ବିଦ୍ରୋହ ପରେ ସାମୟିକ ଭାବରେ ଶାନ୍ତିର ପୁନଃପ୍ରତିଷ୍ଠା ହୋଇଥିଲା। ଏହି ସମୟରେ ଚେୟାରମ୍ୟାନ ମାଓ ପଚାରିଥିଲେ – ଦଲାଇ ଲାମାଙ୍କର ଖବର କ'ଣ ? ତାଙ୍କୁ ଯେତେବେଳେ କୁହାଗଲା ଯେ, ସେ ଖସି ଭାରତ ପଳେଇ ଯାଇଛନ୍ତି ସେତେବେଳେ ମାଓ ଉତ୍ୟକ୍ତ ହୋଇ କହି ଉଠିଥିଲେ – ତା'ହେଲେ ଚୀନ୍-ତିବ୍‌ବତ ଯୁଦ୍ଧରେ ଚୀନ୍ ହାରିଯାଇଛି।

ଏହି ଘଟଣାପରେ ତେନ୍‌ଜିନ୍ ଚୀନ୍ ଓ ତିବ୍‌ବତ ସମ୍ପର୍କରେ ସମସ୍ତ ସମାଚାର ସଂଗ୍ରହ କରିବାକୁ ଆଗ୍ରହୀ ହୋଇପଡ଼ିଲେ। ସେ ବିଭିନ୍ନ ସମ୍ବାଦପତ୍ରରୁ ଏହି ସମାଚାରସବୁ ସଂଗ୍ରହ କରୁଥିଲେ। ୧୯୭୬ ମସିହା ସେପ୍ଟେମ୍ବର ମାସରେ ମାଓଙ୍କ ମୃତ୍ୟୁ ହେବା ପର୍ଯ୍ୟନ୍ତ ସେ ଏହି ପ୍ରକ୍ରିୟା ଚଳାଇ ରଖିଥିଲେ।

୧୯୭୭ ମସିହାରେ ଲି ଜିଆନିଆନ୍ ଚୀନ୍ ସାଧାରଣତନ୍ତ୍ରର ରାଷ୍ଟ୍ରପତି ହେଲେ। ଏହି ସମୟରେ ସେ କହିଥିଲେ ଯେ, ସାଂସ୍କୃତିକ ବିପ୍ଳବ ବହୁତ କିଛି ହାସଲ କରି ପାରିଥିଲେ ହେଁ ଏହା ଅନେକ କିଛି କ୍ଷତି ମଧ୍ୟ କରିଛି। ରାଷ୍ଟ୍ରପତି ଲି ଜିଆନିଆନ୍‌ଙ୍କର ଏହି ଉକ୍ତିରୁ ତିବ୍‌ବତ ପ୍ରତି ଚୀନ୍ ଶାସକମାନଙ୍କର ମନୋଭାବରେ ପରିବର୍ତ୍ତନ ଘଟୁଥିବା ସେ ଅନୁମାନ କରିପାରିଥିଲେ। ଏହା ପରେପରେ ତିବ୍‌ବତ ସମ୍ପର୍କରେ ଅନେକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବିବୃତି ପ୍ରକାଶ ପାଇଲା। ସେତେବେଳକୁ ଗାବୋ ଗୱାଙ୍ଗ୍ ଜିଗ୍‌ମେ

ପେକିଂ ପ୍ରଶାସନର ଜଣେ କ୍ଷମତାଶାଳୀ ସଦସ୍ୟ ହୋଇସାରିଥିଲେ। ସେହିବର୍ଷ ଏପ୍ରିଲ ମାସରେ ଗାବୋ ଘୋଷଣା କଲେ ଯେ, ଭାରତକୁ ଲୁଚି ପଳେଇ ଯାଇଥିବା ଦଲାଇ ଲାମା ଓ ତାଙ୍କର ଅନୁଗାମୀମାନଙ୍କ ପ୍ରତ୍ୟାବର୍ତ୍ତନକୁ ଚୀନ୍ ସ୍ୱାଗତ କରିବ।

୧୯୭୮ ମସିହା ଫେବୃଆରୀ ମାସ ୨୫ ତାରିଖରେ ତେନ୍‌ଜିନ୍‌ଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଇ ପ୍ରାୟ ଗୋଟିଏ ଦଶନ୍ଧି କାରାରୁଦ୍ଧ କରି ରଖିବା ପରେ ପଞ୍ଚେନ୍ ଲାମାଙ୍କୁ ହଠାତ୍ ଚୀନ୍ କର୍ତ୍ତୃପକ୍ଷ କାରାମୁକ୍ତ କରିଦେଲେ। ସେତିକି ନୁହେଁ, ତାଙ୍କୁ ଆହୁରି ବିସ୍ମିତ କରିଦେଇ ତାଙ୍କର ପ୍ରସ୍ତାବଗୁଡ଼ିକୁ ଅଚାନକ ଚୀନାମାନେ ଗୁରୁତ୍ୱ ପ୍ରଦାନ କରିବାକୁ ଲାଗିଲେ। ବିଦେଶୀ ପର୍ଯ୍ୟଟକମାନଙ୍କୁ ତିବ୍‌ବତରେ ପ୍ରବେଶ କରିବା ନିମନ୍ତେ ଅନୁମତି ମଧ୍ୟ ଦିଆଗଲା। ୧୯୭୮ ମସିହାର ଶେଷ ଆଡ଼କୁ ବେଜିଂରେ ଡେଙ୍ଗ ଜିଆଓପିଙ୍ଗ ଚୀନ୍‌ର ସର୍ବୋଚ୍ଚ ଶାସନକର୍ତ୍ତା ଭାବରେ ଶପଥ ଗ୍ରହଣ କଲେ। ଏହାପରେ ଚୀନ୍ ଏବଂ ତିବ୍‌ବତ ସମ୍ପର୍କରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଲା। ଗୋଟିଏ ମଧ୍ୟମପନ୍ଥୀ ଗୋଷ୍ଠୀର ନେତା ଭାବରେ ତାଙ୍କର ପ୍ରାଧାନ୍ୟ ବିସ୍ତାର ଭବିଷ୍ୟତ ପାଇଁ ପ୍ରକୃତ ଆଶା ଭରସାର ସୂଚନା ଭଳି ମନେହେଲା। ଡେଙ୍ଗ ଦିନେ ନା ଦିନେ ତାଙ୍କ ଦେଶ ପାଇଁ ବହୁତ ବଡ଼ କାମ କରିପାରିବେ ବୋଲି ତେନ୍‌ଜିନ୍ ସବୁବେଳେ ବିଚାର କରୁଥିଲେ। ୧୯୫୪-୫୫ରେ ସେ ଚୀନ୍‌ଯାତ୍ରା କରିଥିବା ବେଳେ ଡେଙ୍ଗ୍‌ଙ୍କୁ ସେ ଅନେକଥର ସାକ୍ଷାତ୍ କରିଥିଲେ ଏବଂ ତାଙ୍କର ବ୍ୟକ୍ତିତ୍ୱରେ ଖୁବ୍ ମୁଗ୍ଧ ହୋଇଥିଲେ। ଡେଙ୍ଗ୍ ଜିଆଓପିଙ୍ଗ୍ ଚୀନ୍‌ର ସର୍ବୋଚ୍ଚ କର୍ତ୍ତା ହେବା ପରେ ଅନେକ ସକାରାତ୍ମକ ପରିବର୍ତ୍ତନ ଘଟିଥିଲା। ୧୯୭୮ ମସିହାରେ ପ୍ରାୟ ଚଉତିରିଶ ଜଣ ବୟୋଜ୍ୟେଷ୍ଠ ବନ୍ଦୀଙ୍କୁ ଲାସାଠାରେ ଏକ ବିରାଟ ଉତ୍ସବ ଆୟୋଜନ କରାଯାଇ ସର୍ବସାଧାରଣରେ ମୁକ୍ତ କରିଦିଆ ଯାଇଥିଲା। ଏହି ଲୋକମାନେ ସାଧାରଣତଃ ଶେଷ ବିଦ୍ରୋହୀ ନେତା ଭାବରେ ଜଣାଶୁଣା ଥିଲେ। ଅଧିକନ୍ତୁ ଚୀନା ସମ୍ବାଦପତ୍ରରେ କୁହାଯାଇଥିଲା ଯେ, ସେହି ବୟୋଜ୍ୟେଷ୍ଠ ବିଦ୍ରୋହୀ ନେତାମାନଙ୍କୁ ଏକ ମାସବ୍ୟାପୀ 'ନୂତନ ତିବ୍‌ବତ' ଗସ୍ତରେ ନିଆଯିବା ପରେ ସେମାନଙ୍କୁ କାମଧନ୍ଦା ଖୋଜିବାରେ ସାହାଯ୍ୟ କରାଯିବ ଓ ସେମାନେ ଯଦି ଇଚ୍ଛା କରନ୍ତି ତା'ହେଲେ ବିଦେଶ ଯିବାରେ ମଧ୍ୟ ସେମାନଙ୍କୁ ସାହାଯ୍ୟ କରାଯିବ।

୧୯୭୯ ମସିହାରେ ଏକ ଅଭୂତପୂର୍ବ ଘଟଣା ଘଟିଲା। ୧୯୭୯ ମସିହା ଫେବୃଆରୀ ମାସ ୧ ତାରିଖରେ ଯୁକ୍ତରାଷ୍ଟ୍ର ଆମେରିକା ଔପଚାରିକ ଭାବରେ ଚୀନ୍

ସାଧାରଣତନ୍ତ୍ରକୁ ସ୍ୱୀକାର କରିଥିବା ବିଷୟ ଘୋଷଣା କଲା। ସେତିକିବେଳେ, ଦୀର୍ଘ ଚଉଦ ବର୍ଷ ଧରି ଅଜ୍ଞାତବାସରେ ଥିବା ପଞ୍ଚେନ୍ ଲାମା ପ୍ରଥମଥର ପାଇଁ ସର୍ବସାଧାରଣରେ ଆତ୍ମପ୍ରକାଶ କଲେ ଓ ଦଲାଇ ଲାମାଙ୍କ ସମେତ ନିର୍ବାସନରେ ଥିବା ତିବ୍‌ବତୀୟମାନେ ତିବ୍‌ବତ ପ୍ରତ୍ୟାବର୍ତ୍ତନ କରନ୍ତୁ ବୋଲି ଆହ୍ୱାନ ଦେଲେ। ସେ ଘୋଷଣା କରି କହିଥିଲେ ଯେ, ଯଦି ଦଲାଇ ଲାମା ତିବ୍‌ବତୀୟ ଜନସାଧାରଣଙ୍କ ସୁଖ ସମୃଦ୍ଧି ଓ କଲ୍ୟାଣ କରିବାରେ ନିଷ୍ଠାପର ଭାବରେ ଆଗ୍ରହୀ ତା'ହେଲେ ଏ ସମ୍ପର୍କରେ ଆଉ କୌଣସି ସନ୍ଦେହ କରିବାର ଆବଶ୍ୟକତା ନାହିଁ। ଏହି ଘଟଣାର ଠିକ୍ ଗୋଟିଏ ସପ୍ତାହ ପରେ ଉତ୍ତରପ୍ରଦେଶର କାନପୁରଠାରେ ତେନ୍‌ଜିନ୍ ଗୋଟିଏ ଧର୍ମସଭାରେ ଯୋଗଦେବାକୁ ଯାଇଥିଲେ। ଏହି ସମୟରେ ଗ୍ୟାଲୋ ଥୋଣ୍ଡୁପ୍ ଅପ୍ରତ୍ୟାଶିତ ଭାବରେ ଆସି ସେଠାରେ ପହଞ୍ଚିଗଲେ ଓ କହିଲେ ଯେ, ନ୍ୟୁ ଚାଇନା ନ୍ୟୁଜ୍ ଏଜେନ୍ସୀ 'ଜିନୁଆ' ତାଙ୍କ ସହିତ ଯୋଗାଯୋଗ ରକ୍ଷା କରିବାକୁ ଆଗ୍ରହୀ ଅଛି। ଏକଥା ମଧ୍ୟ ଡେଙ୍ଗ ଜିଆଓପିଙ୍ଗ ଜାଣିଛନ୍ତି। ତେନ୍‌ଜିନ୍‌ଙ୍କ ପାଇଁ ଏହି ଘଟଣା ବାସ୍ତବରେ ଖୁବ୍ ଅପ୍ରତ୍ୟାଶିତ ଥିଲା। ସେଥିଲାଗି ସେ ତୁରନ୍ତ କୌଣସି ଉତ୍ତର ଦେଇ ନଥିଲେ। ତାହାର କାରଣ ତାଙ୍କର ଚୀନ୍ କର୍ତ୍ତୃପକ୍ଷଙ୍କ ଉପରେ ଭରସା ତୁଟି ଯାଇଥିଲା। ତାଙ୍କର ଧାରଣା ହୋଇଥିଲା ଯେ, ଚୀନାମାନେ ଅତ୍ୟଧିକ ଜନସଂଖ୍ୟା ଯୋଗୁଁ ମଣିଷମାନଙ୍କୁ ଶସ୍ତା ପଣ୍ୟଦ୍ରବ୍ୟ ବୋଲି ବିଚାର କରୁଛନ୍ତି। ଅପରପକ୍ଷରେ, ସେ ଏକଥା ଚିନ୍ତାକଲେ ଯେ, ମାନବୀୟ ସମସ୍ୟାଗୁଡ଼ିକ ହିଁ କେବଳ ମାନବିକ ସମ୍ପର୍କ ମାଧ୍ୟମରେ ସମାଧାନ କରାଯାଇପାରିବ। ତେଣୁ ଯଦି ଚୀନ୍ କର୍ତ୍ତୃପକ୍ଷ ଅକପଟ ତଥା ଆନ୍ତରିକତା ସହକାରେ ତାଙ୍କ ସହିତ ଆଲୋଚନା କରିବାକୁ ଚାହୁଁଛନ୍ତି ତା'ହେଲେ ସେଠାକୁ ସେ ଏକ ପ୍ରତିନିଧି ଅନୁସନ୍ଧାନକାରୀ ଦଳକୁ ପଠାଇବା ଉଚିତ। ଏକଥା ସେ ଭାରତରେ ଥିବା ଚୀନା ଦୂତାବାସ ଜରିଆରେ ବେଜିଂକୁ ଜଣାଇଦେଲେ।

୧୯୭୯ ମସିହା ଅଗଷ୍ଟ ମାସ ୨ ତାରିଖରେ ନିର୍ବାସନରେ ଥିବା ତିବ୍‌ବତ ସରକାରଙ୍କର ଏକ ପ୍ରତିନିଧି ଦଳ ସେ ଚୟନ କଲେ ଓ ସେମାନଙ୍କୁ ପେକିଂ ପଠାଇଲେ। ଏହି ଦଳକୁ ସେ ଅତି ସତର୍କତାର ସହିତ ଗଠନ କରିଥିଲେ। ତେନ୍‌ଜିନ୍‌ଙ୍କର ଭାଇ ଲବସାଙ୍ଗ ସାମଟେନ୍ ମଧ୍ୟ ଏହି ପ୍ରତିନିଧି ଦଳର ଜଣେ ସଦସ୍ୟ ଥିଲେ। ଏହି ପ୍ରତିନିଧି ଦଳ ପେକିଂରେ ପ୍ରାୟ ଦୁଇ ସପ୍ତାହ ବିତାଇଲେ। ସେହି ସମୟ ମଧ୍ୟରେ ସେମାନେ ବିଭିନ୍ନ ବୈଠକରେ ଯୋଗ ଦେଇଥିଲେ। ସେମାନଙ୍କୁ ଲୋକମାନେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା

ଜଣାଇଥିଲେ। ଏହି ପ୍ରତିନିଧି ଦଳ ପେକିଂରେ ପଞ୍ଚେନ୍ ଲାମାଙ୍କୁ ସାକ୍ଷାତ୍ କରିଥିଲେ। ସେମାନେ ଫେରିଆସି ପଞ୍ଚେନ୍ ଲାମାଙ୍କ ସମ୍ପର୍କରେ ଯାହା ସୂଚନା ଦେଲେ ତାହା ଶୁଣି ତେନ୍‌ଜିନ୍‌ଙ୍କ ହୃଦୟ ଥରି ଉଠିଥିଲା। ପଞ୍ଚେନ୍ ଲାମାଙ୍କ ପ୍ରତି ଚୀନା କର୍ତ୍ତୃପକ୍ଷ ଅତି ନିଷ୍ଠୁର ବ୍ୟବହାର ପ୍ରଦର୍ଶନ କରିଥିଲେ। ତାଙ୍କୁ ଅକଥନୀୟ ଯନ୍ତ୍ରଣା ଦିଆଯାଇଥିଲା। ତାଙ୍କ ଶରୀରରେ ଥିବା କ୍ଷତ ଚିହ୍ନସବୁ ତାହାର ନମୁନା ବହନ କରୁଥିଲା।

ସମଗ୍ର ତିବ୍‌ବତର ଯୋଗାଯୋଗ ବ୍ୟବସ୍ଥାରେ ନାଟକୀୟ ପରିବର୍ତ୍ତନ ଘଟିଥିବା ତେନ୍‌ଜିନ୍‌ଙ୍କର ପ୍ରତିନିଧିମାନେ ଲକ୍ଷ୍ୟ କରିଥିଲେ। ଚାରିଆଡ଼େ ରାସ୍ତା ନିର୍ମାଣ କରାଯାଇଥିଲା ଓ ବସତିଗୁଡ଼ିକୁ ସେହି ସବୁ ରାସ୍ତାଦ୍ୱାରା ସଂଯୋଗ କରାଯାଇଥିଲା। ହଜାର ହଜାର ଭାରୀ ଯାନବାହନ ସେସବୁ ରାସ୍ତାରେ ଚଳାଚଳ କରୁଥିଲା। ଅବଶ୍ୟ ସେସବୁ ଚୀନା କର୍ତ୍ତୃପକ୍ଷଙ୍କ ସମ୍ପତ୍ତି ଥିଲା। ତିବ୍‌ବତର ସାଧାରଣ ଲୋକଙ୍କ ପାଇଁ କିନ୍ତୁ କଠୋର ନିୟମ ଜାରି କରାଯାଇଥିଲା। ସେହିଭଳି ଭାବରେ ଖାଉଟି ସାମଗ୍ରୀଗୁଡ଼ିକ ମିଳୁଥିଲେ ମଧ୍ୟ ସାଧାରଣ ଲୋକେ ସେସବୁ କିଣିବା ପାଇଁ ସକ୍ଷମ ହୋଇପାରୁ ନଥିଲେ। ତିବ୍‌ବତୀୟ ଲୋକମାନେ ଉତ୍କଟ ଦାରିଦ୍ର୍ୟ ମଧ୍ୟଦେଇ କାଳାତିପାତ କରୁଥିଲେ। ଏହା ସହିତ ବୋଝ ଉପରେ ନଳିତା ବିଡ଼ା ପରି ଲୋକମାନଙ୍କ ମଧ୍ୟରେ କରଭାର ଲଦି ଦିଆଯାଇଥିଲା। ଏପରିକି ବାରଆଡ଼େ ବୁଲି ଭିକ୍ଷାବୃତ୍ତି କରି ଜୀବନ ବିତାଉଥିବା ଲୋକମାନଙ୍କୁ ମଧ୍ୟ କର ଦେବାକୁ ବାଧ୍ୟ କରାଯାଇଥିଲା। ହଜାର ହଜାର ସନ୍ନ୍ୟାସାଶ୍ରମକୁ ଧ୍ୱଂସ କରିଦିଆଯାଇଥିଲା। ଚୀନା କର୍ତ୍ତୃପକ୍ଷ ତିବ୍‌ବତୀୟ ଜନସଂଖ୍ୟାକୁ ରୋକିବା ପାଇଁ ଦମନମୂଳକ ପଦକ୍ଷେପ ଗ୍ରହଣ କରିଥିଲେ। ପ୍ରତ୍ୟେକ ଦମ୍ପତିଙ୍କୁ ଦୁଇଟିରୁ ଅଧିକ ସନ୍ତାନ ଜନ୍ମ କରିପାରିବେ ନାହିଁ ବୋଲି ନିର୍ଦ୍ଦେଶ ଦିଆଯାଇଥିଲା। ମହିଳାମାନଙ୍କୁ ବଳପୂର୍ବକ ବନ୍ଧ୍ୟା କରିଦିଆ ଯାଉଥିଲା।



# (୨୭) ତେନ୍‌ଜିନ୍‌ଙ୍କ ଶାନ୍ତି ପ୍ରସ୍ତାବ

୧୯୮୦ମସିହା ମେ’ ମାସରେ ତେନ୍‌ଜିନ୍ ତାଙ୍କର ଦ୍ୱିତୀୟ ଓ ତୃତୀୟ ଅନୁସନ୍ଧାନକାରୀ ଦଳକୁ ତିବ୍‌ବତ ପଠାଇଲେ। ଗୋଟିଏ ଦଳରେ ତରୁଣମାନେ ଥିବାବେଳେ ଅନ୍ୟ ଦଳରେ ଅଭିଜ୍ଞ ଶିକ୍ଷକମାନଙ୍କୁ ସାମିଲ୍ କରାଯାଇଥିଲା। ତରୁଣମାନଙ୍କୁ ନେଇ ଗୋଟିଏ ସ୍ୱତନ୍ତ୍ର ପ୍ରତିନିଧି ଦଳ ଗଠନ କରିବା ପଛରେ ତେନ୍‌ଜିନ୍‌ଙ୍କର ଏକ ମହତ୍ ଉଦ୍ଦେଶ୍ୟ ଥିଲା। ତିବ୍‌ବତରେ ଥିବା ଯୁବକ-ଯୁବତୀମାନେ କିଭଳି ଅବସ୍ଥାରେ ରହିଛନ୍ତି ତାହା ସେ ଜାଣିବା ପାଇଁ ଚାହୁଁଥିଲେ। ମାତ୍ର ତରୁଣ ଗୋଷ୍ଠୀଙ୍କୁ ନେଇ ତାଙ୍କର ଅଭିଯାନ ସମ୍ପୂର୍ଣ୍ଣ ବିଫଳ ହେଲା। ଏମାନେ ତିବ୍‌ତରେ ପହଞ୍ଚିବା ମାତ୍ରେ ତିବ୍‌ବତୀୟମାନେ ବହୁ ସଂଖ୍ୟାରେ ଏକତ୍ରିତ ହୋଇ ସେମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜଣାଇଲେ ଓ ତିବ୍‌ବତରେ ଚୀନାମାନଙ୍କର ଉପସ୍ଥିତିକୁ ଦୃଢ଼ ନିନ୍ଦା କଲେ। ଚୀନା କର୍ତ୍ତୃପକ୍ଷ ଏହାକୁ ଏକ ବିଦ୍ରୋହ ଭାବରେ ବିଚାରକୁ ନେଇ ତରୁଣ ପ୍ରତିନିଧିମାନଙ୍କୁ ଦେଶରୁ ଫେରାଇଦେଲେ। ଏହି ଘଟଣା ତେନ୍‌ଜିନ୍‌ଙ୍କୁ କିଛିଦିନ ଧରି ବିବ୍ରତ କରିରଖିଥିଲା।

ଅପରପକ୍ଷରେ, ତାଙ୍କର ଭଉଣୀ ଜେସନ୍ ପେମାଙ୍କ ନେତୃତ୍ୱରେ ଯାଇଥିବା ପ୍ରତିନିଧି ମଣ୍ଡଳୀକୁ ରହିବା ପାଇଁ ଅନୁମତି ମିଳିଥିଲା। ସେମାନେ ୧୯୮୦ ମସିହା ଅକ୍ଟୋବର ମାସରେ ଧର୍ମଶାଳା ପ୍ରତ୍ୟାବର୍ତ୍ତନ କରିଥିଲେ। ସେମାନଙ୍କଠାରୁ ତେନ୍‌ଜିନ୍ ଜାଣିବାକୁ ପାଇଥିଲେ ଯେ, ବିଗତ କୋଡ଼ିଏ ବର୍ଷ ମଧ୍ୟରେ ଶିକ୍ଷାର ସାଧାରଣ ମାନରେ ପରିବର୍ତ୍ତନ ଘଟିଛି। ମାତ୍ର ତାହା ଲୋକମାନଙ୍କର କୌଣସି ଉନ୍ନତି ସାଧନ କରିପାରି ନାହିଁ। ପ୍ରତିନିଧି ଦଳ ସଂଗ୍ରହ କରିଥିବା ବିବରଣୀରୁ ତେନ୍‌ଜିନ୍ ତିବ୍‌ବତୀୟମାନଙ୍କର ଏକ ଦୟନୀୟ ଚିତ୍ର ଜାଣିବାକୁ ପାଇଲେ। ଏହାର ପରବର୍ଷ ଅର୍ଥାତ୍ ୧୯୮୧ ମସିହାରେ ତାଙ୍କ ମା’ଙ୍କର ଦେହାନ୍ତ ଘଟିଲା। ତାଙ୍କର ମା’ ରକ୍ତହୀନତା ଜନିତ ଅସୁସ୍ଥତା ଭୋଗ କରୁଥିଲେ। ସେହି ସମୟରେ ସେ ବୋଧଗୟାଠାରେ ଥିବା ହେତୁ ମା’ଙ୍କୁ ଶେଷଥର ପାଇଁ ଦେଖିବା ସମ୍ଭବପର ହୋଇପାରି ନଥିଲା। ମା’ଙ୍କ ଶେଷ ଶଯ୍ୟା ନିକଟରେ ତାଙ୍କର ସାନଭାଇ ଲୋବସାଙ୍ଗ ସାମଟେନ୍ ଉପସ୍ଥିତ ଥିଲେ। ଏ ଖବର ପାଇବା

ମାତ୍ରେ ତେନ୍‌ଜିନ୍ ଦୁଃଖରେ ଭାଙ୍ଗି ପଡ଼ିଥିଲେ। ପରେ ତାଙ୍କର ଉତ୍ତମ ପୁନର୍ଜନ୍ମ ମନାସି ପ୍ରାର୍ଥନା ଆବୃତ୍ତି କରିଥିଲେ।

୧୯୮୨ ମସିହା ଏପ୍ରିଲ୍ ମାସର ପ୍ରାରମ୍ଭରେ ତିବ୍‌ବତର ଭବିଷ୍ୟତ ସମ୍ପର୍କରେ ଆଲୋଚନା କରିବା ପାଇଁ ଏକ ତିନିଜଣିଆ ପ୍ରତିନିଧି ଦଳ ପେକିଂ ଯାଇଥିଲେ। ତତ୍‌କାଳୀନ ଆଭ୍ୟନ୍ତରୀଣ ମନ୍ତ୍ରୀପରିଷଦର ବରିଷ୍ଠ ସଦସ୍ୟ ଜୁଚେନ୍ ଥୁବ୍‌ଟେନ୍ ନାମଗ୍ୟାଲ ଏହି ଦଳର ନେତୃତ୍ୱ ନେଇଥିଲେ। ତାଙ୍କ ସହିତ ତାଙ୍କର ଅଙ୍ଗରକ୍ଷୀ ବାହିନୀର ମୁଖ୍ୟ ଫୁନ୍‌ସୁଗ୍ ଟାସୀ ଟାକ୍‌ଲା ଏବଂ ତିବ୍‌ବତୀୟ ଜନସଂସଦର ଅଧକ୍ଷ ଲୋଦି ଗ୍ୟାଲସେନ୍ ଗ୍ୟାରୀ ପ୍ରମୁଖ ଥିଲେ। ସେମାନେ ପେକିଂଠାରେ ଚୀନ୍‌ର ବରିଷ୍ଠ ସଦସ୍ୟମାନଙ୍କୁ ସାକ୍ଷାତ୍ କରିଥିଲେ। 'ତିବ୍‌ବତ ଚୀନ୍‌ର ଏକ ଅଂଶ ନୁହେଁ। ଏହା ସ୍ୱତନ୍ତ୍ର' – ତିବ୍‌ବତ ପକ୍ଷରୁ ଆଲୋଚନା ପାଇଁ ଏହା ପ୍ରଥମ ପ୍ରସଙ୍ଗ ଥିଲା। ଦ୍ୱିତୀୟ ପ୍ରସଙ୍ଗ ଥିଲା- 'ତିବ୍‌ବତୀୟମାନଙ୍କର ଉନ୍ନତି ହୋଇଛି ବୋଲି ଚୀନାମାନେ କେବଳ ଉଚ୍ଚ ସ୍ୱରରେ ପ୍ରଚାର କରିଛନ୍ତି। ମାତ୍ର ବାସ୍ତବରେ ସେପରି କିଛି ଘଟିନାହିଁ।' ତିବ୍‌ବତୀୟ ଜନସାଧାରଣ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ କାଳାତିପାତ କରୁଛନ୍ତି। ମାତ୍ର ଦୁର୍ଭାଗ୍ୟର ବିଷୟ ଆଲୋଚନା କରିବା ପାଇଁ ଚୀନାମାନଙ୍କ ପକ୍ଷରୁ କୌଣସି ନିର୍ଦ୍ଦିଷ୍ଟ ପ୍ରସଙ୍ଗ ରଖାଯାଇ ନଥିଲା। ସେମାନେ କେବଳ ବୃଥା ଭାଷଣ ଶୁଣେଇ ସତ୍ୟର ଅପଳାପ କରିଥିଲେ ଓ ତିବ୍‌ବ୍‌ତୀୟ ନେତାମାନଙ୍କ ଉପରେ ଦୋଷ ଲଦି ଚାଲିଥିଲେ। ଦଲାଇ ଲାମାଙ୍କ ପ୍ରତ୍ୟାବର୍ତ୍ତନ ସେମାନଙ୍କର ମୂଳ ଲକ୍ଷ୍ୟ ଥିଲା। ସେଥିଲାଗି ସେମାନେ ତେନ୍‌ଜିନ୍‌ଙ୍କର ଭବିଷ୍ୟତ ପଦମର୍ଯ୍ୟାଦା ସମ୍ପର୍କରେ ପାଞ୍ଚଦଫାସମ୍ବଳିତ ଏକ ତାଲିକା ସେମାନଙ୍କ ଆଗରେ ଉପସ୍ଥାପନା କଲେ:

(୧) ଚୀନ୍ ରାଜନୈତିକ ସ୍ଥିରତା ହାସଲ କରିଛି। ଏହାର ଅର୍ଥନୈତିକ ପ୍ରଗତି ସାଧିତ ହୋଇଛି। ଏକଥା ଦଲାଇ ଲାମା ହୃଦବୋଧ କରିବା ଆବଶ୍ୟକ।

(୨) ଦଲାଇ ଲାମା ଓ ତାଙ୍କର ପ୍ରତିନିଧିମାନେ ନିଷ୍ପାପର ମନୋଭାବ ରଖି ଚୀନା ସରକାରଙ୍କ ସହିତ ଆଲୋଚନା କରିବା ଆବଶ୍ୟକ। ୧୯୫୯ ଘଟଣାବଳୀ ଉପରେ ଅଧିକ ଚର୍ଚ୍ଚା କରିବା ଉଚିତ ହେବନାହିଁ।

(୩) କେନ୍ଦ୍ରୀୟ କର୍ତ୍ତୃପକ୍ଷ ଦଲାଇ ଲାମା ଓ ତାଙ୍କ ଅନୁଗାମୀମାନଙ୍କର ପ୍ରତ୍ୟାବର୍ତ୍ତନକୁ ସ୍ୱାଗତ କରିବେ।

(୪) ୧୯୫୯ ମସିହା ପୂର୍ବରୁ ଦଲାଇ ଲାମା ଭୋଗ କରୁଥିବା ରାଜନୈତିକ ପଦମର୍ଯ୍ୟାଦା ଓ ଜୀବନଧାରଣର ଶୈଳୀ ପୂର୍ଣ୍ଣମାତ୍ରାରେ ଅକ୍ଷୁଣ୍ଣ ରହିବ। ସେ ତିବ୍‌ବତରେ ଅବସ୍ଥାନ କରିବାର କୌଣସି ପ୍ରତିବନ୍ଧକ ରହିବ ନାହିଁ।

(୫) ଯେତେବେଳେ ଦଲାଇ ଲାମା ଇଚ୍ଛା କରିବେ ସେତେବେଳେ ସେ ସମ୍ବାଦପତ୍ରମାନଙ୍କୁ ତାଙ୍କର ସଂକ୍ଷିପ୍ତ ବିବୃତ୍ତି ଦେଇପାରିବେ। ଏହି ବିବୃତ୍ତି ତାଙ୍କର ନିଜସ୍ୱ ବିବୃତ୍ତି ହେବ। ଏହା ଉପରେ ଚୀନ୍ କର୍ତ୍ତୃପକ୍ଷଙ୍କର କୌଣସି କର୍ତ୍ତୃତ୍ୱ ରହିବ ନାହିଁ।

ବାସ୍ତବରେ ଚୀନ୍ କର୍ତ୍ତୃପକ୍ଷଙ୍କର ଏଭଳି ଏକପାଖିଆ ନୀତି ନିର୍ଦ୍ଧାରଣ ଓ ଦଲାଇ ଲାମାଙ୍କୁ ନେଇ ନିଆଯାଇଥିବା ନିଷ୍ପତ୍ତି ଖୁବ୍ ହାସ୍ୟାସ୍ପଦ ଥିଲା। ତାଙ୍କର ବ୍ୟକ୍ତିଗତ ପଦମର୍ଯ୍ୟାଦା ସମ୍ପର୍କରେ ଚୀନାମାନେ କ'ଣ ପାଇଁ ଏତେ କଥା ଭାବୁଥିଲେ ସେକଥା ତେନ୍‌ଜିନ୍ ବୁଝିପାରୁ ନଥିଲେ। ଏହିସବୁ କାରଣରୁ ଏହା ଚୀନ୍ ସରକାରଙ୍କ ସହିତ ତାଙ୍କ ପ୍ରତିନିଧି ମଣ୍ଡଳର ଏକ ନିରର୍ଥକ ଆଲୋଚନା ଥିଲା।

ଇତିମଧ୍ୟରେ ଭାରତ ପକ୍ଷରୁ ଭ୍ରମଣ କଟକଣାକୁ ଉଠାଇ ନିଆଗଲା। ଫଳରେ ବିପୁଳ ସଂଖ୍ୟକ ତିବ୍‌ବତୀୟଙ୍କର ଧାଡ଼ି ଭାରତ ଆଡ଼କୁ ଛୁଟିବାକୁ ଲାଗିଲା। ୧୯୮୧ରୁ ୧୯୮୭ ମସିହା ମଧ୍ୟରେ ତିବ୍‌ବତ ପରିଦର୍ଶନରେ ଯାଇଥିବା ପର୍ଯ୍ୟଟକଙ୍କ ସଂଖ୍ୟା ବାର୍ଷିକ ୧୫୦୦୦ରୁ ୪୩୦୦୦କୁ ବୃଦ୍ଧି ପାଇଥିଲା। ସେମାନେ ଫେରିବା ପରେ ସେମାନଙ୍କଠାରୁ ହିଁ ତେନ୍‌ଜିନ୍ ତିବ୍‌ବତ ବିଷୟରେ କିଛିକିଛି ଖବର ସଂଗ୍ରହ କରିପାରିଥିଲେ। ସେହିଭଳି ଏକ ଭ୍ରମଣକାରୀ ଦଳଠାରୁ ତେନ୍‌ଜିନ୍ ଜାଣିବାକୁ ପାଇଥିଲେ ଯେ, ଚୀନ୍‌ଦ୍ୱାରା ପ୍ରତିଷ୍ଠିତ ଉଦାରବାଦର ସାରମର୍ମ ତିବ୍‌ବତୀୟଙ୍କ ପାଇଁ କୌଣସି ମହତ୍ତ୍ୱ ରଖୁ ନଥିଲା। ତିବ୍‌ବତୀୟମାନଙ୍କୁ ସେତେବେଳ ପର୍ଯ୍ୟନ୍ତ ବାକ୍ ସ୍ୱାଧୀନତା ଦିଆଯାଇ ନଥିଲା। ତେଣୁ ତିବ୍‌ବତୀୟମାନେ ଚୀନ୍‌ର କାର୍ଯ୍ୟକଳାପକୁ ବିରୋଧ କରୁଥିଲେ ମଧ୍ୟ ଖୋଲାଖୋଲି ଭାବରେ କହିବାକୁ ସାହସ କରୁ ନଥିଲେ।

୧୯୮୩ ମସିହା ସେପ୍ଟେମ୍ବର ମାସରେ ପୁଣି ଥରେ ଚୀନ୍ ତିବ୍‌ବତରେ ଦମନ ଲୀଳା ଆରମ୍ଭ କରିଦେଇଥିଲା। ଲାଗା, ସିଗାସେ, ଗ୍ୟାସେଁଠାରେ ଲୋକମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା। ଚାମ୍‌ଡୋ ଓ କାର୍ଜୀଠାରେ ଅଧିକରୁ ଅଧିକ ଲୋକଙ୍କୁ ଗିରଫ କରି ନିଆଯାଇଥିଲା। ଏଭଳି ନୂତନ ଆତଙ୍କରାଜକୁ ଦେଖି ଚୀନ୍ ପୁଣିଥରେ

କଠୋରପନ୍ଥୀ ମାଓଙ୍କ ଯୁଗକୁ ଫେରିଯାଉଛି ବୋଲି ତେନ୍‌ଜିନ୍‌ଙ୍କ ହୃଦ୍‌ବୋଧ ହୋଇଥିଲା । ୧୯୮୪ ମସିହା ମେ' ମାସ ସୁଦ୍ଧା ଚୀନ୍‌ର ତିବ୍‌ବତ ନୀତିରେ ବଡ଼ ଧରଣର ପରିବର୍ତ୍ତନ ଘଟି ସାରିଥିଲା । ତିବ୍‌ବତର ଚୀନ୍ କର୍ମଚାରୀଙ୍କର ସଂଖ୍ୟା ୮୫ ପ୍ରତିଶତ ହ୍ରାସ କରାଯିବ ବୋଲି ହୁ ୟାଓବାଙ୍ଗ୍ ଦୃଢ଼ ପ୍ରତିଶ୍ରୁତି ଦେଇଥିଲେ । ମାତ୍ର କାର୍ଯ୍ୟରେ ତାହାର ବିପରୀତ କରାଗଲା । ବିକାଶର ଦ୍ୱାହି ଦେଇ, ବିକାଶ ପ୍ରକ୍ରିୟା ଆରମ୍ଭ କରିବା ନିମନ୍ତେ ୬୦,୦୦୦ କୁଶଳୀ ଓ ଅଣକୁଶଳୀ ଚୀନ୍ ଶ୍ରମିକଙ୍କୁ ବାଛିବାଛି ନିଯୁକ୍ତ କରାଯାଇଥିଲା ଓ ସେମାନଙ୍କୁ ଆର୍ଥିକ ନିଶ୍ଚିତତା, ବାସଗୃହ ସହାୟତା ତଥା ଗୃହତ୍ୟାଗ ଭତ୍ତା ଆଦିର ପ୍ରତିଶ୍ରୁତି ଦିଆଗଲା । ଫଳରେ ତିବ୍‌ବତକୁ ଆସିବା ପାଇଁ ଚୀନ୍ ଲୋକଙ୍କ ମଧ୍ୟରେ ପ୍ରତିଯୋଗିତା ସୃଷ୍ଟି ହେଲା ଓ ତିବ୍‌ବତ ଭିତରକୁ ଚୀନା ଲୋକଙ୍କର ସୁଅ ଛୁଟିବାକୁ ଲାଗିଲା ।

ସେହିବର୍ଷ ଭାରତରେ ଏକ ଅତି ଦୁଃଖଦାୟକ ଘଟଣା ଘଟିଲା । ଆତତାୟୀମାନେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଗୁଳିକରି ହତ୍ୟାକଲେ । ତାଙ୍କ ମୃତ୍ୟୁରେ ତିବ୍‌ବତୀୟ ଶରଣାର୍ଥୀମାନେ ଜଣେ ଦରଦୀ ବନ୍ଧୁଙ୍କୁ ହରାଇଲେ । ତେନ୍‌ଜିନ୍ ଏହି ସମୟରେ ଲଣ୍ଡନ୍‌ରୁ ଦିଲ୍ଲୀ ଫେରୁଥିଲେ । ତାଙ୍କର ସେହିଦିନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସହିତ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଥିଲା । ଜେ. କ୍ରିଷ୍ଣମୂର୍ତ୍ତି ମଧ୍ୟ ସେହି ମଧ୍ୟାହ୍ନ ଭୋଜନ ସଭାରେ ଯୋଗ ଦେଇଥାନ୍ତେ । ଅକସ୍ମାତ ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ଖବର ଶୁଣି ତେନ୍‌ଜିନ୍ ସ୍ତବ୍ଧ ହୋଇଗଲେ । ତାଙ୍କ ସ୍ଥାନରେ ରାଜୀବ ଗାନ୍ଧୀ ଭାରତର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ରାଜୀବ ଗାନ୍ଧୀ ଜଣେ ସଂକଳ୍ପବଦ୍ଧ ଯୁବନେତା ଥିଲେ । ନିର୍ବାସିତ ତିବ୍‌ବତୀୟ ଶରଣାର୍ଥୀମାନଙ୍କ ନିମନ୍ତେ ଯାହା ସମ୍ଭବ ତାହା କରିବା ପାଇଁ ସେ ସ୍ଥିର କରିଥିଲେ ।

ଏହି ଘଟଣାର ପ୍ରାୟ ବର୍ଷକରୁ କମ୍ ସମୟ ମଧ୍ୟରେ ଲୋବ୍‌ସାଙ୍ଗ ସାମ୍‌ଟେନ୍‌ଙ୍କର ମୃତ୍ୟୁ ଘଟିଲା । ତାଙ୍କୁ ମାତ୍ର ଚଉବନ ବର୍ଷ ବୟସ ହୋଇଥିଲା । ଲୋବସାଙ୍ଗଙ୍କ ମୃତ୍ୟୁରେ ତିବ୍‌ବତୀୟମାନେ ସେମାନଙ୍କର ଜଣେ ମହାନ୍ ସମର୍ଥକଙ୍କୁ ହରାଇଲେ । ଲୋବସାଙ୍ଗ ସାମ୍‌ଟେନ୍‌ଙ୍କ ବିୟୋଗରେ ବ୍ୟକ୍ତିଗତ ଭାବରେ ତେନ୍‌ଜିନ୍ ଖୁବ୍ ମର୍ମାହତ ହୋଇପଡ଼ିଥିଲେ । ଲୋବସାଙ୍ଗଙ୍କୁ ଇନ୍‌ଫ୍ଲୁଏଞ୍ଜା ଆକ୍ରାନ୍ତ କରିଥିଲା ଓ ପରେପରେ ଇନ୍‌ଫ୍ଲୁଏଞ୍ଜା ନିମୋନିଆ ତଥା କାମଳ ରୋଗ ଆଡ଼କୁ ଗତିକଲା । ଶେଷରେ ସେଇଥିରେ ହିଁ ସେ ପ୍ରାଣତ୍ୟାଗ କରିଥିଲେ ।

୧୯୭୯, ୧୯୮୧ ଓ ୧୯୮୩ ମସିହାରେ ତିବ୍‌ବତୀୟମାନଙ୍କ ପାଇଁ ସମଗ୍ର ବିଶ୍ୱରେ ଏକ ସହାନୁଭୂତିର ବାତାବରଣ ସୃଷ୍ଟି ହେଲା । ତେନ୍‌ଜିନ୍ ଆମେରିକା ପରିଦର୍ଶନ କରିବା ପରେ ଆମେରିକାର ଲୋକମାନେ ତିବ୍‌ବତ ପାଇଁ କିଛି ନା କିଛି କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ୧୯୮୫ ମସିହା ଜୁଲାଇ ମାସରେ ଯୁକ୍ତରାଷ୍ଟ୍ର ଆମେରିକାର ଏକାନବେ ଜଣ ସଦସ୍ୟ ପେକିଂରେ ଥିବା ଜନସଂସଦରେ ତତ୍କାଳୀନ ଅଧ୍ୟକ୍ଷ ଲି ଜିଆନିଆନ୍‌ଙ୍କ ନିକଟକୁ ଏକ ପତ୍ର ଲେଖିଥିଲେ । ମହାମହିମ ଦଲାଇ ଲାମାଙ୍କ ଯୁକ୍ତିଯୁକ୍ତ ଦାବି ତଥା ଅଭିଳାଷଗୁଡ଼ିକୁ ପୂରଣ କରିବା ନିମନ୍ତେ ତଥା ତାଙ୍କର ଲୋକମାନଙ୍କୁ ନ୍ୟାଯ୍ୟ ଦାବି ପୂରଣ କରିବା ପାଇଁ ସେ ପତ୍ରରେ ଉଲ୍ଲେଖ କରାଯାଇଥିଲା । ଏହାଦ୍ୱାରା ତିବ୍‌ବତ ପ୍ରଥମଥର ପାଇଁ ଔପଚାରିକ ଭାବରେ ରାଜନୈତିକ ସମର୍ଥନ ହାସଲ କରିବାରେ ସମର୍ଥ ହେଲା । ୧୯୮୭ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକା କଂଗ୍ରେସ୍‌ର ମାନବାଧିକାର ଗୋଷ୍ଠୀକୁ ଉଦ୍‌ବୋଧନ ଦେବା ନିମନ୍ତେ ତେନ୍‌ଜିନ୍ ନିମନ୍ତ୍ରିତ ହୋଇଥିଲେ ଓ ସେଠାରେ ସେପ୍ଟେମ୍ବର ୨୧ ତାରିଖରେ ଉଦ୍‌ବୋଧନ ଦେଇଥିଲେ । ସେଠାରେ ସେ ପାଞ୍ଚଗୋଟି ପ୍ରସ୍ତାବ ଉପସ୍ଥାପନ କରିଥିଲେ, ଯାହାକୁ 'ପାଞ୍ଚଦଫା ଶାନ୍ତି ଯୋଜନା' ବୋଲି କୁହାଯାଉଛି । ସେଗୁଡ଼ିକ ହେଉଛି–

(୧) ତିବ୍‌ବତକୁ ଏକ ଶାନ୍ତିପୂର୍ଣ୍ଣ ଅଞ୍ଚଳରେ ପରିଣତ କରିବା ।

(୨) ତିବ୍‌ବତରେ ଚୀନ୍ ଜାରି କରିଥିବା ଜନସଂଖ୍ୟା ନିୟନ୍ତ୍ରଣ ନୀତିକୁ ଉଚ୍ଛେଦ କରିବା ।

(୩) ତିବ୍‌ବତୀୟଙ୍କର ମୌଳିକ ମାନବାଧିକାର ଓ ଗଣତାନ୍ତ୍ରିକ ସ୍ୱାଧୀନତା ପ୍ରତି ସମ୍ମାନ ପ୍ରଦର୍ଶନ କରିବା ।

(୪) ତିବ୍‌ବତର ପ୍ରାକୃତିକ ପରିବେଶର ପୁନରୁଦ୍ଧାର କରିବା, ଏବଂ

(୫) ତିବ୍‌ବତର ଭବିଷ୍ୟତ ପଦମର୍ଯ୍ୟାଦା ଉପରେ ଆନ୍ତରିକ ଭାବରେ ଆଲୋଚନା କରିବା ।

ଏହି ସଭାରେ ଚୀନା ନ୍ୟୁଜ୍ ଏଜେନ୍‌ସୀ 'ଜିନୁଆ'ର ସମ୍ବାଦଦାତାମାନେ ମଧ୍ୟ ଉପସ୍ଥିତ ଥିଲେ । ୱାଶିଂଟନ୍‌ରେ ସେ ଦେଇଥିବା ଏହି ଉଦ୍‌ବୋଧନ ପରେ ସମଗ୍ର ବିଶ୍ୱରେ ତିବ୍‌ବତକୁ ନେଇ ଏକ ପ୍ରକାର ହଟଚମଟ ଆରମ୍ଭ ହୋଇଯାଇଥିଲା । ପ୍ରତ୍ୟେକ ରାଷ୍ଟ୍ରର ସାଧାରଣ ଜନତା ଓ ରାଷ୍ଟ୍ରନାୟକମାନେ ତିବ୍‌ବତର ସମସ୍ୟା ନେଇ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିଥିଲେ । ଏହି ସମୟରେ ଚୀନ୍‌ର ତିବ୍‌ବତ ନୀତି ବିରୁଦ୍ଧରେ ଲାସାରେ ଏକ ବିରାଟ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିବା ମଧ୍ୟ ତେନ୍‌ଜିନ୍‌ଙ୍କ ନଜରକୁ ଆସିଥିଲା ।



# (୨୮) ଉତ୍ଥାନ-ପତନର ସମୟ

ଆମେରିକାରେ ତେନ୍‌ଜିନ୍‌ଙ୍କ ଉଦ୍‌ବୋଧନ ଚୀନା କର୍ତ୍ତୃପକ୍ଷଙ୍କୁ ବିଶେଷ ଭାବରେ ଚିନ୍ତାରେ ପକେଇ ଦେଇଥିଲା। ହଜାର ହଜାର ଲାସାବାସୀ ରାଜରାସ୍ତାକୁ ଓହ୍ଲେଇ ଆସିଥିଲେ ଓ ତିବ୍‌ବତର ସ୍ୱାଧୀନତା ପାଇଁ ଦାବି କରିଥିଲେ। ଚୀନା ସରକାର ବିକ୍ଷୋଭକାରୀମାନଙ୍କୁ ଦମନ କରିବା ନିମନ୍ତେ ହିଂସା ଓ ନିଷ୍ଠୁରତାର ମାର୍ଗ ଗ୍ରହଣ କରିଥିଲେ। ସଶସ୍ତ୍ର ପୁଲିସ୍ ବାହିନୀକୁ ଏଥିପାଇଁ କାର୍ଯ୍ୟରେ ନିୟୋଜିତ କରାଯାଇଥିଲା। ସେମାନେ ଆଖିବୁଜା ଗୁଳିଚାଳନା କରି ପ୍ରାୟ ଉଣେଇଶ ଜଣ ନିରୀହ ଲୋକଙ୍କୁ ହତ୍ୟା କରିଥିଲେ। ଗୁଳିଚାଳନା କରିଥିବା କଥାକୁ ଚୀନା କର୍ତ୍ତୃପକ୍ଷ ପ୍ରଥମେ ଅସ୍ୱୀକାର କରୁଥିଲେ ମଧ ପରେ ସେମାନେ ତାହାକୁ ପରୋକ୍ଷ ଭାବରେ ସ୍ୱୀକାର କରିଥିଲେ। ତେବେ ବିକ୍ଷୋଭ ପ୍ରଦର୍ଶନ ଓ ଚୀନା କର୍ତ୍ତୃପକ୍ଷଙ୍କ ନିର୍ଦ୍ଦୟ ଆକ୍ରମଣର ସମ୍ବାଦ ବିଶ୍ୱର ଚାରିଆଡେ ପ୍ରକାଶ ପାଇଲା। ପରିସ୍ଥିତି ଏମିତି ହେଲା ଯେ, ବିଶ୍ୱର ବିଭିନ୍ନ ରାଷ୍ଟ୍ରରେ ତିବ୍‌ବତର ସମ୍ବାଦସବୁକୁ ପ୍ରଥମ ପୃଷ୍ଠାର ଶିରୋନାମା ଭାବରେ ଦେଖିବାକୁ ମିଳିଲା। ବିକ୍ଷୋଭବେଳେ ଲାସାରେ ଉପସ୍ଥିତ ଥିବା ପ୍ରାୟ ୪୦ ଜଣ ବିଦେଶୀ ପର୍ଯ୍ୟଟକ ସେମାନେ ପ୍ରତ୍ୟକ୍ଷ ଦେଖିଥିବା ଘଟଣା ସବୁକୁ ନେଇ ଗୋଟିଏ ହୃଦୟବିଦାରକ ବିବରଣୀ ପ୍ରସ୍ତୁତ କରିଥିଲେ। ସେମାନଙ୍କ ବିବରଣୀରେ ପ୍ରଦତ୍ତ ତଥ୍ୟ ଅନୁଯାୟୀ, କେତେକ ସନ୍ନ୍ୟାସୀ ପ୍ରଥମେ ସମବେତ ହୋଇ 'ତିବ୍‌ବତ ସ୍ୱାଧୀନ ହେଉ' ବୋଲି ଧ୍ୱନି ଦେଇଥିଲେ। ଏହି ଧ୍ୱନି ଲୋକମାନଙ୍କ ମଧ୍ୟରେ ଏଭଳି ଆଲୋଡ଼ନ ସୃଷ୍ଟି କରିଥିଲା ଯେ, ସଙ୍ଗେସଙ୍ଗେ ହଜାର ହଜାର ଲୋକ ଆସି ସେମାନଙ୍କ ସହିତ ଯୋଗଦେଲେ ଓ ସ୍ୱାଧୀନତା ପାଇଁ ଦାବି କଲେ। ସବୁକିଛି ଶାନ୍ତି ଶୃଙ୍ଖଳାର ସହିତ ସମ୍ପନ୍ନ ହେଉଥିଲା। ମାତ୍ର ସେତିକିବେଳେ ହଠାତ୍ ଗୋଟିଏ ବାଟାଲିଅନ୍ ସଶସ୍ତ୍ର ନିରାପତ୍ତାରକ୍ଷୀ ପହଞ୍ଚିଯାଇ ଦମନଲୀଳା ଆରମ୍ଭ କରିଦେଲେ।

୧୯୮୮ ମସିହା ପ୍ରାରମ୍ଭରେ ଲାସାରେ ଥିବା ଚୀନା କର୍ତ୍ତୃପକ୍ଷ ନବବର୍ଷ ଉତ୍ସବ ଯଥାରୀତି ପାଳନ କରିବା ନିମନ୍ତେ ସନ୍ନ୍ୟାସୀ ସମ୍ପ୍ରଦାୟକୁ ନିର୍ଦ୍ଦେଶ ଦେଇଥିଲେ। ମାତ୍ର ତିବ୍‌ବତର ଲୋକମାନେ ଜେଲ୍‌ରେ ଦୟନୀୟ ଜୀବନ ବିତାଉଥିବା ବେଳେ

ନବବର୍ଷ ପାଳନ କରିବା କୌଣସି ଦିଗରୁ ଯଥାର୍ଥ ହେବ ନାହିଁ ବୋଲି ଦର୍ଶାଇ ସନ୍ନ୍ୟାସୀ ସମ୍ପ୍ରଦାୟ ପକ୍ଷରୁ ଚୀନା କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶକୁ ଅଗ୍ରାହ୍ୟ କରି ଦିଆଯାଇଥିଲା । ତେବେ ଏଠାରେ ଉଲ୍ଲେଖ କରିବା ସମୁଚିତ ହେବ ଯେ, ନବବର୍ଷ ପାଳନ କରିବାକୁ କହିବା ପଛରେ ଚୀନା କର୍ତ୍ତୃପକ୍ଷଙ୍କର କୌଣସି ମହତ୍ ଉଦ୍ଦେଶ୍ୟ କାମ କରୁ ନଥିଲା । ତା' ପରିବର୍ତ୍ତେ, ତିବ୍‌ବତର ପରିସ୍ଥିତି ସ୍ୱାଭାବିକ ଅଛି ଓ ଚୀନ୍ କର୍ତ୍ତୃପକ୍ଷ ସେମାନଙ୍କ ନିମନ୍ତେ ଉଦାର ତଥା ବନ୍ଧୁତ୍ୱପୂର୍ଣ୍ଣ ମନୋଭାବ ପୋଷଣ କରୁଛନ୍ତି ବୋଲି ବିଶ୍ୱବାସୀଙ୍କୁ ଜଣାଇବା ଲାଗି ଏଭଳି ଏକ ଯୋଜନା ପ୍ରସ୍ତୁତ କରାଯାଇଥିଲା । ମାତ୍ର ସନ୍ନ୍ୟାସୀମାନେ ସେହି ଯୋଜନାକୁ ଭଣ୍ଡୁର କରିଦେଲେ । ସେହିବର୍ଷ ଅର୍ଥାତ୍ ୧୯୮୮ ମସିହା ଫେବୃଆରୀ ୨୮ ତାରିଖରେ ସମ୍ବାଦ ସରବରାହ ସଂସ୍ଥା ବିବିସି ପକ୍ଷରୁ କୁହାଯାଇଥିଲା ଯେ, ତିବ୍‌ବତର ଲୋକମାନଙ୍କୁ ଚୀନା ପୁଲିସ୍ ବାହିନୀ ପକ୍ଷରୁ ଘରୁ ବାହାରକୁ ଛାଡ଼ିବା ପାଇଁ ଦିଆଯାଉ ନାହିଁ । ସେମାନଙ୍କ ପକ୍ଷରୁ ଡାକବାଜି ଯନ୍ତ୍ର ସାହାଯ୍ୟରେ ଚେତାବନୀ ଦିଆଯାଉଛି ଯେ ଯିଏ ଆଇନ୍ ଅମାନ୍ୟ କରିବ ତାକୁ ଗୁଳିକରି ହତ୍ୟା କରାଯିବ ।

ଏହି ଘଟଣାର ସମାଧାନ ନ ହେଉଣୁ ମାର୍ଚ୍ଚ ୫ ତାରିଖରେ କେତେକ ସନ୍ନ୍ୟାସୀଙ୍କ ପକ୍ଷରୁ ୟୁଲୁ ଡାଓ୍ୱା ସେରିଙ୍ଗ ନାମକ ଜଣେ ବ୍ୟକ୍ତିଙ୍କ ଖଲାସ ଦାବି କରି ଆନ୍ଦୋଳନ ଆରମ୍ଭ ହେଲା । ୟୁଲୁ ଡାଓ୍ୱା ସେରିଙ୍ଗ ଜଣେ ଜାତିସ୍ମର ଥିଲେ ଓ ପୂର୍ବବର୍ଷ ଅକ୍ଟୋବର ମାସରେ କୌଣସି କାରଣ ନ ଥାଇ ତାଙ୍କୁ ବନ୍ଦୀ କରି ନିଆଯାଇଥିଲା । ଏହି ଘଟଣାକୁ ନେଇ ଜନତା ଓ ନିରାପତ୍ତାରକ୍ଷୀଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇଯାଇଥିଲା । ଲୋକମାନେ ତିବ୍‌ବତରେ ଚୀନ୍‌ର ଉପସ୍ଥିତିକୁ ନିନ୍ଦା କରି ପୁଲିସ୍ ଉପରକୁ ଟେକା ପଥର ମାଡ଼ କଲେ । ଏହାର ଉତ୍ତରରେ ପୁଲିସ୍ ବାହିନୀ ଗୋରୁମହିଷାଦି ପଶୁମାନଙ୍କ ନିମନ୍ତେ ବ୍ୟବହାର କରାଯାଉଥିବା ବୈଦ୍ୟୁତିକ ଚାବୁକ ଓ ଲାଠି ଧରି ଲୋକମାନଙ୍କୁ ପ୍ରହାର କରିବାକୁ ଲାଗିଲେ । ସେତିକି ନୁହେଁ, ସେମାନେ ବାଛିବାଛି କେତେକ ବିପ୍ଳବୀଙ୍କୁ ଗୁଳି କରି ହତ୍ୟାକଲେ । ପ୍ରାୟ ମଧ୍ୟାହ୍ନ ସମୟରେ ପୁଲିସ୍ ଜୋଖାଙ୍ଗ ଉପରେ ଆକ୍ରମଣ କରି ୧୨ ଜଣ ସନ୍ନ୍ୟାସୀଙ୍କୁ ମୃତ୍ୟୁଦଣ୍ଡ ଦେଲେ । ଅତି ବର୍ବରୋଚିତ ଭାବରେ ସେମାନେ ଜଣେ ସନ୍ନ୍ୟାସୀଙ୍କର ଆଖିକୁ ତାଡ଼ି ଦେଇ ତାଙ୍କୁ ଛାତ ଉପରୁ ତଳକୁ ଠେଲି ଦେଇଥିଲେ । ତିବ୍‌ବତର ଏହି ଅତ୍ୟନ୍ତ ପବିତ୍ରତମ ଉପାସନା ପୀଠଟି ନିମିଷକରେ ଗୋଟିଏ କଂସେଇଖାନାରେ ପରିଣତ ହୋଇଯାଇଥିଲା । ଚୀନା କର୍ତ୍ତୃପକ୍ଷ ତିବ୍‌ବତରେ ଦୁଇ

ସପ୍ତାହ ଧରି ସାନ୍ଧ୍ୟ ଆଇନ୍ ଜାରି କରିଥିଲେ ଏବଂ ୨୫୦୦ ଜଣ ଲୋକଙ୍କୁ ଗିରଫ କରି ନେଇଥିଲେ। ଏହି ଘଟଣାଟି ତେନ୍‌ଜିନ୍‌ଙ୍କୁ ଗଭୀର ଭାବରେ ମ୍ରିୟମାଣ କରିଥିଲା।

୧୯୮୮ ମସିହା ଶରତକାଳ ବେଳକୁ ତିବ୍‌ବତ ପ୍ରତି ଚୀନ୍‌ର ମନୋଭାବରେ ସାମାନ୍ୟ କୋହଳ ଘଟିଥିଲା। ଦଲାଇ ଲାମାଙ୍କ ସହିତ ସେମାନେ ତିବ୍‌ବତର ଭବିଷ୍ୟତ ନେଇ କଥାବାର୍ତ୍ତା କରିବା ପାଇଁ ଆଗ୍ରହ ପ୍ରକାଶ କଲେ। କେଉଁଠାରେ ଆଲୋଚନା କରାଯିବ ସେଥିଲାଗି ସ୍ଥାନ ନିରୂପଣ କରିବା ନିମନ୍ତେ ସେମାନେ ତେନ୍‌ଜିନ୍‌ଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କଲେ। ଏକଥା ଜାଣିବା ପରେ ତତ୍‌କ୍ଷଣାତ୍ ତେନ୍‌ଜିନ୍ ମଧ୍ୟସ୍ଥ ଦଳ ମନୋନୀତ କରିବା ସହିତ ୧୯୮୯ ମସିହା ଜାନୁଆରୀ ମାସରେ ଜେନେଭାଠାରେ ସମ୍ମିଳିତ ହେବା ଲାଗି ଚୀନା କର୍ତ୍ତୃପକ୍ଷଙ୍କ ନିକଟକୁ ପ୍ରସ୍ତାବ ପଠେଇଦେଲେ। ମାତ୍ର ଦୁର୍ଭାଗ୍ୟର ବିଷୟ, ତାଙ୍କଠାରୁ ଏହି ପ୍ରସ୍ତାବ ପାଇବା ପରେ ଚୀନାମାନେ ପୁଣିଥରେ ଅଭିଯୋଗ କରିବା ଆରମ୍ଭ କରିଦେଲେ। ସେମାନେ ବେଜିଂକୁ ଆଲୋଚନା ପାଇଁ ସ୍ଥାନ ଭାବରେ ବାଛିବାକୁ ମତବ୍ୟକ୍ତ କଲେ ଓ ମଧ୍ୟସ୍ଥ ଦଳରେ କୌଣସି ବିଦେଶୀ ନାଗରିକ ସାମିଲ ହୋଇପାରିବେ ନାହିଁ ବୋଲି ସ୍ପଷ୍ଟ ଭାବରେ ସର୍ତ୍ତ ରଖିଲେ। ସେଠାରେ ସେମାନେ ଅନ୍ୟ କୌଣସି ମଧ୍ୟସ୍ଥଙ୍କ ସହିତ ନୁହେଁ, କେବଳ ଦଲାଇ ଲାମାଙ୍କ ସହିତ ଆଲୋଚନା କରିବାକୁ ଚାହାନ୍ତି ବୋଲି ଜଣାଇ ଦେଲେ। ତେନ୍‌ଜିନ୍‌ଙ୍କ ପାଇଁ ଏହା ଅତ୍ୟନ୍ତ ନୈରାଶ୍ୟଜନକ ଘଟଣା ଥିଲା। ୧୯୮୯ ମସିହା ନବବର୍ଷଟି ଆସି ପୁଣି ଅତିକ୍ରାନ୍ତ ହୋଇଗଲା। ମାତ୍ର କୌଣସି ଲକ୍ଷ୍ୟ ସାଧିତ ହୋଇପାରିଲା ନାହିଁ। ସେହିବର୍ଷ ତାଙ୍କ ପାଇଁ ଆଉ ଏକ ଦୁଃଖଦାୟକ ଘଟଣା ଘଟିଲା। ୧୯୮୯ ମସିହା ଜାନୁଆରୀ ୧୮ ତାରିଖରେ ପଞ୍ଚେନ୍ ଲାମାଙ୍କର ଦେହାନ୍ତ ଘଟିଲା। ମୃତ୍ୟୁ ବେଳକୁ ତାଙ୍କୁ ମାତ୍ର ୫୩ ବର୍ଷ ବୟସ ହୋଇଥିଲା ଓ ସେ ବେଜିଂରୁ ତିବ୍‌ବତ ଅଭିମୁଖେ ଯାତ୍ରା କରୁଥିଲେ। ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗ ଦେବାଲାଗି ଚୀନ୍‌ର ବୌଦ୍ଧସମାଜ ପକ୍ଷରୁ ତେନ୍‌ଜିନ୍‌ଙ୍କୁ ନିମନ୍ତ୍ରଣ କରାଯାଇଥିଲା। ମାତ୍ର ଚୀନ୍‌ରେ ତାଙ୍କର ଅନ୍ତ୍ୟେଷ୍ଟି ସମ୍ପନ୍ନ ହେଉଥିବା କାରଣରୁ ସେ ଅତି ଦୁଃଖର ସହିତ ସେହି ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ।

୧୯୮୯ ମସିହା ମାର୍ଚ୍ଚ ମାସ ୫ ତାରିଖରେ ଲାସାରେ ପୁଣିଥରେ ବିଦ୍ରୋହର ନିଆଁ ଜଳି ଉଠିଲା। ଲୋକମାନେ ତିନିଦିନବ୍ୟାପୀ ଏକ ବିକ୍ଷୋଭ ସମାବେଶର ଆୟୋଜନ କଲେ। ଉତ୍ତେଜିତ ହୋଇ ରାସ୍ତା ଉପରକୁ ଓହ୍ଲେଇ ଆସିଲେ। ଏହି ଘଟଣା ତେନ୍‌ଜିନ୍‌ଙ୍କ ପାଇଁ ଏକ ନୂତନ ଅନୁଭୂତି ଆଣି ଦେଇଥିଲା। ଲୋକମାନେ

କିଭଳି ସ୍ୱାଧୀନତା ପାଇଁ ବ୍ୟାକୁଳ ତାହା ତାଙ୍କୁ ବ୍ୟଥିତ କରି ପକେଇଥିଲା। ମାତ୍ର ସେତିକିବେଳେ ଲୋକମାନଙ୍କର ହିଂସ୍ର ଆଚରଣ ତାଙ୍କୁ ମ୍ରିୟମାଣ କରିଥିଲା। ୧୯୮୯ ମସିହାର ଶେଷଭାଗରେ ସେ ବର୍ଲିନ୍ ପରିଦର୍ଶନରେ ଗଲେ। ସଂଯୋଗବଶତଃ, ସେହିଦିନ ହିଁ ଇଗନ୍ କ୍ରାଞ୍ଜ୍ ଗାଦିଚ୍ୟୁତ ହୋଇଥିଲେ। ପୂର୍ବ ଜର୍ମାନୀ କର୍ତ୍ତୃପକ୍ଷ ତାଙ୍କ ପ୍ରତି ଖୁବ୍ ସଦୟ ଥିଲେ। ଖାସ୍ ସେଇଥିପାଇଁ ତେନ୍‌ଜିନ୍ ବୃହତ୍ ପ୍ରାଚୀର ପର୍ଯ୍ୟନ୍ତ ଯାଇପାରିଥିଲେ। ସେ ବୃହତ୍ ପ୍ରାଚୀର ନିକଟରେ ଠିଆ ହୋଇଥିବା ବେଳେ ଜଣେ ବୃଦ୍ଧା ଆସି ତାଙ୍କ ହାତରେ ଗୋଟିଏ ନାଲି ମହମବତୀ ଧରାଇ ଦେଇଥିଲେ। ସେ ଭାବବିହ୍ୱଳ ହୋଇ ସେହି ମହମବତୀଟିକୁ ଜଳାଇ ସେଠାରେ ଖୁବ୍ ଶାନ୍ତ ଭାବରେ ଠିଆ ହୋଇ ରହିଥିଲେ।

୧୯୯୦ ମସିହାରେ ତେନ୍‌ଜିନ୍‌ଙ୍କର ବାବା ଆମ୍‌ତେଙ୍କ ସହିତ ସାକ୍ଷାତ ହେଲା। ତେନ୍‌ଜିନ୍‌ଙ୍କ ଜୀବନକୁ ବାବା ଆମ୍‌ତେ ଖୁବ୍ ପ୍ରଭାବିତ କରିଥିଲେ। ସେ ଦକ୍ଷିଣ ଭାରତରେ ଗୋଟିଏ ଗ୍ରାମ ପ୍ରତିଷ୍ଠା କରିଥିଲେ। ବାବା ଆମ୍‌ତେ ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଥିଲେ। ମେରୁଦଣ୍ଡ ଅକାମୀ ଯୋଗୁଁ ସେ ପ୍ରାୟତଃ ପଙ୍ଗୁ ହୋଇ ପଡ଼ିଥିଲେ। ତଥାପି ସେ ମାନସିକ ସ୍ତରରେ ଖୁବ କାର୍ଯ୍ୟକ୍ଷମ ଓ ଚଳଚଞ୍ଚଳ ଥିଲେ। ତାଙ୍କ ସହିତ କଥାବାର୍ତ୍ତା କରିବା ବେଳେ ସେ ଜଣେ କରୁଣାମୟ, ଦୟାଳୁ ପୁରୁଷଙ୍କ ସହିତ କଥାବାର୍ତ୍ତା କରୁଛନ୍ତି ବୋଲି ତେନ୍‌ଜିନ୍‌ଙ୍କର ହୃଦବୋଧ ହୋଇଥିଲା।



# (୨୯) ସାମ୍ପ୍ରତିକ ସ୍ଥିତି

ବହୁ ଝଡ଼ଝଞ୍ଜା ଘାତପ୍ରତିଘାତ ତଥା ଦୁଃଖକଷ୍ଟରେ ଚାଲିଥିବା ତିବ୍‌ବତୀୟମାନଙ୍କ ନିମନ୍ତେ କ୍ରମଶଃ ପରିସ୍ଥିତି ସୁଧୁରିବାରେ ଲାଗିଛି। ତାହାର ଏକ ନମୁନା ହେଉଛି, ଅଧିକରୁ ଅଧିକ ଚୀନାଲୋକ ତିବ୍‌ବତୀୟ ବୌଦ୍ଧଧର୍ମ ପ୍ରତି ଆଗ୍ରହ ପ୍ରକାଶ କରୁଛନ୍ତି। ଏହା ଚୀନ୍ ସରକାରଙ୍କର ମୁଣ୍ଡବ୍ୟଥାର କାରଣ ପାଲଟୁଥିବା ତେନ୍‌ଜିନ୍ ବିଭିନ୍ନ ସମ୍ବାଦପତ୍ରରୁ ଅବଗତ ହୋଇପାରିଛନ୍ତି। ସେ ତାଙ୍କର ଏକ ନିବନ୍ଧ ପାଠ କରିବାବେଳେ କହିଥିଲେ ଯେ, ଚୀନ୍‌ର ସାଙ୍ଖି ପ୍ରଦେଶରେ ସ୍ଥାନୀୟ ଧାର୍ମିକ ସମ୍ପ୍ରଦାୟଦ୍ୱାରା ନିର୍ମିତ ମନ୍ଦିର ଓ ପ୍ରତିମୂର୍ତ୍ତିର ସଂଖ୍ୟା ବହୁ ପରିମାଣରେ ବୃଦ୍ଧି ପାଇଛି। ଫଳରେ ଚୀନ୍ ସରକାର ମାନସିକ ସ୍ତରରେ ଛାନିଆ ହୋଇପଡ଼ିଛନ୍ତି। ଚୀନ୍ ଲୋକଙ୍କର ବୌଦ୍ଧଧର୍ମ ପ୍ରତି ଆଗ୍ରହ ସୃଷ୍ଟି ପାଉଥିବା ବିଷୟ ପ୍ରକାଶ କରି ତେନ୍‌ଜିନ୍ କହନ୍ତି ଯେ, ଚୀନା ଭ୍ରମଣକାରୀ ଦଳ ବୌଦ୍ଧନୀତିର ଶିକ୍ଷା ଗ୍ରହଣ କରିବାପାଇଁ ତାଇୱାନ୍, ସିଙ୍ଗାପୁର ଓ ଅନ୍ୟ ସ୍ଥାନମାନଙ୍କରୁ ଧର୍ମଶାଳାକୁ ପଳେଇ ଆସୁଛନ୍ତି। କେତେକ ଚୀନା ଲୋକ ବର୍ତ୍ତମାନ ସନ୍ନ୍ୟାସୀୟ ଶୃଙ୍ଖଳାରେ ମଧ୍ୟ ଯୋଗ ଦେଇଛନ୍ତି। ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣ ଧର୍ମଶାଳାରେ ଥିବା 'ବୌଦ୍ଧ ତର୍କ ସଂଳାପ ପ୍ରତିଷ୍ଠାନ'ରେ ଅଧ୍ୟୟନ ମଧ୍ୟ କରୁଛନ୍ତି।

ତେନ୍‌ଜେନ୍ ହେଉଛନ୍ତି ଜଣେ ସର୍ବଧର୍ମପ୍ରିୟ ବ୍ୟକ୍ତି। ସେଥିଲାଗି ତିବ୍‌ବତୀୟ ସମ୍ପ୍ରଦାୟ ମଧ୍ୟରେ ସାମ୍ପ୍ରଦାୟିକ କନ୍ଦଳ ଦେଖିଲେ ସେ ଗଭୀର ଭାବରେ ମର୍ମାହତ ହୋଇପଡ଼ନ୍ତି। ସେମିତି ଏକ କନ୍ଦଳ ହେଉଛି ଦୋର୍ଜୀ ସୁଗ୍‌ଡେନ୍‌ଙ୍କ ଆତ୍ମସତ୍ତା ଘଟଣା। ଦୋର୍ଜୀ ସୁଗ୍‌ଡେନ୍ ହେଉଛନ୍ତି ଦଲାଇ ଲାମାଙ୍କ ଆଧ୍ୟାତ୍ମିକ ସୁରକ୍ଷାଦାତା। ନେଚୁଙ୍ଗ ସନ୍ନ୍ୟାସାଶ୍ରମ ଜରିଆରେ ସେ ଆତ୍ମପ୍ରକାଶ କରିଥାନ୍ତି। ପଞ୍ଚମ ଦଲାଇ ଲାମାଙ୍କ ସମୟରୁ ତିନିଶହ ବର୍ଷରୁ ଅଧିକ କାଳ ହେବ ଦଲାଇ ଲାମା ଓ ଦୋର୍ଜୀ ସୁଗ୍‌ଡେନ୍‌ଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ନାହିଁ। ଏହାର ଏକମାତ୍ର କାରଣ ହେଉଛି ସୁଗ୍‌ଡେନ୍ ଏବଂ ତିବ୍‌ବତୀୟ ସରକାରଙ୍କ ମଧ୍ୟରେ ରହିଥିବା ତିକ୍ତ ସମ୍ପର୍କ। ଖାସ୍ ଏହି ଗୋଟିଏ କାରଣ ପାଇଁ ତେନ୍‌ଜିନ୍ ବହୁ ବର୍ଷ ପୂର୍ବରୁ ଏକ ନିର୍ଦ୍ଦିଷ୍ଟ 'ପ୍ରେତାତ୍ମା' ସହିତ ସମ୍ପୃକ୍ତ ନ ରହିବା ପାଇଁ ତାଙ୍କର ଲୋକମାନଙ୍କୁ ସତର୍କ କରାଇ ଆସୁଛନ୍ତି। ସୁଗ୍‌ଡେନ୍‌ଙ୍କୁ ଯେଉଁମାର୍ଗରେ ସନ୍ତୁଷ୍ଟ

କରାଯାଇଥାଏ, ଦ୍ୱିତୀୟ କାରଣଟି ତାହା ସହିତ ସମ୍ପୃକ୍ତ। କେବଳ ପ୍ରେତାତ୍ମା ଉପାସନାରେ ସମ୍ପୂର୍ଣ୍ଣ ଭାବରେ ନିମଗ୍ନ ରହିବାରେ ଗୋଟିଏ ବଡ଼ ବିପଦ ଅଛି। ସେଥିରେ ଜଡ଼ିତ ଥିବା କ୍ରିୟାବିଧି ଏପରି ସାଂଘାତିକ ବିପଦ ଆଣିଦିଏ ଯଦ୍ୱାରା ତିବ୍‌ବତୀୟ ବୌଦ୍ଧଧର୍ମର ଏକାନ୍ତ ଦାର୍ଶନିକ ଓ ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟି ଲୋପ ପାଇଯିବା ସହିତ ଏହା ଏକ ଅନ୍ଧବିଶ୍ୱାସରେ ପରିଣତ ହୋଇଥାଏ। ତୃତୀୟ କାରଣ- ଉଭୟ ତିବ୍‌ବତୀୟ ବୌଦ୍ଧଧର୍ମ ପରିପ୍ରେକ୍ଷୀରେ ଏବଂ ଅନ୍ୟ ଧର୍ମ ବିଶ୍ୱାସ ଓ ଅନ୍ୟ ଧର୍ମମାନଙ୍କ ପ୍ରତି ତାଙ୍କର ରହିଥିବା ଗଭୀର ଅଣସାମ୍ପ୍ରଦାୟିକତାବାଦୀ ପ୍ରତିବଦ୍ଧତା।

ଅନେକ ସମୟରେ ତେନ୍‌ଜିନ୍ ଭବିଷ୍ୟତ ପାଇଁ ଆଶାବାଦୀ। ବିଗତ ବର୍ଷମାନଙ୍କର ସଂଘର୍ଷମୟ ଅନୁଭୂତି ତଥା ସାମ୍ପ୍ରତିକ ସ୍ଥିତି ସବୁକୁ ବିଚାରକୁ ନେଇ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ପରିସ୍ଥିତି କ୍ରମଶଃ ଅନୁକୂଳ ଅବସ୍ଥା ଆଡ଼କୁ ଗତି କରୁଛି। ତିବ୍‌ବତୀୟ ଶରଣାର୍ଥୀମାନେ ଏକ ସ୍ୱାଧୀନ ତିବ୍‌ବତକୁ ଫେରିବାର ସମ୍ଭାବନା ଅଧିକରୁ ଅଧିକ ସ୍ପଷ୍ଟ ହୋଇଛି। କାରଣ ସମଗ୍ର ପୂର୍ବୟୁରୋପ୍ ଏବଂ କେନ୍ଦ୍ର ଏସିଆରେ କମ୍ୟୁନିଷ୍ଟ ଏକଛତ୍ରବାଦର ପତନ ଘଟିବା ପରେ ଚୀନ୍‌ରେ ମଧ୍ୟ ବ୍ୟାପକ ପରିବର୍ତ୍ତନ ଘଟିଛି। ମାର୍କ୍‌ସବାଦୀ ପରିଚୟ ପାଇଁ ଯେଉଁସବୁ ବୈଶିଷ୍ଟ୍ୟ ତଥା ଗୁଣାବଳୀ ରହିବା କଥା ଚୀନ୍ ସରକାରଙ୍କ ନିକଟରେ ଆଉ ସେସବୁ ଦେଖିବାକୁ ମିଳୁନାହିଁ। ଅବଶ୍ୟ ତିବ୍‌ବତ ଅଧିକାର କ୍ଷେତ୍ରରେ କୌଣସି ଆଖିଦୃଶିଆ ପ୍ରଗତି ଘଟିନାହିଁ। ଫଳରେ ତିବ୍‌ବତ ଭିତରେ ଅସ୍ଥିରତା ବଢ଼ିବଢ଼ି ଚାଲିଛି। ଏହାର ଦୁଃଖଦ ପରିଣାମ ସ୍ୱରୂପ ଅନେକ ଭୟଙ୍କର ହିଂସାକାଣ୍ଡ ମଧ୍ୟ ଘଟିଛି। ତେନ୍‌ଜିନ୍ କହନ୍ତି ଯେ, ସେ ଏବେ ଭାବପ୍ରବଣତାର ଶିକାର ହୋଇ କୌଣସି ପ୍ରକାର ତରବରିଆ ନିଷ୍ପତ୍ତି ନେବାକୁ ଚାହାନ୍ତି ନାହିଁ। ତା' ପରିବର୍ତ୍ତେ ସେ ଘଟଣା ସବୁକୁ ସତର୍କତାର ସହିତ ବିଶ୍ଳେଷଣ କରି ବାସ୍ତବବାଦୀ ନିଷ୍ପତ୍ତି ଗ୍ରହଣ କରିବାକୁ ଉଚିତ ମନେକରନ୍ତି। କାରଣ ତିବ୍‌ବତୀୟ ଲୋକମାନେ ଆହତ ହୋଇସାରିଛନ୍ତି। ସେମାନେ ଆଉ ଅଧିକ କ୍ଷତବିକ୍ଷତ ହେବାପାଇଁ ଚାହୁଁ ନାହାନ୍ତି। ତେଣୁ ତିବ୍‌ବତୀୟ ସ୍ୱାଧୀନତା ପାଇଁ ହିଂସାତ୍ମକ ପଥ ଅବଲମ୍ବନ କରିବା ଆଉ ଯୁକ୍ତିଯୁକ୍ତ ମନେହୁଏ ନାହିଁ। ସେଥିଲାଗି ସେ ସବୁବେଳେ ତିବ୍‌ବତୀୟ ଲୋକମାନଙ୍କୁ ପରାମର୍ଶ ଦେଇ ଚାଲିଛନ୍ତି ଯେ, ସାହସୀ ହୁଅ। ମାତ୍ର ଧୈର୍ଯ୍ୟହରା ହୁଅନାହିଁ। ତିବ୍‌ବତୀୟ ଅଧିକାର ପାଇଁ ଅହିଂସ ଅଭିଯାନକୁ ଏକ ପରୀକ୍ଷଣ ଭାବରେ ବିଚାର କରାଯାଇପାରେ। ଏହା ଫଳପ୍ରଦ ହୋଇ ନପାରେ। ତଥାପି ତେନ୍‌ଜିନ୍‌ଙ୍କର

ଦୃଢ଼ ବିଶ୍ୱାସ ଯେ, ଅହିଂସ ପଥରେ ଯାଇ ସେ ନିଶ୍ଚିତ ଭାବରେ ସଫଳ ହେବେ। ଅପରପକ୍ଷରେ, ତିବ୍‌ବତୀୟମାନେ ଯଦି ହିଂସାର ମାର୍ଗରେ ବାଟ ଚାଲନ୍ତି ତା'ହେଲେ ଚୀନ୍‌ରେ ସେମାନଙ୍କର ନ୍ୟାଯ୍ୟ ଅଧିକାର ପାଇଁ ଯେଉଁ ସମର୍ଥନ ସୃଷ୍ଟି ହୋଇଛି ତାହା ଆଉ ମିଳିବ ନାହିଁ।

ଅଳ୍ପ କିଛି ଲୋକଙ୍କର ଧାରଣା ଯେ, ପୂର୍ବସର୍ତ୍ତ ବିନା ଚୀନାମାନଙ୍କ ସହିତ କଥାବାର୍ତ୍ତା କରିବାକୁ ତେନ୍‌ଜିନ୍ ଇଚ୍ଛା ପ୍ରକାଶ କରିନାହାନ୍ତି କିମ୍ବା ଦଲାଇ ଲାମା ଭାବରେ ତାଙ୍କ ଦେଶଭକ୍ତିର ପରିଚୟ ଦେଇ ନାହାନ୍ତି। ମାତ୍ର ତେନ୍‌ଜିନ୍ ଏଭଳି ଧାରା ବା ଚିନ୍ତାଧାରା ସବୁକୁ ନେଇ ଆଦୌ ବ୍ୟଥିତ ନୁହନ୍ତି। ତାଙ୍କର ପୂର୍ବ ପ୍ରସ୍ତାବଗୁଡ଼ିକ ଥିଲା ଏହିପରି– ତିବ୍‌ବତୀୟମାନଙ୍କୁ ତିବ୍‌ବତ ପାଇଁ ଏପରି ଏକ ସଚ୍ଚା ସ୍ୱୟଂଶାସିତ ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିପାରେ ଯେଉଁ ବ୍ୟବସ୍ଥାରେ ଚୀନ୍ ବୈଦେଶିକ ନୀତି ଉପରେ ନିୟନ୍ତ୍ରଣ ବଜାୟ ରଖି ପାରିବ ଏବଂ ଏପରିକି ତିବ୍‌ବତ ଭିତରେ ସୀମିତ ବିଶ୍ୱର ଛ' ନିୟୁତ ତିବ୍‌ବତୀୟଙ୍କ ପକ୍ଷରୁ ସେ ଏକତରଫା ଭାବରେ ନିଷ୍ପତ୍ତି ନେଇ ପାରିବେ ନାହିଁ। ଏଭଳି ଏକ ଜଟିଳ ରାଜନୈତିକ ସମସ୍ୟାର ଶେଷ ସମାଧାନ ନିମନ୍ତେ ସମସ୍ତ ଦେଶବାସୀଙ୍କର ପ୍ରତ୍ୟକ୍ଷ ଭୋଟ୍ ନେବା ଆବଶ୍ୟକ। ତେଣୁ କେବଳ ଜଣେ ବ୍ୟକ୍ତି ଭାବରେ ସେ ଏଭଳି ପଦକ୍ଷେପ ଗ୍ରହଣ କରିପାରି ନାହାଁନ୍ତି। ଅନୁରୂପ ଭାବରେ ତିବ୍‌ବତର ଭବିଷ୍ୟତ ବିଷୟରେ କଥାବାର୍ତ୍ତା କରିବାକୁ ଯିବା ବେଳେ ତିବ୍‌ବତକୁ ଚୀନ୍‌ର ଏକ ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ସ୍ୱୀକାର କରିବା ପାଇଁ ଚୀନ୍ ଯେଉଁ ଦାବି କରିଆସୁଛି ତାକୁ ମଧ୍ୟ ସେ ଗ୍ରହଣ କରିନେବାକୁ ପ୍ରସ୍ତୁତ ନୁହନ୍ତି।

ସେ ଯାହା ବି ହେଉ, ଅଳ୍ପକିଛି ଲୋକଙ୍କୁ ବାଦ୍‌ଦେଲେ ଅନେକ ଲୋକ ତାଙ୍କ ପ୍ରତି ଅତୁଟ ଆସ୍ଥା ପ୍ରକଟ କରିଛନ୍ତି ଓ ସେହି ଆସ୍ଥାକୁ ଅକ୍ଷୁଣ୍ଣ ମଧ୍ୟ ରଖିଛନ୍ତି। ତାଙ୍କୁ ଅପରିସୀମ ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ଦେଇଛନ୍ତି। ତିବ୍‌ବତର ଶାନ୍ତି ଓ ସ୍ଥିରତା ସହିତ ସେ ସଦାସର୍ବଦା ବିଶ୍ୱଶାନ୍ତି କାମନା କରିଛନ୍ତି ଏବଂ ଏବେ ମଧ୍ୟ ତାହା କରୁଛନ୍ତି। ତିବ୍‌ବତୀୟଙ୍କ ପାଇଁ ତାଙ୍କ ଭିତରେ ଅଜସ୍ର ଶ୍ରଦ୍ଧା ଓ ଭଲପାଇବା ରହିଛି। ଅଧିକ ଶାନ୍ତିପୂର୍ଣ୍ଣ, ଅଧିକ ମାନବବାଦୀ, ଅଧିକ ବିକଶିତ ଏକ ସୁନ୍ଦର ପୃଥିବୀ ପାଇଁ ଯଥାସାଧ୍ୟ ଅବଦାନ ଦେବାକୁ ସେ ଆଶା ବାନ୍ଧିବସିଛନ୍ତି। ଅହିଂସା ମାର୍ଗରେ ଚାଲି ଶାନ୍ତି ପ୍ରତିଷ୍ଠା କରିବା ଭଳି କାର୍ଯ୍ୟ ନିମନ୍ତେ ତାଙ୍କୁ ସବୁବେଳେ ଏକ କ୍ଷୁଦ୍ର ପ୍ରାର୍ଥନା ହିଁ ପ୍ରେରଣା

ଯୋଗେଇଛି, ଯାହାକୁ ସେ ସବୁବେଳେ ଉଚ୍ଚାରିତ କରିଥାନ୍ତି । ତେନ୍‌ଜିନ୍‌ଙ୍କର ମତ ଯେ, ସେହି ପ୍ରାର୍ଥନାଟିକୁ ସମସ୍ତେ ଗାନ କରିବା ଦରକାର । ତାହା ହେଉଛି–

For as long as space endures,
And for as long as living beings remain,
Until then I, too, abide,
To dispel the mistry of the world.

ଯାହାର ଅର୍ଥ- "ଯେପର୍ଯ୍ୟନ୍ତ ବ୍ରହ୍ମାଣ୍ଡ ରହିଛି, ଯେପର୍ଯ୍ୟନ୍ତ ଜୀବଜଗତ ରହିଛି, ଯେତେଦିନ ଯାଏ ଜଗତରେ ଦୁଃଖ ଦୁର୍ଗତି ରହିଛି ସେତେଦିନ ଯାଏ ମୁଁ ସେମାନଙ୍କ ଦୁଃଖ ନିବାରଣ କାର୍ଯ୍ୟ କରିଚାଲିବି ।"

ତେନ୍‌ଜିନ୍‌ଙ୍କର ଏହାହିଁ ହେଉଛି ବିଶ୍ୱଶାନ୍ତି ନିମନ୍ତେ ଏକ ବହୁମୂଲ୍ୟବାନ ପ୍ରାର୍ଥନା ।



# (୩୦) ତିବ୍ବତର ଇତିହାସ

ତିବ୍ବତ ଭାରତର ଉତ୍ତରରେ ହିମାଳୟ ଅପରପାର୍ଶ୍ୱରେ ଅବସ୍ଥିତ ଏକ ସ୍ୱାଧୀନ ରାଷ୍ଟ୍ର। ଏହା ପୃଥିବୀର ଉଚ୍ଚତମ ପାମିର ମାଳଭୂମିର ଏକ ଅଂଶବିଶେଷ। ତିବ୍ବତ ହିମାଳୟ ଓ କୁନ୍‌ଲୁନ୍ ପର୍ବତଶ୍ରେଣୀଦ୍ୱାରା ପରିବେଷ୍ଟିତ ଏକ ଅତ୍ୟୁଚ୍ଚ ମାଳଭୂମି। ଏହାର ସୀମାକୁ ଭାରତ, ନେପାଳ, ଭୁଟାନ, ମିଆଁମାର (ବର୍ମା) ଓ ଚୀନ୍ ଲାଗିରହିଛି। ତିବ୍ବତ ମଧ୍ୟରେ ପ୍ରବାହିତ ନଦୀକୂଳରେ ସହରଗୁଡ଼ିକ ଅବସ୍ଥିତ ଏବଂ ଅଧିବାସୀମାନେ ମୁଖ୍ୟତଃ କୃଷିଜୀବୀ। ତିବ୍ବତ ମାଳଭୂମିର ଯାଯାବରମାନେ ଚମରୀଗାଈ ଏବଂ ସେହି ଶ୍ରେଣୀର ପଶୁମାନଙ୍କୁ ପାଳନ କରି ଜୀବିକା ନିର୍ବାହ କରନ୍ତି। ତିବ୍ବତ ସମୁଦ୍ର ପତନରୁ ପ୍ରାୟ ୧୨ ହଜାର ଫୁଟ ଉଚ୍ଚରେ ଅବସ୍ଥିତ। ସମଗ୍ର ତିବ୍ବତ ରାଜ୍ୟ ଖଣିଜ ସମ୍ପଦରେ ପରିପୂର୍ଣ୍ଣ। ଧାର୍ମିକ ନିଷେଧାଜ୍ଞା ହେତୁ ୧୯୫୦ ମସିହା ପର୍ଯ୍ୟନ୍ତ ଏହାର ଖଣିଜ ସମ୍ପଦଗୁଡ଼ିକର ଖନନ କରାଯାଉନଥିଲା। ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ କଳା ଓ ହସ୍ତଶିଳ୍ପ ନିମନ୍ତେ ତିବ୍ବତର ବିଶ୍ୱବ୍ୟାପୀ ପ୍ରସିଦ୍ଧି ରହିଛି।

ଖ୍ରୀଷ୍ଟପୂର୍ବ ୧୨୭୦ଠାରୁ ତିବ୍ବତର ଇତିହାସ ସଂକଳିତ ହୋଇପାରିଛି। ସପ୍ତମରୁ ଦଶମ ଶତାବ୍ଦୀ ମଧ୍ୟରେ ତିବ୍ବତର ସାମ୍ରାଜ୍ୟ ଚୀନ୍ ଓ ମଧ୍ୟଏସିଆର ଦେଶମାନଙ୍କୁ ପ୍ରସାରିତ ହୋଇଥିଲା। ଐତିହାସିକ ଦୃଷ୍ଟିକୋଣରୁ ସପ୍ତମ ଶତାବ୍ଦୀ ବେଳକୁ ତିବ୍ବତ ଓ ଓଡ଼ିଶା ମଧ୍ୟରେ ସାଂସ୍କୃତିକ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା। ସେହି ସମୟରେ ବୌଦ୍ଧଜଗତର ପ୍ରଧାନ ତାନ୍ତ୍ରିକ କେନ୍ଦ୍ର ରୂପେ ଉଡ୍‌ଡୀୟାନ ପୀଠ (ଓଡ଼ିଶା) ଖ୍ୟାତି ଅର୍ଜନ କରିଥିଲା। ଓଡ଼ିଶାରେ ବୌଦ୍ଧଧର୍ମ ସମ୍ପର୍କୀୟ ବହୁ ଶିକ୍ଷାନୁଷ୍ଠାନ ଗଢ଼ିଉଠିଥିଲା। ବିଭିନ୍ନ ଶତାବ୍ଦୀରେ ଲଳିତଗିରି, ଉଦୟଗିରି ଓ ରତ୍ନଗିରି - ଏହି ତିନୋଟି ବିହାର ଗଢ଼ିଉଠିଥିଲା। ରତ୍ନଗିରି ଏହିପରି ଏକ ଅନୁଷ୍ଠାନ ଯାହାକି ଅଷ୍ଟମ ଶତାବ୍ଦୀ ବେଳକୁ ଏକ ପ୍ରସିଦ୍ଧ ଯୋଗାଚାର କେନ୍ଦ୍ରରେ ପରିଣତ ହୋଇଥିଲା। ଏହିପରି ଆଉ ଏକ ଅନୁଷ୍ଠାନ ଥିଲା ଜଗଦ୍ଦଳ ବିହାର, ଯେଉଁଠାରେ ମୁସଲମାନ ଅତ୍ୟାଚାରରେ ଆତଙ୍କିତ ବଙ୍ଗ ଓ ବିହାରର ବୌଦ୍ଧସନ୍ନ୍ୟାସୀଗଣ ଆଶ୍ରୟ ଗ୍ରହଣ କରିଥିଲେ (ପାଗସମ ଜୋନ କାଙ୍ଗ ଅନୁସାରେ) ଏବଂ ଓଦନ୍ତପୁରୀର ଅଧ୍ୟକ୍ଷ ଶାକ୍ୟଭଦ୍ର ତିବ୍ବତକୁ ପଳାୟନ ପୂର୍ବରୁ

ଆତ୍ମଗୋପନ କରିଥିଲେ। ଏଠାରେ ମଧ୍ୟ ତିବ୍‌ବତୀୟ ଶିକ୍ଷାର୍ଥୀଗଣ ବହୁ ସଂଖ୍ୟାରେ ଅବସ୍ଥାନ କରି ଧର୍ମଗ୍ରନ୍ଥମାନ ସଂସ୍କୃତରୁ ତିବ୍‌ବତୀ ଭାଷାରେ ଅନୁବାଦ କରିଥିଲେ। ଲିପିତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଓଡ଼ିଆ ଓ ତିବ୍‌ବତୀ ଅକ୍ଷରମାନଙ୍କ ମଧ୍ୟରେ ଆଶ୍ଚର୍ଯ୍ୟଜନକ ସାଦୃଶ୍ୟ ଦେଖାଯାଏ ଏବଂ କେତେକ ଅକ୍ଷର ସମ୍ପୂର୍ଣ୍ଣ ଏକାପରି ଲାଗେ।

ସପ୍ତମ ଶତାବ୍ଦୀରେ ତିବ୍‌ବତୀୟମାନେ ବୌଦ୍ଧଧର୍ମ ଗ୍ରହଣ କଲେ ଓ ଏହାକୁ ରାଷ୍ଟ୍ରଧର୍ମର ମାନ୍ୟତା ଦିଆଗଲା ଏବଂ ତିବ୍‌ବତର ପ୍ରଥମ ବୌଦ୍ଧ ମଠ ସାମ୍ୟେଠାରେ ସ୍ଥାପିତ ହେଲା। ତିବ୍‌ବତର ରାଜା ଖ୍ରୀ-ସ୍ରୋନ-ଇଦେ-ସାନ (Khri-sron-Ide-btsan) ନାଳନ୍ଦା ବିଶ୍ୱବିଦ୍ୟାଳୟରେ କାର୍ଯ୍ୟରତ ଥିବା ଆଚାର୍ଯ୍ୟ ଶାନ୍ତରକ୍ଷିତଙ୍କୁ ତାଙ୍କ ରାଜ୍ୟରେ ଭାରତରେ ପ୍ରଚଳିତ ଥିବା ବୌଦ୍ଧଧର୍ମକୁ ତିବ୍‌ବତରେ ପ୍ରଚଳନ କରାଇବାକୁ ନିମନ୍ତ୍ରଣ କରିଥିଲେ। କିନ୍ତୁ ଶାନ୍ତରକ୍ଷିତଙ୍କ ଉଦ୍ୟମ ଅସଫଳ ହେବାରୁ ସେ ତିବ୍‌ବତ ରାଜାଙ୍କୁ ସେତେବେଳର ସୁବିଖ୍ୟାତ ତାନ୍ତ୍ରିକ ବୌଦ୍ଧ ପଣ୍ଡିତ ଗୁରୁ ପଦ୍ମସମ୍ଭବଙ୍କୁ ନିମନ୍ତ୍ରଣ କରିବାକୁ ଅନୁରୋଧ ଜଣାଇଲେ। ତିବ୍‌ବତ ରାଜାଙ୍କ ଅନୁରୋଧକ୍ରମେ ଗୁରୁ ପଦ୍ମସମ୍ଭବ (୭୫୦-୮୦୦ ଖ୍ରୀ.ଅ.) ତିବ୍‌ବତରେ ପହଞ୍ଚି ସେଠାରେ ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରଚଳନ କରାଇଥିଲେ। ସେ ମଧ୍ୟ ତିବ୍‌ବତରେ ଭାରତୀୟ ମଠ ପରମ୍ପରା ଓ ଲାମା ଧର୍ମ ପ୍ରତିଷ୍ଠା କରିଥିଲେ। ତାଙ୍କର ପ୍ରଚେଷ୍ଟା ଫଳରେ ବୌଦ୍ଧଧର୍ମ ତିବ୍‌ବତର ଜନସାଧାରଣଙ୍କ ହୃଦୟରେ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇପାରିଥିଲା। ସମୟକ୍ରମେ ଏଭଳି ହେଲା ଯେ ବୌଦ୍ଧଧର୍ମାବଲମ୍ବୀମାନଙ୍କ ପ୍ରତି କ୍ରୂର ବ୍ୟବହାର କରିଥିବା ହେତୁ ତିବ୍‌ବତର ରାଜା ବୁଦୁମ୍ ତସେନ୍‌ଙ୍କୁ ହତ୍ୟା କରାଯାଇଥିଲା। ଗୁରୁ ପଦ୍ମସମ୍ଭବ ଉଡ୍‌ଡୀୟାନ ବା ଓଡ଼ିଶାର ରାଜା ଇନ୍ଦ୍ରଭୂତିଙ୍କ ପୌଷ୍ୟପୁତ୍ର ଥିଲେ। ପ୍ରଖ୍ୟାତ ତିବ୍‌ବତୀୟ ପରିବ୍ରାଜକ ତାରାନାଥ ଓ ବୁଦ୍ଧଗୁପ୍ତ ସେମାନଙ୍କର ଭ୍ରମଣ ବିବରଣୀରେ ଉଡ୍ର ବା ଉଡ୍‌ଡୀୟାନ କଥା ବାରମ୍ବାର ଉଲ୍ଲେଖ କରିଛନ୍ତି। ଏଥିରୁ ତିବ୍‌ବତ ଓ ଓଡ଼ିଶାର ସମ୍ପର୍କ ବହୁ ପୁରାତନକାଳରୁ ନିବିଡ଼ ଥିଲା ବୋଲି ପ୍ରମାଣ ମିଳେ।

ତିବ୍‌ବତୀୟମାନେ ଏକଦା ଦୁର୍ଦ୍ଧର୍ଷ ଜାତି ଥିଲେ। ସେଠାରେ ବୌଦ୍ଧଧର୍ମର ପ୍ରଚାର ପରେ ସେମାନେ ଶାନ୍ତିପ୍ରିୟ ହୋଇଗଲେ ଏବଂ ନିଜ ଦେଶର ନିରାପତ୍ତା ଓ ସୁରକ୍ଷା ଦିଗରେ ଯତ୍ନବାନ ହୋଇପାରିଲେ ନାହିଁ। ସେହି ସମୟରେ ସବଳ ଥିବା ପଡ଼ୋଶୀ ରାଷ୍ଟ୍ର ଚୀନ୍ ତିବ୍‌ବତର ସ୍ୱାଧୀନତାକୁ ବିପନ୍ନ କରିଥିଲା। ୧୨୬୭ ଖ୍ରୀଷ୍ଟାବ୍ଦରେ ମଙ୍ଗୋଲମାନେ ତିବ୍‌ବତ ଆକ୍ରମଣ କରି ତାକୁ ଅଧିକାର କରିନେଇଥିଲେ। ୧୨୮୦

ଖ୍ରୀଷ୍ଟାବ୍ଦରେ ଚୀନ୍ ମଧ୍ୟ ତିବ୍‌ବତକୁ ଆକ୍ରମଣ କରିଥିଲା । ତେବେ ଏହି ସମୟରେ ଉଭୟ ଚୀନ୍ ଓ ତିବ୍‌ବତ ମଙ୍ଗୋଲୀୟ ଶାସନ ଅଧୀନସ୍ଥ ହୋଇଥିଲେ । ୧୩୫୮ ଖ୍ରୀଷ୍ଟାବ୍ଦରେ ରାଜା ଫାଗ୍‌ମୋଦ୍ରୁପ ଯେତେବେଳେ ତିବ୍‌ବତର ଶାସନଭାର ଗ୍ରହଣକରି ଶାକ୍ୟ ଶାସନର ପୁନଃସ୍ଥାପନା କଲେ ସେତେବେଳେ ତିବ୍‌ବତୀୟମାନେ ମଙ୍ଗୋଲୀୟ ଶାସନରୁ ମୁକ୍ତ ହେଲେ । ଦଶବର୍ଷ ପରେ ୧୩୬୮ ଖ୍ରୀଷ୍ଟାବ୍ଦରେ ଚୀନ୍ ଲୋକ ମଙ୍ଗୋଲୀୟମାନଙ୍କୁ ବିତାଡ଼ିତ କରି ମିଙ୍ଗ୍ ରାଜବଂଶର ସ୍ଥାପନା କଲେ । ୧୬୪୨ ଖ୍ରୀଷ୍ଟାବ୍ଦରେ ପଞ୍ଚମ ଦଲାଇ ଲାମା ନଙ୍ଗୱଙ୍ଗ ଲୋବ୍‌ସାଙ୍ଗ୍ ଗ୍ୟାତ୍‌ସୋ ତିବ୍‌ବତର ଆଧ୍ୟାତ୍ମିକ ଓ ବ୍ୟାବହାରିକ ମୁଖ୍ୟ ହେଲେ । ବର୍ତ୍ତମାନର ତିବ୍‌ବତୀୟ ଶାସନଧାରାକୁ ସେ ହିଁ ସ୍ଥାପିତ କରିଥିଲେ । ଶାସନଭାର ଗ୍ରହଣ କରିବା ପରେ ତିବ୍‌ବତର ସାର୍ବଭୌମତ୍ୱ ପ୍ରତି ଚୀନ୍‌ର ସମ୍ମତି ଓ ସ୍ୱୀକୃତି ଦାବି କରିବା ପାଇଁ ଦଲାଇ ଲାମା ଚୀନ୍ ପରିଦର୍ଶନରେ ଗଲେ । ଚୀନ୍‌ର ମିଙ୍ଗ୍ ସମ୍ରାଟ ଦଲାଇ ଲାମାଙ୍କୁ କେବଳ ଏକ ସ୍ୱାଧୀନ ରାଷ୍ଟ୍ରର ମୁଖ୍ୟ ରୂପେ ଗ୍ରହଣ କଲେନାହିଁ, ତାଙ୍କୁ ମଧ୍ୟ ବିଶ୍ୱରେ ଆବିର୍ଭୂତ ଜଣେ ଦେବସତ୍ତା ରୂପେ ସମ୍ମାନିତ କଲେ ।

ବିଂଶ ଶତାବ୍ଦୀର ଆଦ୍ୟଭାଗରେ ଇଂରେଜ ସରକାର ତିବ୍‌ବତକୁ ଏକ ସ୍ୱାଧୀନ ରାଷ୍ଟ୍ର ଭାବରେ ସ୍ୱୀକାର କରି ତିବ୍‌ବତ ସହିତ ଏକ ଚୁକ୍ତି ସମ୍ପାଦନ କରିଥିଲେ । ଏ ଚୁକ୍ତିରେ ଚୀନ୍ ଅଂଶୀଦାର ନଥିଲା । ପୁନଶ୍ଚ ୧୯୧୪ରେ ଇଂରେଜ ସରକାର ସିମଲାଠାରେ ଭାରତ, ଚୀନ୍ ଓ ତିବ୍‌ବତ ମଧ୍ୟରେ ଏକ ତ୍ରିପାକ୍ଷିକ ଆଲୋଚନା କରାଇଥିଲେ । ଭାରତ, ଚୀନ୍ ଓ ତିବ୍‌ବତ ମଧ୍ୟରେ ସୀମା ନିରୂପଣ ଓ ଚିହ୍ନଟ ଥିଲା ଏହାର ମୂଳ ଲକ୍ଷ୍ୟ । ଚୀନ୍ ପ୍ରତିନିଧି ମୂଳ ଦଲିଲରେ ସ୍ୱାକ୍ଷର କରିଥିଲେ ମଧ୍ୟ ପରେ ଏହାକୁ ଗ୍ରହଣ କରିନଥିଲେ । ବ୍ରିଟିଶ୍-ଭାରତ ଓ ତିବ୍‌ବତ ସୀମା ସରହଦ ନେଇ ମାନଚିତ୍ର ଓ ନକ୍‌ସାରେ ଏକ ସୀମାରେଖା ଉପରେ ରାଜିହେଲେ ଯାହାକି ମ୍ୟାକ୍‌ମୋହନ ଲାଇନ୍ ନାମରେ ପରିଚିତ । ଭାରତର ସ୍ୱାଧୀନତା ଲାଭ କରିବା ସମୟରେ ସେହି ତିବ୍‌ବତ ଚୁକ୍ତି ଓ ମ୍ୟାକ୍‌ମୋହନ ଲାଇନ୍ ବଳବତ୍ତର ଥିଲା ।

ସେପ୍ଟେମ୍ବର ୧୯୪୯ରେ ଚୀନ୍ ତିବ୍‌ବତ ଆକ୍ରମଣ କଲା ଏବଂ ଅକ୍ଟୋବର ୧୯, ୧୯୫୦ରେ ଚାମୋଡ଼ା ଅଧିକାର କରିନେଲା । ୧୯୫୦ ମସିହାରେ ଏଲ୍‌ସାଲ୍‌ଭକଡ଼ୋର ଜାତିସଂଘରେ ତିବ୍‌ବତ ଉପରେ ଚୀନ୍‌ର ଆକ୍ରମଣ ପ୍ରଶ୍ନ ଉ୍ୟ ।ପନ କରିଥିଲେ । କିନ୍ତୁ ଏହା ଉପରେ ଆଲୋଚନା ହୋଇନଥିଲା । ମେ' ୨୩, ୧୯୫୧ରେ

ଚୀନ୍ ସରକାରଙ୍କ ନିମନ୍ତ୍ରଣ କ୍ରମେ ଚତୁର୍ଦ୍ଦଶ ଦଲାଇ ଲାମା ଚୀନ୍ ଗସ୍ତରେ ଯାଇଥିଲେ। ସେଠାରେ ଏକ ସତରଦଫା ରାଜିନାମାରେ ତାଙ୍କୁ ସ୍ୱାକ୍ଷର କରିବାକୁ ବାଧ କରାଯାଇଥିଲା ଏବଂ ସେହି ଦଲିଲକୁ ଚୀନ୍ ସରକାର ତିବ୍ବତକୁ ଏକ ଉପନିବେଶରେ ପରିଣତ କରିବା ପାଇଁ ଏକ ଅସ୍ତ୍ର ଭାବରେ ବ୍ୟବହାର କଲେ।

ସେପ୍ଟେମ୍ବର ୯, ୧୯୫୧ରେ ଚୀନ୍ ସୈନ୍ୟମାନେ ତିବ୍ବତକୁ ଆକ୍ରମଣ କରି ଖୁବ୍ ଅଳ୍ପ ସମୟ ମଧ୍ୟରେ ସମଗ୍ର ତିବ୍ବତକୁ ଦଖଲ କରିନେଲେ। ତିବ୍ବତୀୟମାନେ ଚୀନ୍ ସୈନ୍ୟମାନଙ୍କୁ ପ୍ରତିରୋଧ କରିଥିଲେ ଏବଂ ଦୀର୍ଘ ଆଠବର୍ଷ ଧରି ୧୯୫୯ ମସିହା ପର୍ଯ୍ୟନ୍ତ ତାଙ୍କର ପ୍ରତିରୋଧ ଜାରି ରହିଥିଲା। ମାର୍ଚ୍ଚ ୧୦, ୧୯୫୯ରେ ତିବ୍ବତର ଜନସାଧାରଣ ଚୀନ୍‌ର ତିବ୍ବତ ଅଧିକାର ବିରୋଧରେ ବିରାଟ ଆନ୍ଦୋଳନ କରିଥିଲେ। ଏହି ଆନ୍ଦୋଳନକୁ ଚୀନ୍‌ର ସୈନ୍ୟମାନେ ଅତି ନିର୍ଦ୍ଦୟ ଭାବରେ ଦମନ କରିଥିଲେ। ଚୀନ୍‌ର ସରକାରୀ ସୂତ୍ରରୁ ପ୍ରାପ୍ତ ତଥ୍ୟ ଅନୁସାରେ ୧୯୫୦ରେ ହୋଇଥିବା ତିବ୍ବତ ଆକ୍ରମଣ ଓ ୧୯୫୯ର ବିଦ୍ରୋହ ସମୟରେ କେବଳ କେନ୍ଦ୍ରୀୟ ତିବ୍ବତରେ ସତାଅଶୀ ହଜାର ତିବ୍ବତୀୟଙ୍କୁ ହତ୍ୟା କରାଯାଇଥିଲା। କିନ୍ତୁ ତିବ୍ବତୀୟ ଅଧିକାରୀଙ୍କ ପ୍ରଦତ୍ତ ତଥ୍ୟ ଅନୁଯାୟୀ ଏକ ଲକ୍ଷ କୋଡ଼ିଏ ହଜାର ତିବ୍ବତୀୟଙ୍କୁ, ପୁରୁଷ, ନାରୀ, ବୃଦ୍ଧ, ଶିଶୁ ନିର୍ବିଶେଷରେ, ହତ୍ୟା କରାଯାଇଥିଲା।

ଏହି ପରିସ୍ଥିତିର ମୁକାବିଲା କରିବାକୁ କୌଣସି ବାଟ ନ ପାଇ ଚତୁର୍ଦ୍ଦଶ ଦଲାଇ ଲାମା ତେନ୍‌ଜିନ୍ ଗ୍ୟାତ୍‌ସୋ ମାର୍ଚ୍ଚ ୧୭, ୧୯୫୯ରେ ଲାସା ଛାଡ଼ି ଭାରତରେ ଆଶ୍ରୟ ଗ୍ରହଣ କରିବାକୁ ପଳାଇ ଆସିଲେ। ତାଙ୍କ ସହିତ ଅଶି ହଜାରରୁ ଊର୍ଦ୍ଧ୍ୱ ତିବ୍ବତୀୟ ମଧ୍ୟ ସେହି ସମୟରେ ଭାରତକୁ ଆସିଥିଲେ ଏବଂ ସେମାନେ ସେବେଠାରୁ ଭାରତରେ ରହୁଛନ୍ତି।

ତିବ୍ବତର ଅବସ୍ଥା ସମ୍ପର୍କରେ 'ତିବ୍ବତ ପ୍ରସଙ୍ଗ' ନାମକ ଏକ ପୁସ୍ତକର 'ତିବ୍ବତରେ ଚୀନ ଉପନିବେଶର ପଚାଶ ବର୍ଷ'ରେ ଯାହା ବର୍ଣ୍ଣିତ ହୋଇଛି ତାହା ଏଠାରେ ଉଦ୍ଧାର କରିବା ଉଚିତ ହେବ। ୧୯୬୦ ଦଶକରେ ଅନ୍ତର୍ଜାତୀୟ ବିଚାର ଆୟୋଗ (International Commission of Jurists) ବ୍ୟାପକ ଅନୁସନ୍ଧାନ କରି ଜାଣିବାକୁ ପାଇଲେ ଯେ ଚୀନ୍ ତିବ୍ବତରେ ଗଣହତ୍ୟା ଦୋଷରେ ଦୋଷୀ। "ପୃଥିବୀରେ ଯେକୌଣସି ସାମ୍ୟବାଦୀ ଶାସନଠାରୁ ଅଧିକ କ୍ରୂର ଓ ଅମାନବିକ" ବୋଲି କହି ଆଲେକ୍‌ଜାଣ୍ଡର ସୋଲଝେନିସିନ୍ ତିବ୍ବତରେ ଚୀନ୍ ଶାସନକୁ ଭର୍ତ୍ସନା

କରିଥିଲେ। ୧୯୫୯, ୧୯୬୧ ଓ ୧୯୬୫ରେ ତିନୋଟି ପ୍ରସ୍ତାବକୁ ଅନୁମୋଦନ କରି ଜାତିସଂଘ ତିବ୍ବତ ଜନତାଙ୍କ ମୌଳିକ ମାନବିକ ଅଧିକାର ଉଲ୍ଲଂଘନରେ ଗଭୀର ଉଦ୍‌ବେଗ ପ୍ରକାଶ କରି କହିଥିଲେ ଯେ ତିବ୍‌ବତର ଜନସାଧାରଣ ସେମାନଙ୍କର ସ୍ୱୟଂଶାସନର ଅଧିକାରକୁ ହରାଇ ବସିଛନ୍ତି। ଜାତିସଂଘର ଏପରି ନିନ୍ଦାବାଦ ପରେ ମଧ୍ୟ ତିବ୍‌ବତରେ ଚୀନ୍ ତାର ଅତ୍ୟାଚାର ବଜାୟ ରଖିଲା। ତିବ୍‌ବତରେ ବିଗତ ସତଷଠି ବର୍ଷ ମଧ୍ୟରେ ଚୀନ୍‌ର ସୈନ୍ୟବାହିନୀ ଅନ୍ୟୁନ ବାର ଲକ୍ଷ ତିବ୍‌ବତୀୟଙ୍କୁ ହତ୍ୟା କରିଛି। ଛଅ ହଜାରରୁ ଅଧିକ ବୌଦ୍ଧମଠକୁ ଧ୍ୱଂସ କରିଦିଆଯାଇଛି। ଷାଠିଏ ଲକ୍ଷ ତିବ୍‌ବତୀୟ ତାଙ୍କ ଦେଶରେ ପଚସ୍ତରୀ ଲକ୍ଷ ଚୀନ୍ ଲୋକଙ୍କର ଥଇଥାନ ଯୋଗୁଁ ବର୍ତ୍ତମାନ ସଂଖ୍ୟାନ୍ୟୁନ ହୋଇଯାଇଛନ୍ତି। ଚୀନ୍ ନାଗରିକମାନଙ୍କୁ ତିବ୍‌ବତରେ ରହିବାପାଇଁ ଦିଆଯାଉଥିବା ଉତ୍ସାହ, ସୁବିଧାସୁଯୋଗ ଡେଙ୍ଗ ଜିଆଓ ପିଙ୍ଗ ଓ ଅନ୍ୟାନ୍ୟ ସରକାରୀ ଅଫିସରମାନେ ୧୯୮୩ ମସିହାରେ ସ୍ୱୀକାର କରିଥିଲେ। ୧୯୯୨ ମସିହାରେ ହଜାର ହଜାର ଚୀନ୍‌ର ମୂଳ ଅଧିବାସୀ ଆସି ମଧ୍ୟ-ତିବ୍‌ବତରେ ବସତି ସ୍ଥାପନ କରିଛନ୍ତି। ଚୀନ୍ ନାଗରିକଙ୍କୁ ତିବ୍‌ବତ ଯିବାପାଇଁ ପ୍ରଲୋଭିତ କରିବାକୁ କେତେକ ନୂତନ ଅର୍ଥନୈତିକ ପ୍ରକଳ୍ପ ମଧ୍ୟ ଆରମ୍ଭ ହୋଇଛି। ତିବ୍‌ବତରେ ମଠ ଓ ଧର୍ମାନୁଷ୍ଠାନଗୁଡ଼ିକୁ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ସେଠାରୁ ମୂଲ୍ୟବାନ ଉପକରଣସବୁ ଲୁଟ୍ କରାଯାଇ ହଂକଂ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶରେ ବିକ୍ରି କରିଦିଆଯାଉଛି। ତିବ୍‌ବତୀୟ ଶିଶୁମାନଙ୍କୁ ସେମାନଙ୍କର ମୌଳିକ ଶିକ୍ଷା ବାରଣ କରାଯାଇଛି। ଏବେ ମଧ୍ୟ ତିବ୍‌ବତୀୟମାନଙ୍କ ମଧ୍ୟରୁ ସତୁରି ପ୍ରତିଶତ ନିରକ୍ଷର ରହିଛନ୍ତି। ନିଜର ମୌଳିକ ଅଧିକାର ଫେରିପାଇବାକୁ ସାମାନ୍ୟତମ ଚେଷ୍ଟା କରୁଥିବା ବ୍ୟକ୍ତିମାନଙ୍କୁ ବିନା ବିଚାରରେ ବନ୍ଦୀ କରାଯାଉଛି। ଏବେ ହଜାର ହଜାର ତିବ୍‌ବତୀୟ ବିଭିନ୍ନ ଜେଲ୍‌ରେ ବନ୍ଦୀ ଅଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ପଚିଶ ବର୍ଷରୁ କମ୍ ବୟସର ଯୁବକ। ତିବ୍‌ବତରେ ଚୀନ୍ ଲୋକେ ଆଧୁନିକ ବ୍ୟବସ୍ଥା ଥିବା ଘରମାନଙ୍କରେ ରହୁଥିଲାବେଳେ ତିବ୍‌ବତୀୟମାନଙ୍କୁ ସେମୋନଙ୍କ ପୁରୁଣା ଘରେ ଏବଂ ଉଚ୍ଚା ପାହାଡ଼ିଆ ଅଞ୍ଚଳରେ ରହିବାକୁ ବାଧ୍ୟ କରାଯାଉଛି। ତିବ୍‌ବତକୁ ଛଅ ଭାଗରେ ବିଭକ୍ତ କରାଯାଇଛି। ଚୀନ୍ ଲୋକମାନେ ଯାହାକୁ ତିବ୍‌ବତ ବୋଲି କହୁଛନ୍ତି ତାହା ହେଉଛି ମୂଳ ତିବ୍‌ବତର ଏକ ଅଂଶ ମାତ୍ର। ଅନ୍ୟ ପାଞ୍ଚ ଭାଗକୁ ପଡ଼ୋଶୀ ଚୀନ୍ ପ୍ରଦେଶଗୁଡ଼ିକରେ ମିଶାଇ ଦିଆଯାଇଛି। ଚୀନ୍ ଏବେ ତିବ୍‌ବତକୁ ଏକ ସାମରିକ ଶସ୍ତ୍ରାଗାରରେ ପରିଣତ କରିଛି। ତିବ୍‌ବତର

ସମୃଦ୍ଧ ସୁରକ୍ଷିତ ପରିବେଶକୁ ଚୀନ୍ ଧ୍ୱଂସ କରିଦେଇଛି। ତିବ୍ବତର ଅଧିକାଂଶ ବନ୍ୟଅଞ୍ଚଳରୁ ମୂଲ୍ୟବାନ ଗଛସବୁ କାଟି ବିକ୍ରି କରିଦିଆଯାଇଛି ଓ ଖଣିଜ ସମ୍ପଦକୁ ନିର୍ବିଚାର ଭାବରେ ଲୁଟ୍ କରି ଚୀନ୍ ନିଜ ଅଞ୍ଚଳର ଉନ୍ନତିରେ ଉପଯୋଗ କରୁଛି। ତିବ୍ବତର ବନ୍ୟଜନ୍ତୁମାନଙ୍କୁ ନିର୍ବିଚାର ଭାବରେ ଶିକାର କରିବାରୁ ସେଠାରେ ବର୍ତ୍ତମାନ ବନ୍ୟଜନ୍ତୁ ପ୍ରାୟ ଲୁପ୍ତ ହୋଇଗଲେଣି।

ଚୀନ୍ ଆକ୍ରମଣ ପୂର୍ବରୁ ତିବ୍ବତରେ ଅତି ସଫଳ ପରିବେଶ ସୁରକ୍ଷା ବ୍ୟବସ୍ଥା ରହିଥିଲା। ଏବେ ଚୀନ୍ ତିବ୍ବତର ପ୍ରାକୃତିକ ପରିବେଶକୁ ଯେଉଳି ଧ୍ୱଂସ କରୁଛି, ତାହା ବିଶ୍ୱରେ କେବେ କେଉଁଠି ଘଟି ନ ଥିଲା। ତିବ୍ବତର ସମୃଦ୍ଧ ବନ୍ୟ ଜୀବନ, ଅରଣ୍ୟ, ବୃକ୍ଷରାଜି, ଖଣିଜଦ୍ରବ୍ୟ ଓ ଜଳର ଉତ୍ସମାନ ଏପରି ନିମ୍ନସ୍ତରକୁ ଖସିଯାଇଛି ଯେ ସେଗୁଡ଼ିକର ପୁନରୁଦ୍ଧାର ଆଉ ସମ୍ଭବପର ନୁହେଁ।

୧୯୮୫ ଶେଷସୁଦ୍ଧା ତିବ୍ବତରୁ ପ୍ରାୟ ୫୪ କୋଟି ଡଲାର ମୂଲ୍ୟର କାଠ କାଟିକରି ନେଇଯାଇଛନ୍ତି। ଚୀନ୍ କର୍ତ୍ତୃପକ୍ଷ ତିବ୍ବତରୁ ୟୁରାନିଅମ ଓ ଜାଳେଣି ତେଲକୁ ମିଶାଇ ୧୨୬ ପ୍ରକାରରୁ ଅଧିକ ଖଣିଜଦ୍ରବ୍ୟ ସଂଗ୍ରହ କରି ନେଇଯାଇଛନ୍ତି। ତିବ୍ବତ ଅରଣ୍ୟରେ ଏକଦା ଭାଲୁ, ଗଧିଆ, ବଣୁଆ ପାତୀହଂସ, ବତକ, ନୀଳମେଷ, ସମ୍ବର, ତୁଷାରବାଘ, ପଣ୍ଡା ଇତ୍ୟାଦି ରହିଥିଲେ। ବର୍ତ୍ତମାନ ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୁପ୍ତ ହୋଇଗଲେଣି।

ତିବ୍ବତକୁ ଚୀନ୍ ଅଧିକାର କରିନେବା ପରେ ହିମାଳୟ ସୀମାରେ ଭାରତୀୟ ଓ ଚୀନ୍ ସୈନ୍ୟବାହିନୀ ମୁହାଁମୁହିଁ ହୋଇ ରହିଛନ୍ତି। ୧୯୬୨ ମସିହା ଅକ୍ଟୋବର ୨୦ରୁ ନଭେମ୍ବର ୨୧ ପର୍ଯ୍ୟନ୍ତ ଉଭୟ ଦେଶ ମଧ୍ୟରେ ଘମାଘୋଟ ଲଢ଼ାଇ ହୋଇଥିଲା। ବରାବର ଚୀନ୍ ସୈନ୍ୟମାନେ ଭାରତକୁ ପଶିଆସିବାକୁ ଚେଷ୍ଟା କରୁଛନ୍ତି, କିନ୍ତୁ ଭାରତୀୟ ସେନା ତାକୁ ପ୍ରତିହତ କରିଦେଉଛି। ପାକିସ୍ତାନକୁ ଆଣବିକ ଅସ୍ତ୍ର ନିର୍ମାଣରେ ଚୀନ୍ ସହାୟତା ଜାରି ରଖିଛି। ପାକିସ୍ତାନ ସାମରିକ ବାହିନୀକୁ ଓ ବର୍ମାର ସାମରିକ ସରକାରକୁ ସବୁବେଳେ ସାହାଯ୍ୟ ଯୋଗାଇଦେଇ ଚୀନ୍ ଭାରତ ଉପମହାଦେଶରେ ନିଜର ପ୍ରାଧାନ୍ୟ ବିସ୍ତାର କରୁଛି। ବଙ୍ଗୋପସାଗରରେ ନୌଘାଟୀ ସ୍ଥାପନ କରି ଭାରତ ଉପରେ ସାମରିକ ଚାପ ସୃଷ୍ଟି କରୁଛି। ଆଜିକାଲି ତିବ୍ବତରେ ଚୀନ୍‌ର ତିନି ଲକ୍ଷରୁ ପାଞ୍ଚ ଲକ୍ଷ ସେନାବାହିନୀ ରହିଛନ୍ତି ଯେଉଁମାନଙ୍କ ଭିତରୁ ଦୁଇ ଲକ୍ଷ ଭାରତର ସୀମାନ୍ତରେ ଥିବା ମଧ୍ୟ-ତିବ୍ବତରେ ସ୍ଥାୟୀଭାବେ ଅଛନ୍ତି। ଏହା ବ୍ୟତୀତ

୧୭ଟି ଗୁପ୍ତ ର୍‌ୟାଡ଼ାର ଘାଟୀ, ୧୪ଟି ସାମରିକ ବିମାନ ବନ୍ଦର, ଅଧିକାଂଶ ଭାରତର ସୀମାକୁ ଲାଗିଥିବା ୫ଟି କ୍ଷେପଣାସ୍ତ୍ର ଘାଟୀ (ଯଥା- କୋଙ୍ଗ୍‌ପୋ ନାଇତ୍ରି, ପୋଦୋ ତ୍ରାମୋ, ରୁଡ଼ୋକ୍, ଗୋଲ୍‌ମୁ ଓ ନାଗ୍‌ଛୁ) ଅନ୍ତତଃ ଆଠଟି ଆନ୍ତମହାଦେଶୀୟ କ୍ଷେପଣାସ୍ତ୍ର, ୭୦ଟି ମଧ୍ୟଦୂରଗାମୀ କ୍ଷେପଣାସ୍ତ୍ର ଓ ୨୦ଟି ସ୍ୱଳ୍ପଦୂରଗାମୀ କ୍ଷେପଣାସ୍ତ୍ର ରହିଛି ।

ଏତଦ୍‌ବ୍ୟତୀତ ରାସାୟନିକ ଯୁଦ୍ଧାଭ୍ୟାସ ଓ ଅନ୍ୟାନ୍ୟ ଦେଶମାନଙ୍କର ଆଣବିକ ଆବର୍ଜନା ଜମା କରିବା ପାଇଁ ଚୀନ୍ ତିବ୍‌ବତକୁ ବ୍ୟବହାର କରୁଛି । ଆମେରିକାର ୱାଶିଂଟନ୍‌ଠାରେ ଅବସ୍ଥିତ ତିବ୍‌ବତ ସପକ୍ଷରେ ଆନ୍ତର୍ଜାତିକ ପ୍ରଚାର (International Campaign for Tibet) ନାମକ ଏକ ଅନୁଷ୍ଠାନ ଚୀନ୍‌ର ତିବ୍‌ବତରେ ହେଉଥିବା ସାମରିକ ପ୍ରସ୍ତୁତିକୁ ଲୋକଲୋଚନକୁ ଆଣିଛି ।

ତିବ୍‌ବତର ଜନସାଧାରଣଙ୍କ ଆଶା ଓ ଆକାଂକ୍ଷାକୁ ପଶୁବଳ ପ୍ରୟୋଗ କରି ନଷ୍ଟ କରିବାରେ ଚୀନାମାନେ ସଫଳ ହୋଇପାରି ନାହାଁନ୍ତି । ତେଣୁ ଏବେ ସେମାନେ ତିବ୍‌ବତୀୟ ଲୋକମାନଙ୍କ ସମାଜ, ସଂସ୍କୃତି, ଧର୍ମ ଓ ସ୍ୱତନ୍ତ୍ର ରାଷ୍ଟ୍ରର ପରିଚୟକୁ ଧ୍ୱଂସ କରିବା ଲାଗି ନିଷ୍ପତ୍ତି ନେଇଛନ୍ତି । ସେମାନେ ରେଳପଥ ନିର୍ମାଣ କରି ତିବ୍‌ବତର ପ୍ରାକୃତିକ ସମ୍ପଦକୁ ନିଃଶେଷ କରିବା ଲକ୍ଷ୍ୟରେ ସମୁଦ୍ରପତ୍ତନଠାରୁ ଚାରି/ପାଞ୍ଚ ହଜାର ମିଟର ଉପରେ ଅବସ୍ଥିତ ପାର୍ବତ୍ୟାଞ୍ଚଳରେ ଚୀନ୍‌ର ଲୋକମାନଙ୍କୁ ଆଣି ସେଠାରେ ଥଇଥାନ କରିବାର ଯୋଜନା ଜାରି ରଖିଛନ୍ତି । ତିବ୍‌ବତର ଲାସା ଓ ଗୋର୍ମୋକୁ ସଂଯୋଗ କରିବାକୁ ୧୧୧୮ କିଲୋମିଟର ଦୀର୍ଘ ରେଳପଥ କାର୍ଯ୍ୟ ୨୯ ଜୁନ୍ ୨୦୦୧ରେ ଆରମ୍ଭ କରିଥିଲେ, ଯାହାକି ଶେଷ ପର୍ଯ୍ୟାୟରେ ଅଛି । ପାର୍ବତ୍ୟାଞ୍ଚଳରେ ବ୍ୟାପକ ଟନେଲ୍ ନିର୍ମାଣ ଯୋଗୁଁ ପରିବେଶ ଉପରେ ଏହାର ଅତ୍ୟଧିକ କୁପ୍ରଭାବ ପଡ଼ିଛି । ଚୀନ୍‌ର ରାଷ୍ଟ୍ରପତି ଜିଆଙ୍ଗ ଜେମିନ୍ ନ୍ୟୁୟର୍କ ଗସ୍ତ ସମୟରେ ଚୀନ୍‌ର ରେଳପଥ ନିର୍ମାଣ ଯେତେ ବ୍ୟୟସାପେକ୍ଷ ହେଲେ ମଧ୍ୟ ତାହା ସମ୍ପୂର୍ଣ୍ଣ କରିବାକୁ ସେମାନେ ବଦ୍ଧପରିକର ବୋଲି ପ୍ରକାଶ କରିଛନ୍ତି । ଡକ୍ଟର ସୁଭାଷ କପିଳା ନାମକ ଜଣେ ଭାରତୀୟ ଚୀନ୍ ସମ୍ପର୍କରେ ଗବେଷଣା କରି କହିଛନ୍ତି ଯେ, ଚୀନ୍‌ର ସେନା ସଂଖ୍ୟା ଦ୍ୱିଗୁଣିତ କରିବା ସହ ଭାରତ ସୀମାରେ ସେନାକୁ ମୁତୟନ କରିବା ଲକ୍ଷ୍ୟରେ ଏହି ରେଳପଥ ନିର୍ମାଣର ଅନ୍ୟତମ ଉଦ୍ଦେଶ୍ୟ । ଲାସା ସହ ରେଳପଥ ଯୋଗାଯୋଗ ସମ୍ଭବ ହେଲେ ପିପୁଲ୍‌ସ ଲିବରେସନ୍ ଆର୍ମି ଗୋର୍ମୋ ଡିଭିଜନକୁ ସହଜରେ ସମ୍ପ୍ରସାରିତ ହୋଇପାରିବ ବୋଲି ଚୀନ୍‌ର ଗଣମାଧ୍ୟମ ପ୍ରକାଶ କରିଥିଲେ । ଚୀନ୍‌ର ୟୁନାନ୍ ପ୍ରଦେଶର ଦାଲି ସହ

ଲାସାର ଯୋଗାଯୋଗ ଦ୍ୱିତୀୟ ପର୍ଯ୍ୟାୟରେ ସମ୍ପ୍ରସାରିତ ରେଳପଥ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାପରେ ସମ୍ଭବ ହେବ।

ବର୍ଷବର୍ଷ ଧରି ମହାମାନ୍ୟ ଦଲାଇ ଲାମା ସାରାବିଶ୍ୱରେ ଭ୍ରମଣ କରି ତିବ୍‌ବତର ଦୁଃଖଦାୟକ ଅବସ୍ଥା ବର୍ଣ୍ଣନା କରି ଶାନ୍ତି ଓ ଅହିଂସାର ବାର୍ତ୍ତା ପ୍ରଚାର କରୁଛନ୍ତି। ବିଶ୍ୱ ଶାନ୍ତି ଓ ସଦ୍‌ଭାବ ପାଇଁ ତାଙ୍କର ଅବଦାନର ସ୍ୱୀକୃତି ସ୍ୱରୂପ ୧୯୮୯ ମସିହାରେ ତାଙ୍କୁ ନୋବେଲ ଶାନ୍ତି ପୁରସ୍କାରରେ ସମ୍ମାନିତ କରାଯାଇଥିଲା। ବିଗତ ବର୍ଷଗୁଡ଼ିକରେ ତିବ୍‌ବତ ସମସ୍ୟା ଅଧିକରୁ ଅଧିକ ଲୋକଲୋଚନକୁ ଆସିଛି। ବିଶ୍ୱର ଅନ୍ତତଃ ୪୦ଟି ଦେଶରେ ତିବ୍‌ବତ ସପକ୍ଷବାଦୀ ଦଳମାନ ଗଠିତ ହୋଇଛି। ତିବ୍‌ବତ ସପକ୍ଷରେ ବହୁଦେଶର ସଂସଦମାନ ପ୍ରସ୍ତାବ ଗ୍ରହଣ କରିଛନ୍ତି ଏବଂ ତିବ୍‌ବତ ଲୋକଙ୍କ ମୌଳିକ ଅଧିକାରଗୁଡ଼ିକ ପ୍ରତି ସମ୍ମାନ ଜଣାଇବାକୁ ଚୀନ୍ କମ୍ୟୁନିଷ୍ଟ ସରକାର ନିକଟରେ ଦାବି କରିଛନ୍ତି। କିନ୍ତୁ ଚୀନ୍ ଯେ ତିବ୍‌ବତ ଉପରେ ନିଜର ଅକ୍ତିଆରକୁ କୋହଳ କରିବ ଏହାର ସମ୍ଭାବନା କ୍ଷୀଣ। ବର୍ତ୍ତମାନ ଚୀନ୍‌ର ସେନାବାହିନୀ ଓ ଅଧିକାରୀମାନେ ତିବ୍‌ବତ ଲୋକଙ୍କ ଉପରେ ଯେଉଁଭଳି ଅମାନବିକ ଅତ୍ୟାଚାର ଚଳାଇଛନ୍ତି ଏବଂ ତିବ୍‌ବତର ସତ୍ତା ଲୋପ କରିବାକୁ ହିଂସ୍ର ପଦକ୍ଷେପମାନ ଗ୍ରହଣ କରୁଛନ୍ତି, ସେଥିରୁ ନିବୃତ୍ତ ହେବାକୁ ଜାତିସଂଘର ସଦସ୍ୟ ରାଷ୍ଟ୍ରମାନେ ଚୀନ୍ ଉପରେ ଚାପ ପକାଇବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି।

ଦଲାଇ ଲାମା ବିଗତ ସତାବନ ବର୍ଷ ଧରି ପୃଥିବୀର ବହୁଦେଶ ପରିଭ୍ରମଣ କରି ଓ ସେଠାକାର ନେତାମାନଙ୍କ ସହିତ ସାକ୍ଷାତ ଆଲୋଚନା କରି ବୁଝିସାରିଲେଣି ଯେ ଯଦିଓ ତିବ୍‌ବତବାସୀଙ୍କ ଦୁର୍ଦ୍ଦଶା ପ୍ରତି ସବୁଦେଶର ନେତାମାନଙ୍କର ସହାନୁଭୂତି ଅଛି ତଥାପି ତିବ୍‌ବତକୁ ଚୀନ୍ କବଳରୁ ମୁକ୍ତ କରିବା ନିମନ୍ତେ ସେ କୌଣସି ଦେଶଠାରୁ ସାମରିକ ସାହାଯ୍ୟ ପାଇପାରିବେ ନାହିଁ। ତିବ୍‌ବତରେ ଆଭ୍ୟନ୍ତରୀଣ ବିଦ୍ରୋହ ଓ ଖେମ୍ପା ଉପଜାତିଙ୍କର ତିବ୍‌ବତ ମଧ୍ୟରେ ବିଦ୍ରୋହ ସୃଷ୍ଟି କରିବାର ଉଦ୍ୟମ ମଧ୍ୟ ଚୀନ୍ ସୈନ୍ୟମାନଙ୍କ ଦ୍ୱାରା ଦୃଢ଼ହସ୍ତରେ ଦମନ ହୋଇଛି। ସେ ଉପଲବ୍ଧି କଲେଣି ଚୀନ୍‌ରେ କେନ୍ଦ୍ର ସରକାର ଦୃଢ଼ ଥିବା ପର୍ଯ୍ୟନ୍ତ ତିବ୍‌ବତର ସ୍ୱାଧୀନତା ସମ୍ଭବପର ନୁହେଁ। ତେଣୁ ସେ ବର୍ତ୍ତମାନ ପରିସ୍ଥିତିରେ ତିବ୍‌ବତ ଉପରେ ଚୀନ୍‌ର ସାର୍ବଭୌମତ୍ୱକୁ ସ୍ୱୀକାର କରି ତିବ୍‌ବତ ନିମନ୍ତେ କିଛି ସ୍ୱତନ୍ତ୍ରତା ଦାବୀ କରୁଛନ୍ତି। ଆମ ଦେଶର ପୂର୍ବତନ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ୨୦୦୩ ଜୁନ୍ ମାସରେ ଚୀନ୍ ଭ୍ରମଣରେ ଯାଇଥିଲେ

ଏବଂ ଦୁଇଦେଶ ମଧ୍ୟରେ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା ହୋଇଥିଲା। ଉଭୟ ଚୀନ୍ ଓ ଭାରତ ବର୍ତ୍ତମାନ ଅର୍ଥନୈତିକ ପ୍ରଗତି ଉପରେ ଅଧିକ ଜୋର୍ ଦେଉଛନ୍ତି ଏବଂ ସୀମା ବିବାଦକୁ ରାଜନୈତିକ ସ୍ତରରେ ଆଲୋଚନା ମାଧ୍ୟମରେ ସମାଧାନ କରିବା ନିମନ୍ତେ ଆଗ୍ରହ ପ୍ରକାଶ କରୁଛନ୍ତି। ଏ ପରିବର୍ତ୍ତିତ ବାତାବରଣ ପରିପ୍ରେକ୍ଷୀରେ ଚୀନ୍ କର୍ତ୍ତୃପକ୍ଷ ଓ ଦଲାଇ ଲାମାଙ୍କ ମଧ୍ୟରେ ଭାରତ ଆଲୋଚନା କରିବା ସୁଯୋଗ ସୃଷ୍ଟି କରିବା ଉଚିତ। ଦଲାଇ ଲାମାଙ୍କୁ ଚୀନ୍ ସରକାର ଉପରାଷ୍ଟ୍ରପତି କରି କିମ୍ବା ଅନ୍ୟ କୌଣସି ଏକ ମର୍ଯ୍ୟାଦାସମ୍ପନ୍ନ ପଦବୀ ପ୍ରଦାନ କରି ତିବ୍‌ବତୀୟଙ୍କୁ କିଛିଟା ସ୍ୱତନ୍ତ୍ର ଅଧିକାର ପ୍ରଦାନ କଲେ ତିବ୍‌ବତ ସମସ୍ୟାର ସମାଧାନ ହୋଇପାରନ୍ତା। ଏହି ପ୍ରଚେଷ୍ଟା ଭାରତ ଯେତେଶୀଘ୍ର ଆରମ୍ଭ କରିବ ତାହା ଦକ୍ଷିଣ-ପୂର୍ବ ଏସିଆରେ ଶାନ୍ତି ପ୍ରତିଷ୍ଠାରେ ସହାୟକ ହେବ ଏବଂ ମହାମାନ୍ୟ ଦଲାଇ ଲାମା ମଧ୍ୟ ଆଶ୍ୱସ୍ତ ହେବେ।



# (୩୧) ୧୯୧୩ ମସିହାଠାରୁ ତିବ୍ବତ ସମ୍ପର୍କିତ ଘଟଣାବଳୀର ବିବରଣୀ

୧୯୧୩ - ତ୍ରୟୋଦଶ ଦଲାଇ ଲାମା ତିବ୍ବତର ସ୍ୱାଧୀନତା ଘୋଷଣା କଲେ ଏବଂ ତିବ୍ବତକୁ ଶକ୍ତିଶାଳୀ କରିବା ପାଇଁ ଏହାର ଆଧୁନିକୀକରଣ ପ୍ରକ୍ରିୟାକୁ ଗତିଶୀଳ କରିଥିଲେ।

୧୯୩୩ - ତ୍ରୟୋଦଶ ଦଲାଇ ଲାମାଙ୍କର ଦେହାବସାନ ଘଟିଲା।

୧୯୩୫ - ଆମ୍ଡୋର ଜଣେ ଶିଶୁ ଚତୁର୍ଦ୍ଦଶ ଦଲାଇ ଲାମା ଭାବେ ସ୍ୱୀକୃତି ପାଇଲେ।

୧୯୪୯ - ଚୀନ୍ ତିବ୍ବତ ଉପରେ ଆକ୍ରମଣ ଆରମ୍ଭ କଲା।

୧୯୪୯ - ଚୀନର ସୈନ୍ୟବାହିନୀ (ପି.ଏଲ୍.ଏ.) ତିବ୍ବତର ଉତ୍ତର-ପଶ୍ଚିମ ରାଜ୍ୟ ଦିଗକୁ ଅଗ୍ରସର ହେଲେ।

୧୯୫୦ - ଚାଳିଶ ହଜାର ପି.ଏଲ୍.ଏ. ସୈନ୍ୟ ପୂର୍ବ ତିବ୍ବତର ରାଜଧାନୀ ଚାମ୍ଡୋ ଉପରେ ଆକ୍ରମଣ କଲେ। ଦୁଇଦିନ ମଧ୍ୟରେ ୮,୦୦୦ ତିବ୍ବତୀୟ ସୈନ୍ୟଙ୍କୁ ପରାସ୍ତ କରି ଚାମ୍ଡୋର ଗଭର୍ଣ୍ଣର ନାଗବୋ ନାଗୱାଙ୍ଗ ଜିଗମେଙ୍କୁ ପଣବନ୍ଦୀ ରୂପେ ଅଟକ ରଖିଲେ। ଭାରତ ସରକାର ଏହାର ପ୍ରତିବାଦରେ ଚୀନ୍ ସରକାରଙ୍କ ପାଖକୁ ପତ୍ର ଲେଖିଲେ। ବ୍ରିଟେନ ଓ ଆମେରିକା ଭାରତକୁ ସମର୍ଥନ ଜଣାଇଲେ। ତିବ୍ବତର ଜାତୀୟ ବିଧାନସଭା ଏକ ଜରୁରୀକାଳୀନ ଅଧିବେଶନ ଡକାଇ ମହାମାନ୍ୟ ଦଲାଇ ଲାମାଙ୍କୁ, ଯାହାଙ୍କୁ ସେତେବେଳେ ମାତ୍ର ୧୫ ବର୍ଷ ବୟସ ହୋଇଥିଲା, ତିବ୍ବତର ମୁଖ୍ୟ ରୂପେ ସମସ୍ତ ରାଜନୈତିକ କ୍ଷମତା ଗ୍ରହଣ କରିବା ପାଇଁ ଅନୁରୋଧ କଲେ ଏବଂ ତାଙ୍କୁ ଲାସା ଛାଡ଼ି ଭାରତୀୟ ସୀମା ନିକଟରେ ଥିବା ଡ୍ରୋମୋକୁ ଚାଲିଯିବାକୁ ଅନୁରୋଧ କଲେ।

୧୯୫୧ - ଅଧିକ ସାମରିକ ଆକ୍ରମଣର ଭୟ ଦେଖାଇ ଚୀନ୍ ନାଗମୋ ନାଗୱାଙ୍ଗ ଜିଗମେ ଏବଂ ଅନ୍ୟ ତିବ୍ବତୀୟ ପ୍ରତିନିଧିମାନଙ୍କୁ ତିବ୍ବତର ଶାନ୍ତିପୂର୍ଣ୍ଣ ବିମୁକ୍ତି ପାଇଁ ୧୭ ଦଫା ସମ୍ବଳିତ କୁଖ୍ୟାତ ରାଜିନାମାରେ ଦସ୍ତଖତ କରିବା ପାଇଁ ବାଧ୍ୟ କଲା।

ମହାମହିମ ଦଲାଇ ଲାମା ଡ୍ରୋମୋରୁ ଲାସାକୁ ପ୍ରତ୍ୟାବର୍ତ୍ତନ କଲେ। ଆଶା ରଖିଥିଲେ ଯେ ଚୀନା କର୍ତ୍ତୃପକ୍ଷଙ୍କ ସହିତ ପୁଣି ବୁଝାମଣା କରି କିଛି ସୁବିଧା ହାସଲ କରିବେ। କିନ୍ତୁ ଚୀନା କର୍ତ୍ତୃପକ୍ଷ ଏହି ଉଦ୍ୟମକୁ ଘୃଣାରେ ପ୍ରତ୍ୟାଖ୍ୟାନ କଲେ।

୧୯୫୪ - ମହାମହିମ ଦଲାଇ ଲାମା ବେଜିଂ ପରିଦର୍ଶନରେ ଗଲେ।

୧୯୫୬ - ତିବ୍ବତକୁ ଏକ ସ୍ୱୟଂଶାସିତ ଅଞ୍ଚଳ, ତିବ୍ବତ ସରକାର ଜାଗାରେ ପ୍ରତିଷ୍ଠା କରିବା ପାଇଁ ଚୀନ୍ ଏକ ପ୍ରାରମ୍ଭିକ ପ୍ରସ୍ତୁତକାରୀ ସମିତି ଗଠନ କଲା।

୧୯୫୯ - ତିବ୍ବତର ଜନସାଧାରଣ ଲାସାରେ ବିଦ୍ରୋହ ଆରମ୍ଭ କଲେ ଓ ଚୀନା କର୍ତ୍ତୃପକ୍ଷ ତାକୁ ଦୃଢ଼ ହସ୍ତରେ ଦମନ କଲେ, ଯେଉଁଥିରେ ୮୭,୦୦୦ ତିବ୍ବତୀୟ ପ୍ରାଣ ହରାଇଲେ। ଚୀନ୍ର ପ୍ରଧାନମନ୍ତ୍ରୀ ଚାଓ-ଏନ୍-ଲାଇ ତିବ୍ବତ ସରକାରକୁ ଭାଙ୍ଗିଦେଲେ।

ତିବ୍ବତର ୧୫,୦୦୦ ମହିଳା ଲାସାଠାରେ ଏକତ୍ରିତ ହୋଇ ଚୀନ୍ର ତିବ୍ବତ ଅଧିକାର ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କଲେ।

ଭାରତ-ତିବ୍ବତ ସୀମାରେ ଚୀନ୍ ତାର ସୈନ୍ୟ ମୁତୟନ କଲା। ଭାରତ ତାହାର ଉତ୍ତର ସୀମାନ୍ତରେ ନିଜର ସୈନ୍ୟବାହିନୀକୁ ସଜାଗ ରଖିଲା।

ମହାମହିମ ଦଲାଇ ଲାମା ଏବଂ ୮୦,୦୦୦ ତିବ୍ବତୀୟ ନିଜ ସ୍ୱାଧୀନତା ରକ୍ଷା ପାଇଁ ଭାରତକୁ ପଳାୟନ କଲେ।

ମହାମହିମ ଦଲାଇ ଲାମା ଆସାମର ତେଜପୁରରେ ପହଞ୍ଚିଲା ପରେ ୧୯୫୧ରେ ଚୀନ୍ ସହିତ ହୋଇଥିବା ୧୭ ଦଫା ରାଜିନାମାକୁ

ବାତିଲ କରିଦେଲେ। ସେ କହିଲେ ଏହି ରାଜିନାମା ତିବ୍‌ବତୀୟ ସରକାର ଓ ଲୋକଙ୍କ ଉପରେ ଅସ୍ତ୍ର ଭୟ ଦେଖାଇ ଲଦି ଦିଆଯାଇଥିଲା।

ଜାତିସଂଘର ସାଧାରଣ ପରିଷଦରେ ତିବ୍‌ବତ ସଂପର୍କରେ ପ୍ରଥମ ପ୍ରସ୍ତାବ [1353 (XIV)] ପାରିତ ହେଲା, ଯେଉଁଥିରେ ତିବ୍‌ବତୀୟଙ୍କର ମାନବିକ ଅଧିକାର, ସଂସ୍କୃତି, ଧାର୍ମିକ ଜୀବନଧାରାକୁ ସମ୍ମାନ ଜଣାଇବା ପାଇଁ ଆହ୍ୱାନ ଦିଆଗଲା।

ଅନ୍ତର୍ଜାତୀୟ ଆଇନ ବିଶାରଦ କମିଶନ (International Commission of Jurists) ତାଙ୍କ ପ୍ରଥମ ରିପୋର୍ଟରେ ଚୀନ୍‌କୁ ତିବ୍‌ବତୀୟମାନଙ୍କୁ ଅକାରଣରେ ହତ୍ୟା କରିବା ଏବଂ ୧୯୫୧ରେ ତିବ୍‌ବତ ସହିତ ହୋଇଥିବା ଚୁକ୍ତିକୁ ଅବଜ୍ଞା କରିବା ଯୋଗୁଁ ସମାଲୋଚନା କରିଥିଲେ।

ମହାମହିମ ଦଲାଇ ଲାମା ଉତ୍ତର ଭାରତର ମସୌରୀରେ ନିର୍ବାସନରେ ତିବ୍‌ବତ ସରକାର କାର୍ଯ୍ୟ କରିବ ବୋଲି ଘୋଷଣା କଲେ। ସେ କହିଥିଲେ ଯେ ମୁଁ ଯେଉଁଠାରେ ଥାଏ ନା କାହିଁକି ତିବ୍‌ବତ ଜନସାଧାରଣ ମୋ ପରିଚାଳିତ ସରକାରକୁ ସ୍ୱୀକାର କରିବେ।

୧୯୬୦ - ତିବ୍‌ବତର ନିର୍ବାସିତ ସରକାର ଧର୍ମଶାଳାକୁ ସ୍ଥାନାନ୍ତରିତ ହେଲା।

ଅନ୍ତର୍ଜାତୀୟ ଆଇନ ବିଶାରଦ କମିଶନ ତିବ୍‌ବତ ସମ୍ପର୍କରେ ତାଙ୍କ ଦ୍ୱିତୀୟ ରିପୋର୍ଟରେ ଦର୍ଶାଇଲେ ଯେ ତିବ୍‌ବତୀୟମାନଙ୍କୁ ଏକ ଧାର୍ମିକ ଗୋଷ୍ଠୀ ଭାବେ ନିଶ୍ଚିହ୍ନ କରିବା ପାଇଁ ସେଠାରେ ଗଣହତ୍ୟା କରାଯାଉଛି।

୧୯୬୧ - ଜାତିସଂଘ ସାଧାରଣ ପରିଷଦରେ ତିବ୍‌ବତ ସମ୍ପର୍କରେ ଦ୍ୱିତୀୟ ପ୍ରସ୍ତାବ ପାରିତ ହେଲା। ଯେଉଁଥିରେ ତିବ୍‌ବତୀୟମାନଙ୍କର ନିଜ ବିଷୟରେ ନିଷ୍ପତ୍ତି ନେବାପାଇଁ ଅଧିକାରକୁ ସ୍ୱୀକୃତି ଦିଆଗଲା।

୧୯୬୨ - ତିବ୍‌ବତ ଅଟୋନୋମସ ରିଜିଅନ୍‌ର ୯୭ ଭାଗ ମଠ ଓ ଧର୍ମାନୁଷ୍ଠାନକୁ ଚୀନ୍ ସୈନ୍ୟମାନଙ୍କ ଦ୍ୱାରା ଧ୍ୱଂସ କରିଦିଆଗଲା।

୧୯୬୩ - ଚୀନ୍ ବୈଜ୍ଞାନିକମାନେ ହାଇଡ୍ରୋଜେନ୍ ବୋମାର ଯୋଜନା କରିବା ପାଇଁ ଆମ୍‌ଡୋରେ ପହଞ୍ଚିଲେ।

ମହାମହିମ ଦଲାଇ ଲାମା ତାଙ୍କ ନିର୍ବାସିତ ସରକାରରେ ଗଣତନ୍ତ୍ରର ପ୍ରତିଷ୍ଠା କଲେ।

୧୯୬୪ - ଦଲାଇ ଲାମାଙ୍କୁ ସର୍ବସାଧାରଣରେ ସମର୍ଥନ ଜଣାଇବା ଯୋଗୁଁ ପଞ୍ଚେନ୍ ଲାମାଙ୍କୁ ଲାସାଠାରେ ଗିରଫ କରାଗଲା।

୧୦,୦୦୦ ତିବ୍‌ବତୀୟ ଛାତ୍ର ଚୀନ୍ ସରକାରର ନୀତି ବିରୁଦ୍ଧରେ ବିକ୍ଷୋଭ କଲେ।

୧୯୬୫ - ଜାତିସଂଘର ସାଧାରଣ ପରିଷଦରେ ତିବ୍‌ବତ ସମ୍ପର୍କିତ ତୃତୀୟ ପ୍ରସ୍ତାବ [2079 (XX)] ପାରିତ ହେଲା, ଯେଉଁଥିରେ ତିବ୍‌ବତୀୟମାନଙ୍କୁ ସେମାନଙ୍କ ଅଧିକାରରୁ ବଞ୍ଚିତ କରୁଥିବା ସମସ୍ତ କାର୍ଯ୍ୟ ବନ୍ଦ କରିବା ଉପରେ ପୁନଃ ଗୁରୁତ୍ୱ ଆରୋପ କରାଗଲା।

୧୯୬୬ - ଚୀନ୍‌ରେ ସାଂସ୍କୃତିକ ବିପ୍ଳବ ଆରମ୍ଭ ହେଲା, ଯାହାଦ୍ୱାରା କି ତିବ୍‌ବତର ସଂସ୍କୃତିକୁ ଧ୍ୱଂସ କରିବାକୁ ଏବଂ ତିବ୍‌ବତୀୟମାନଙ୍କୁ ଭୟଭୀତ କରିବାକୁ ଏକ ନୂଆ ସୁଯୋଗ ସୃଷ୍ଟି ହେଲା।

୧୯୭୦ - ନିର୍ବାସିତ ତିବ୍‌ବତୀୟମାନଙ୍କର ସର୍ବବୃହତ୍ ବେସରକାରୀ ରାଜନୈତିକ ଅନୁଷ୍ଠାନ ତିବ୍‌ବତୀୟ ଯୁବ କଂଗ୍ରେସ ଧର୍ମଶାଳାରେ ଏହାର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପନ କଲା।

୧୯୭୧ - ଚୀନ୍ ତାହାର ପ୍ରଥମ ଅଣୁଅସ୍ତ୍ରର କେନ୍ଦ୍ର ଆମ୍‌ଡୋର ଉତ୍ତର-ପୂର୍ବାଞ୍ଚଳରେ ସାଇଡାମ୍‌ର ଉପତ୍ୟକାରେ ସ୍ଥାପନ କଲା।

୧୯୭୯ - ଡେଙ୍ଗ ଜିଓପିଙ୍ଗ ତିବ୍‌ବତରେ ଉଦାରୀକରଣ ନୀତି ଘୋଷଣା କଲେ। ସେତେବେଳକୁ ତିବ୍‌ବତରେ ୧୨ ଲକ୍ଷ ଲୋକଙ୍କୁ ହତ୍ୟା କରାଯାଇସାରିଥିଲା।

ଗ୍ୟାଲୋ ଥୋଣ୍ଡୁପ ଦଲାଇ ଲାମାଙ୍କର ବଡ଼ଭାଇ ଡେଙ୍ଗ ଜିଓପିଙ୍ଗଙ୍କ ସହିତ ସାକ୍ଷାତ କଲେ ଏବଂ ସେ କହିଲେ ଚୀନ୍ ତିବ୍‌ବତ ସମସ୍ୟା

ଉପରେ ଆଲୋଚନା କରିବାକୁ ପ୍ରସ୍ତୁତ ଅଛି । କେବଳ ତିବ୍‌ବତର ସମ୍ପୂର୍ଣ୍ଣ ସ୍ୱାଧୀନତା କଥା ଆଲୋଚନା ହୋଇପାରିବନି ।

ମହାମହିମ ଦଲାଇ ଲାମା ଏହି ପ୍ରସ୍ତାବରେ ସହମତ ହୋଇ ତିବ୍‌ବତ ସମସ୍ୟାର ସମାଧାନ ପାଇଁ ଏକ ତଥ୍ୟ ସଂଗ୍ରହକାରୀ ଦଳ ତିବ୍‌ବତ ଓ ଚୀନ୍‌କୁ ପଠାଇଲେ ।

୧୯୮୦ - ଦ୍ୱିତୀୟ ଓ ତୃତୀୟ ତଥ୍ୟ ସଂଗ୍ରହକାରୀ ପ୍ରତିନିଧି ଦଳ ତିବ୍‌ବତ ଓ ଚୀନ୍‌କୁ ପରିଦର୍ଶନରେ ଯାଇଥିଲେ ।

୧୯୮୨ - ଦଲାଇ ଲାମା ଜାଣିବା ଉଦ୍ଦେଶ୍ୟରେ ଏକ ତିନିଦଳୀୟ ପ୍ରତିନିଧିଙ୍କୁ ଚୀନ୍‌ର ନେତାମାନଙ୍କ ସହିତ ଆଲୋଚନା କରିବା ପାଇଁ ପଠାଇଲେ ।

୧୯୮୪ - ଦଲାଇ ଲାମା ଦ୍ୱିତୀୟବାର ଏକ ଅନୁସନ୍ଧିତ୍ସୁ ଦୂତଗୋଷ୍ଠୀ ଚୀନ୍‌କୁ ପଠାଇଲେ ଏବଂ ସେମାନେ ମହାମହିମ ଦଲାଇ ଲାମା ତିବ୍‌ବତ ଆସି ତାହାର ଭବିଷ୍ୟତ ବିଷୟରେ ଆଲୋଚନା କରିବା ପାଇଁ ପ୍ରସ୍ତାବ ଦେଲେ ।

୧୯୮୫ - ଚତୁର୍ଥଥର ପାଇଁ ପ୍ରତିନିଧିଦଳ ତିବ୍‌ବତ ଓ ଚୀନ୍ ପରିଦର୍ଶନ କଲେ ।

୧୯୮୭ - ମହାମହିମ ଦଲାଇ ଲାମା ଆମେରିକାନ କଂଗ୍ରେସ ମାନବିକ ଅଧିକାର କମିଟିର ଏକ କ୍ଷୁଦ୍ର ଗୋଷ୍ଠୀକୁ ଉଦ୍‌ବୋଧନ ଦେଇ ଚୀନ୍ ସରକାରଙ୍କ ସହିତ ଆଲୋଚନା ମାଧ୍ୟମରେ ତିବ୍‌ବତର ସମସ୍ୟା ସମାଧାନ ପାଇଁ ଏକ ପାଞ୍ଚସୂତ୍ରୀ ଶାନ୍ତି ଯୋଜନାର ଉପସ୍ଥାପନା କଲେ ।

ଲାସାଠାରେ ଚୀନ୍ ବିରୁଦ୍ଧରେ କରାଯାଇଥିବା ଦୁଇଟି ବିରାଟ ବିକ୍ଷୋଭର ଅନ୍ତର୍ଜାତୀୟ କ୍ଷେତ୍ରରେ ରିପୋର୍ଟ ହେଲା ।

୧୯୮୮ - ମହାମହିମ ଦଲାଇ ଲାମା ତାଙ୍କର 'ଷ୍ଟ୍ରାସବୋର୍ଗ ପ୍ରସ୍ତାବ' ଘୋଷଣା କଲେ, ଯାହାଦ୍ୱାରା ସେ କହିଲେ ତିବ୍‌ବତର ତିନୋଟିଯାକ ପ୍ରଦେଶ ଗୋଟିଏ ସ୍ୱୟଂଶାସିତ ଅଞ୍ଚଳ ଭାବେ ପରିଗଣିତ ହେଉ ଏବଂ ଚୀନ୍ ହାତରେ ଦେଶର ପ୍ରତିରକ୍ଷା ଓ ବୈଦେଶିକ ଦାୟିତ୍ୱ ରହୁ ।

ଏହା ପରେପରେ ଚୀନ୍‌ର ସୁରକ୍ଷା ମୁଖ୍ୟ କିଆଓ ସି ତିବ୍‌ବତରେ ଯେକୌଣସି ପ୍ରକାର ପ୍ରତିବାଦକୁ ନିର୍ଦ୍ଦୟ ଭାବରେ ଦମନ କରିବାକୁ ଘୋଷଣା କଲେ।

୧୯୮୯ - ମହାମହିମ ଦଲାଇ ଲାମା ନୋବେଲ ଶାନ୍ତି ପୁରସ୍କାର ପାଇଲେ। ଚୀନ୍ ତିବ୍‌ବତରେ 'ମାର୍ଶିଆଲ୍ ଲ' ଘୋଷଣା କଲା।

୧୯୯୦ - ଚୀନ୍ ତିବ୍‌ବତରୁ 'ମାର୍ଶିଆଲ୍ ଲ' ଉଠାଇ ଦେଲା।

ମହାମହିମ ଦଲାଇ ଲାମା ନିର୍ବାସିତ ସରକାରରେ ଗଣତାନ୍ତ୍ରିକ ସଂସ୍କାର ଆରମ୍ଭ କଲେ ଏବଂ ତିବ୍‌ବତୀୟ ଲୋକଙ୍କୁ ନିର୍ବାଚନ ଦ୍ୱାରା ନିଜର ପ୍ରତିନିଧି ଚୟନ କରିବାକୁ ସୁଯୋଗ ଦେଲେ, ଯେଉଁମାନଙ୍କ ମଧ୍ୟରୁ କ୍ୟାବିନେଟ୍ ସ୍ତରୀୟ ମନ୍ତ୍ରୀ ମଧ୍ୟ ତିବ୍‌ବତର ନିର୍ବାସିତ ସରକାରରେ ରହିଲେ।

୧୯୯୧ - ଆମେରିକାର ରାଷ୍ଟ୍ରପତି ଜର୍ଜ ବୁଶ୍ ତାଙ୍କ ଦେଶର କଂଗ୍ରେସରେ ପାରିତ ଏକ ପ୍ରସ୍ତାବକ୍ରମେ ତିବ୍‌ବତକୁ ଏକ ଅଧିକୃତ ଦେଶ ଭାବରେ ଘୋଷଣା କଲେ।

୧୯୯୨ - ମହାମହିମ ଦଲାଇ ଲାମା ଘୋଷଣା କଲେ ଯେ ତିବ୍‌ବତ ସ୍ୱାଧୀନ ହେଲାପରେ ତିବ୍‌ବତ ନିର୍ବାସିତ ସରକାର ଭାଙ୍ଗି ଦିଆଯିବ। ସେ ଭବିଷ୍ୟତ ତିବ୍‌ବତର ସମ୍ବିଧାନର ମୌଳିକ ଢାଞ୍ଚା କ'ଣ ହେବ ତାହା ଘୋଷଣା କଲେ। ସେ ପୁନର୍ବାର କହିଲେ ଯେ ସ୍ୱାଧୀନ ତିବ୍‌ବତରେ ସେ ତାଙ୍କର ସମସ୍ତ କ୍ଷମତା ନିର୍ବାଚିତ ସରକାରକୁ ହସ୍ତାନ୍ତର କରିବେ।

୧୯୯୩ - ଚୀନ୍ ସବୁପ୍ରକାର ସମ୍ପର୍କ ମହାମହିମ ଦଲାଇ ଲାମାଙ୍କଠାରୁ ଛିନ୍ନ କଲା।

୧୯୯୫ - ମହାମହିମ ଦଲାଇ ଲାମା ଗେଧୁନ ଚ୍ୟୋକି ନିଆମା ନାମକ ଏକ ଛଅବର୍ଷ ବାଳକକୁ ଦଶମ ପଞ୍ଚେନ୍ ଲାମାଙ୍କ ପୁନର୍ଜନ୍ମ ବୋଲି ଘୋଷଣା କଲେ। ଚୀନ୍ ଏହି ବାଳକଙ୍କୁ ଅପହରଣ କରି ଅନ୍ୟ ଗୋଟିଏ ବାଳକ ଗିଆଲତସେନ୍ ନୋର୍ବୁଙ୍କୁ ଏକାଦଶତମ ପଞ୍ଚେନ୍ ଲାମା ରୂପେ ଗାଦିସୀନ କଲେ।

୧୯୯୬ - ଚୀନ୍ ତିବ୍‌ବତରେ ଆଧ୍ୟାତ୍ମିକ ବାତାବରଣ ଓ ଦେଶାତ୍ମବୋଧ ଶିକ୍ଷା ଉପରେ ପ୍ରତିବନ୍ଧକ ଲଗାଇଲେ। ଏହାର ଉଦ୍ଦେଶ୍ୟ ଥିଲା ଦଲାଇ ଲାମାଙ୍କ ଉପରେ ତିବ୍‌ବତବାସୀଙ୍କର ବିଶ୍ୱାସ ଭଙ୍ଗ କରିବା।

୧୯୯୭ - ଆମେରିକା ପ୍ରଶାସନ ତାଙ୍କର State Departmentରେ ତିବ୍‌ବତ ବ୍ୟାପାରକୁ ବୁଝାଶୁଝା କରିବା ପାଇଁ ଏକ ନୂତନ ପଦବୀ ସୃଷ୍ଟି କଲେ। ଗ୍ରେଗ୍ କ୍ରେଗ୍ ଏହାର ପ୍ରଥମ ସମନ୍ୱୟକାରୀ ହେଲେ। ମହାମହିମ ଦଲାଇ ଲାମା ତାଇୱାନ ପରିଦର୍ଶନରେ ଯାଇ ସେଠାର ଲି ତେଙ୍ଗ ହୁଏଙ୍କୁ ସାକ୍ଷାତ କଲେ।

ଅନ୍ତର୍ଜାତୀୟ ଆଇନ ବିଶାରଦ କମିଶନ (International Commission of Jurists) ତାହାର ତୃତୀୟ ରିପୋର୍ଟ ତିବ୍‌ବତ ସମ୍ପର୍କରେ ପ୍ରକାଶ କଲେ। ସେଥିରେ ଉଲ୍ଲେଖ ହେଲା ଯେ ତିବ୍‌ବତରେ ଅତ୍ୟାଚାର ବଢ଼ି ଯାଇଛି। ଅନ୍ତର୍ଜାତୀୟ ଆଇନ ବିଶାରଦ କମିଶନ ସୁପାରିଶ କଲା ଜାତିସଂଘ ସାଧାରଣ ପରିଷଦରେ ୧୯୫୯, ୧୯୬୧, ୧୯୬୫ରେ ଗୃହୀତ ହୋଇଥିବା ପ୍ରସ୍ତାବ ପରିପ୍ରେକ୍ଷୀରେ ଜାତିସଂଘର ମାନବାଧିକାର କମିଶନ ଜଣେ ତଥ୍ୟ ସଂଗ୍ରହକାରୀ ନିଯୁକ୍ତ କରିବା ଦରକାର ତିବ୍‌ବତୀୟମାନଙ୍କର ମାନବାଧିକାର ଉଲ୍ଲଙ୍ଘନ ଅନୁସନ୍ଧାନ କରିବା ପାଇଁ।

୧୯୯୮ - ଆମେରିକା ରାଷ୍ଟ୍ରପତି ବିଲ୍ କ୍ଲିଂ ନଙ୍କ ସହିତ ଏକ ମିଳିତ ସାମ୍ବାଦିକ ସମ୍ମିଳନୀରେ ଚୀନ୍‌ର ରାଷ୍ଟ୍ରପତି ଜିଆଙ୍ଗ ଜେମିନ କହିଲେ ଯେ ଯଦି ମହାମହିମ ଦଲାଇ ଲାମା ସର୍ବସାଧାରଣରେ ତିବ୍‌ବତର ସ୍ୱାଧୀନତା ଦାବୀ କରିବେନି ବୋଲି କହିବେ ଏବଂ ତାଇୱାନକୁ ଚୀନ୍‌ର ଏକ ପ୍ରଦେଶ ବୋଲି ସ୍ୱୀକାର କରିବେ ତେବେ ସେ ଦଲାଇ ଲାମାଙ୍କ ସହିତ ଆଲୋଚନା କରିବା ପାଇଁ ପ୍ରସ୍ତୁତ ଅଛନ୍ତି।

ତିବ୍‌ବତର ଛଅଜଣିଆ ଯୁବକଂଗ୍ରେସ ସଭ୍ୟ ଦିଲ୍ଲୀଠାରେ ଜାତିସଂଘ ଉପରେ ୧୯୯୭ରେ I.C.J. ଦେଇଥିବା ସୁପାରିଶକୁ କାର୍ଯ୍ୟ କରିବା ପାଇଁ ଚାପ ସୃଷ୍ଟି କରିବାକୁ ଆମରଣ ଅନଶନ ଆରମ୍ଭ କଲେ। ଦିଲ୍ଲୀ

ପୁଲିସ୍ ଏହି ସତ୍ୟାଗ୍ରହକୁ ଭାଙ୍ଗିଦେଲେ। ଯୁବକଂଗ୍ରେସର ଜଣେ ସମର୍ଥକ Thubton Ngodup ଏହି ପ୍ରସଙ୍ଗ ଉପରେ ଆତ୍ମାହୁତି ଦେଲେ।

୧୯୯୯ - ୧୦ ମାର୍ଚ୍ଚରେ ମହାମହିମ ଦଲାଇ ଲାମା ଘୋଷଣା କଲେ ତାଙ୍କ ସହିତ ଆଲୋଚନା କରିବା ପାଇଁ ଚୀନ୍ ତାର ମତ ଦୃଢ଼ କରିଛି।

ତିନିଜଣ ତିବ୍ବତର ଯୁବକଂଗ୍ରେସ ସଭ୍ୟ ଜେନିଭାଠାରେ ଅନୁଷ୍ଠିତ ହେଉଥିବା ପଞ୍ଚାବନତମ ୟୁଏନ୍-ଏସିଆ ଅଧିବେଶନ ସମୟରେ ତିବ୍ବତର ମାନବାଧିକାର ଉଲ୍ଲଙ୍ଘନ କରିଥିବା ଅଭିଯୋଗରେ ଚୀନ୍‌କୁ ଜାତିସଂଘ ନିନ୍ଦା କରୁ ବୋଲି ଦାବି କରି ଆମରଣ ଅନଶନ କଲେ। ୨୬ ଦିନ ଅନଶନ କଲାପରେ ଜାତିସଂଘର ଅନୁରୋଧକ୍ରମେ ସେମାନେ ଅନଶନ ଭଙ୍ଗ କରିଥିଲେ।



# (୩୨) ଭାରତରେ ଜନ୍ମଗ୍ରହଣ କରିଥିବା ଜଣେ ତିବ୍‌ବତୀୟ TENZIN TSUNDUEଙ୍କ ହୃଦୟର କବିତା

Thirty-nine years in exile.
Yet no nation supports us.
Not a single bloody nation!

We are refuges here.
People of a lost country.
Citizen to no nation.

Tibetans: the world's sympathy stock.
Serene monks and bubbly traditionalists;
one lakh and several thousand odd,
nicely mixed, steeped
in various assimilating cultural hegemonies.

At every check-post and office,
I am an "Indian-Tibetan".
My Registration Certificate,
I renew every year, with a *salaam*.
A foreigner born in India.

I am more of an Indian.
Except for my chinky Tibetan face.
"Nepali?" "Thai?" "Japanese?"
"Chinese?" "Naga?" "Manipuri?"
but never the question ---- "Tibetan?"

I am Tibetan.
But I am not from Tibet.
Never been there.
Yet I dream
of dying there.



# ଗ୍ରନ୍ଥସୂଚୀ

୧. ଡକ୍ଟର ଅରୁଣ ରଂଜନ ମିଶ୍ର (ଅ)–*ତିବ୍‌ବତ ପ୍ରସଙ୍ଗ*, ଆଞ୍ଚଳିକ ତିବ୍‌ବତୀୟ ୟୁଥ୍ କଂଗ୍ରେସ, ଚନ୍ଦ୍ରଗିରି, ୧୯୯୭।

୨. ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ (ସଂ)– *ତିବ୍‌ବତ*, ଇଂକ୍ ଓଡ଼ିଶା, ଭୁବନେଶ୍ୱର, ୨୦୦୪।

୩. ଡକ୍ଟର ଧରଣୀଧର ପାଣିଗ୍ରାହୀ (ଅ)–*ନିର୍ବାସିତର ଆତ୍ମକଥା*, ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୧୧।

୪. ଅଟଳ ବିହାରୀ ବାଜପେୟୀ (ସଂ-ହିନ୍ଦୀ)–*ତିବ୍‌ବତ ସମସ୍ୟା*, ବ୍ୟୁରୋ ଅଫ୍ ଏଚ.ଏଚ. ଦ ଦଲାଇ ଲାମା, ନୂଆଦିଲ୍ଲୀ, ୧୯୯୭।

୫. Ajit Bhattacharjea–*Tibetans in Exile-The Democratic Vision*, Tibetan Parliamentary and Policy Research Centre, New Delhi, 1994.

୬. Dalai Lama–*Beyond Religion*, HarperCollins Publishers India, New Delhi, 2012.

୭. Dalai Lama–*Freedom in Exile*, Abacus, London, 1990.

୮. Dalai Lama–*My Land & My People*, Srishti Publishers & Distributors, New Delhi, 1997.

୯. S.P. Gupta & K.S. Ramachandran–*History of Tibet*, Tibetan Parliamentary and Policy Research Centre, New Delhi, 1995.

୧୦. *Breaking Silence: In support of Tibet*, Tibetan Youth Congress, Dharamsala, 2000.

୧୧. *Tibet's Parliament in Exile*, Tibetan Parliamentary and Policy Research Centre, New Delhi, 1996.





ଚାରିବର୍ଷର ଶିଶୁ ଦଲାଇ ଲାମା



ଏପ୍ରିଲ ୧୯୫୯ରେ ଭାରତରେ ପହଞ୍ଚିବା ପରେ
ଏକ ଆନନ୍ଦ ମୁହୂର୍ତ୍ତରେ ୨୪ ବର୍ଷୀୟ ଦଲାଇ ଲାମା



ଅଭିଷେକ କାଳରେ ରାଜମୁକୁଟ ପରିହିତ ଦଲାଇ ଲାମା



ମହାମହିମ ଦ୍ୱିତୀୟ ପୋପ୍ ଜନ୍ ପଲ୍‌ଙ୍କ ସହିତ ଦଲାଇ ଲାମା, ଇଟାଲୀ ୧୯୮୨



୧୯୮୮ ମସିହାରେ ବ୍ରିଟେନ୍‌ରେ କ୍ୟାଣ୍ଟରବରୀର ଆର୍କ ବିଶପ୍ ଡକ୍ଟର ରବର୍ଟ ରୁନ୍‌ସିଙ୍କ ସହିତ ଦଲାଇ ଲାମା




**ଶାନ୍ତି ପାଇଁ ନୋବେଲ୍ ପୁରସ୍କାରରେ ସମ୍ମାନିତ ଦଲାଇ ଲାମା ମେଡାଲ୍ ଓ ଡିପ୍ଲୋମା ସହ, ଓସଲୋ, ୧୦ ଡିସେମ୍ବର ୧୯୮୯**



His Holiness addressing the 12th Parliament at Dharmasala



Prof. Rinpoche Chairing the 12th Assembly at Dharmasala



ନଭେମ୍ବର ୨୦୧୫ ମସିହାରେ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଧର୍ମଶାଳା ପରିଦର୍ଶନ ସମୟରେ ଦଲାଇ ଲାମା ତାଙ୍କୁ ଅଙ୍ଗବସ୍ତ୍ର ପ୍ରଦାନ କରି ସ୍ୱାଗତ କରୁଛନ୍ତି



ଡକ୍ଟର ଅଚ୍ୟୁତ ସାମନ୍ତ ଆଇ-ପ୍ୟାଡ୍‌ରେ ମହାମହିମ ଦଲାଇ ଲାମାଙ୍କୁ କିସ୍ ଆବାସିକ ବିଦ୍ୟାଳୟରେ ଆଦିବାସୀ ପିଲାମାନଙ୍କୁ ଶିକ୍ଷା ପ୍ରଦାନର ଦୃଶ୍ୟ ଦେଖାଉଛନ୍ତି



ଡକ୍ଟର ଅଚ୍ୟୁତ ସାମନ୍ତ ମହାମହିମ ଦଲାଇ ଲାମାଙ୍କୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପଟ୍ଟଚିତ୍ର ପ୍ରଦାନ କରି ଜଗନ୍ନାଥ ବିଷ୍ଣୁଙ୍କ ଅବତାର ଓ ଗୌତମ ବୁଦ୍ଧ ମଧ୍ୟ ବିଷ୍ଣୁଙ୍କ ନବମ ଅବତାର ବୋଲି ବୁଝାଉଛନ୍ତି




ତିବ୍ବତୀୟ ଲୋକପ୍ରତିନିଧିଙ୍କ ୧୩ତମ ଅଧିବେଶନ

# ଓଡ଼ିଶାର କେତେକ ବିଶ୍ୱବିଖ୍ୟାତ ବୌଦ୍ଧ କୀର୍ତ୍ତିରାଜି



## Ratnagiri Mahavihar



*Ratnagiri and the nearby places like Dhauligiri, Udayagiri and Lalitgiri generaly known as Ratnagiri Buddhist Circuit are the ideal Buddhist tourism destinations because of the presence of numerous monasteries, stupas and chaityas.*

*Ratnagiri Buddhist Circuit is not only a religious place, but also a great place of learning for the Buddhism of Tantric commune, known as Vajrayana.*



## Udayagiri Stupa

*The entire area is found located at the foothills of a large hill that acts as an imposing backdrop. The archaeological remains at Udayagiri consist of a brick stupa, two brick monasteries (one excavated and the other still unexcavated), a beautiful stepped stone well with inscriptions on it, and rock-cut sculptures at the top of the hill behind.*




*Excavation work carried out here have brought to surface the ruins of a wonderful brick monastery with beautiful carvings, a temple with bow shaped arches, four monasteries and a huge stupa. The Buddhist treasures unearthed from here also include a large number of gold and silver articles, a stone container, earthen pot and traces of Kushana dynasty and Brahmi script. A massive image of the Buddha is a unique find, the image has pursed lips, long ears and wide forehead.*

*A piece of Buddha's bone has been found in a casket at the time of excavation.*



## Langudi



*Just round the corner of Ratnagiri, Udayagiri and Lalitgiri stands Langudi hill on the right bank of river Kelua. The discovery of two inscribed images of Ashoka the great is unique. No image of Ashoka was as ever been discovered except here. The discovery of the cluster of rock-cut votive stupas, two unique Buddha images and Panchdhyani Buddha with their female counterparts are indicative of the fact that Langudi was a great centre of Buddhism.*



*The Sun temple at Konark, a poetry in stone and a World Heritage Monument, is often described as the grandest achievement of the Eastern School of architecture. This 13th Century AD architectural marvel in stone designed as a chariot of the Sun God with 12 giant wheels fixed on either side, whirled by seven horse is the translation of a Rig Vedic allegory in stone. It was built by King Narasingha Deva I of the Ganga Dynasty of Odisha in 1250 A.D., after his victory over the Sultan of Bengal, Izzudin Tughan Tughran Khan ( 1238 - 64 A.D.)*




*Dhauli is situated at the distance of 10 kilometers from Bhubaneswar. This is the place where Great Kalinga War was fought between Emperor Ashoka and people of Kalinga in 261 B.C. Emperor Ashoka embraced Buddhism at this place. Most Ven. Nichidastu Fujii, Founder-President of Nipponzan Myohoji, established the peace pagoda which was inaugurated in 18th November, 1972.*

*Rev. Kazuo Yoda is now Monk-in-Chief, of the Stupa.*




*Rock-cut Elephant adjacent to Ashokan Rock edict at Dhauli Hills. This is the earliest example of Rock-cut sculpture in the World.*

# 64 Yogini Temples



***64 Yogini Temple at** Ranipur Jharial*



*64 Yogini - Hirapur*

# Message from the Founder, KIIT & KISS

## NO CHILD SHOULD BE OUT OF SCHOOL



We started Kalinga Institute of Social Sciences (KISS) with the conviction: Given the opportunity, even the weakest can excel. Essence of KISS is opportunity. Indeed, the floodgates of opportunity open for its students, drawn from the poorest of the poor tribal families, through holistic education that the institute is providing. It is a matter of satisfaction that KISS has been successful in transforming lives of thousands of children. Our efforts to enable these children to join the mainstream society have created incredible success stories. Sumitra Naik's story is of one such example. KISS empowered her to fight poverty and overcome her tragic family circumstances to become a role model for children and youth across the globe.

*Achyuta Samanta*



୧୯୩୭ ମସିହା ଡିସେମ୍ବର ୯ ତାରିଖରେ ଜଗତସିଂହପୁର ଜିଲ୍ଲା ପୁନଙ୍ଗ ଗ୍ରାମପଞ୍ଚାୟତର ମଙ୍ଗଳପୁର ଗ୍ରାମରେ ଜନ୍ମିତ **ଡକ୍ଟର ବିମଳେନ୍ଦୁ ମହାନ୍ତି** ଶିକ୍ଷା, ସଂସ୍କୃତି, ସମାଜସେବା, ପ୍ରଶାସନ, ଅଧ୍ୟାପନା ଓ ସାଙ୍ଗଠନିକ କ୍ଷେତ୍ରରେ ଜଣେ ପ୍ରତିଭାବାନ ବ୍ୟକ୍ତି ରୂପେ ସୁପରିଚିତ। ସେ ବହୁ କ୍ଷେତ୍ରରେ ପ୍ରଥମ, ଯଥା– ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଜାଭିୟର୍ସ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମ୍ୟାନେଜ୍‌ମେଣ୍ଟର ପ୍ରଥମ ରେଜିଷ୍ଟ୍ରାର, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ପ୍ରଥମ ଛାତ୍ରକଲ୍ୟାଣ ଡିନ୍ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଯୁବକଲ୍ୟାଣ ଅଧିକାରୀ। ଏହା ସହିତ ସେ ଓଡ଼ିଶା ସରକାରଙ୍କ କ୍ରୀଡ଼ା ଓ ଯୁବକଲ୍ୟାଣ ବିଭାଗର ନିର୍ଦ୍ଦେଶକ, ରାଜ୍ୟ ସଂସ୍କୃତି ବିଭାଗର ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ, ଭାରତ ସରକାରଙ୍କର ଶିକ୍ଷା ଓ ସଂସ୍କୃତି ବିଭାଗ ଅଧିନରେ ଜାତୀୟ ସେବା ଯୋଜନାର ଉପମୁଖ୍ୟ ପରାମର୍ଶଦାତା ଓ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ମେଜର୍ ଆଦି ଭଳି ବହୁ ଉଚ୍ଚ ପଦପଦବୀରେ ସୁଚାରୁରୂପେ ଦାୟିତ୍ୱ ସମ୍ପାଦନ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି। ଅଧୁନା ଡକ୍ଟର ମହାନ୍ତି ଭାରତ ମହାବୋଧି ସୋସାଇଟି, ଓଡ଼ିଶା ଶାଖାର ସଭାପତି ରୂପେ ଦାୟିତ୍ୱ ନିର୍ବାହ କରୁଛନ୍ତି।

ଡକ୍ଟର ମହାନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍.ଏ., ଆମେରିକାର ମିସୌରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଇଡି ଓ ରାଞ୍ଚି ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ହାସଲ କରିଛନ୍ତି। କଟକ ଷ୍ଟୁଆର୍ଟ ସାଇନ୍ସ କଲେଜରୁ ୧୯୬୦ ଅଗଷ୍ଟ ୫ରେ ଅଧ୍ୟାପକ ରୂପେ କର୍ମଜୀବନ ଆରମ୍ଭ କରି ସେ ୪୧ ବର୍ଷକାଳ ବିଭିନ୍ନ କ୍ଷେତ୍ରରେ ସେବା ପ୍ରଦାନ କରିଛନ୍ତି। ଜଣେ ସୁବକ୍ତା, ଲେଖକ ଓ ସ୍ତମ୍ଭକାର ଭାବେ ସେ ସୁନାମ ଅର୍ଜନ କରିଛନ୍ତି।

ଓଡ଼ିଆ ଓ ଇଂରାଜୀରେ ରଚିତ ତାଙ୍କର ୨୨ଗୋଟି ପୁସ୍ତକ ମଧ୍ୟରୁ 'ଆମେ ଓଡ଼ିଆ ଏବଂ ଅନ୍ୟାନ୍ୟ', 'ବ୍ୟକ୍ତି, ସଂସ୍କୃତି ଓ ସାଂପ୍ରତିକୀ', 'ସମୟର ସ୍ୱରଲିପି', 'ଜାତିପ୍ରାଣ ମଧୁସୂଦନ', 'ଶ୍ୱେତ ପ୍ରାସାଦର କୃଷ୍ଣାଙ୍ଗ ରାଷ୍ଟ୍ରପତି', 'ଆମ ସୁଭାଷ', 'ଓଡ଼ିଶାରେ ବୌଦ୍ଧଧର୍ମ ଓ ବୌଦ୍ଧକୀର୍ତ୍ତି', 'ଅନଗାରିକ ଧର୍ମପାଳ', 'କଣ ଶିଖାଇଲେ ବୁଦ୍ଧ', 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ', 'Orissa Yesterday, Today and Tomorrow', 'Glimpses of Buddhist Legacy in Odisha', 'Buddhist Heritage of Orissa (From Kalinga to Sri Lanka)', 'Dhauli - Past and Present' ଇତ୍ୟାଦି ଉଲ୍ଲେଖନୀୟ। ତାଙ୍କ ସଂପାଦିତ 'Padmasambhava of Uddiyana - Odisha' ଏକ ଅନବଦ୍ୟ କୃତି।

---




**ତଥାଗତ ପବ୍ଲିଶର୍ସ**
୪୭, ମଧୁସୂଦନ ନଗର, ଭୁବନେଶ୍ୱର - ୭୫୧୦୦୧
E-mail : imcoindia@yahoo.com